# ସ୍ମୃତି ମନ୍ଥନ

(ଡ. କୃଷ୍ଣଚରଣ ବେହେରାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ଶ୍ରଦ୍ଧା ନିବେଦନ)

ସଂକଳନ ଓ ସଂପାଦନା

ଡ. ଚିତ୍ତରଂଜନ ବେହେରା

ଶ୍ରୀ ପୁଣ୍ୟଶ୍ଳୋକ ବେହେରା

ପ୍ରକାଶକ

**ବିଜୟିନୀ ପବ୍ଲିକେଶନ୍ସ**

ଶଙ୍କରପୁର, କଟକ - ୭୫୩୦୧୨

# ସ୍ମୃତି ମନ୍ଥନ

(ଡ.କୃଷ୍ଣଚରଣ ବେହେରାଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ଶ୍ରଦ୍ଧା ନିବେଦନ)

ସଂକଳନ ଓ ସଂପାଦନା

**ଡ. ଚିତ୍ତରଂଜନ ବେହେରା**

**ଶ୍ରୀ ପୁଣ୍ୟଶ୍ଲୋକ ବେହେରା**

ସହଯୋଗ

**ମଧୁଶ୍ରୀ ବେହେରା, ଦାମୋଦର ସାହୁ**

**ମୀନାକ୍ଷୀ ବେହେରା, ରାଜଶ୍ରୀ ବେହେରା**

**ଦେବପ୍ରସାଦ ଖୁଣ୍ଟିଆ**

**ଅନନ୍ୟ, ଅନ୍ୟନ୍ୟାଶ୍ରୀ, ଅମୃତାଶ୍ରୀ**

ପ୍ରଥମ ପ୍ରକାଶନ

**୧୮ ଅଗଷ୍ଟ ୨୦୧୮**

ପ୍ରକାଶକ

**ବିଜୟିନୀ ପବ୍ଲିକେଶନ୍ସ**

ଶଙ୍କରପୁର, କଟକ - ୭୫୩୦୧୨

ମୁଦ୍ରଣ

**ସ୍ୱସ୍ତିକ୍ ପ୍ରିଣ୍ଟର୍ସ**

କଟକ - ୭୫୩୦୦୨



ଡକ୍ଟର କୃଷ୍ଣଚରଣ ବେହେରା

(୨ ଜୁନ୍ ୧୯୩୨ - ୨୯ ଜୁଲାଇ ୨୦୧୭)

# କୃଷ୍ଣରସାମୃତ ପାନକରି...

"ଯେଉଁମାନେ ଡ. ବେହେରାଙ୍କ ପୂର୍ଣ୍ଣଗର୍ଭା ଜୀବନସ୍ରୋତରେ ଶାଖାନଦୀ ବା ଉପନଦୀ ଭାବରେ ସଂଯୁକ୍ତ ହୋଇଛନ୍ତି, ସେହିମାନଙ୍କର ଜୀବନରସ ଏହି ପତ୍ରାବଳୀର ସାରତତ୍ତ୍ୱ । ମୋଟ୍ ଉପରେ, ପୂର୍ଣ୍ଣାଙ୍ଗ ଜୀବନୀ ପାଇଁ ଉପାଦାନ-ଆକର ପ୍ରସ୍ତୁତି ଏହାର ଲକ୍ଷ୍ୟ ।" ଡ. କୃଷ୍ଣଚରଣ ବେହେରାଙ୍କ ଆତ୍ମଜୀବନୀ 'ଆଖିର ଦେଖା ପ୍ରାଣର କଥା'ରେ ଗ୍ରନ୍ଥିତ 'ପରିପତ୍ର'ର ପ୍ରାରମ୍ଭରେ ତାଙ୍କର ପ୍ରିୟ ଛାତ୍ର ସୁଧୀରଚନ୍ଦ୍ର ବେହୁରା ଏ କଥା ଉଲ୍ଲେଖ କରିଛନ୍ତି । ପ୍ରକୃତରେ ଶ୍ରୀ ବେହୁରା ଯାହା ଉଲ୍ଲେଖ କରିଛନ୍ତି, ତାହାହିଁ ଡକ୍ଟର ବେହେରାଙ୍କ ଜୀବନର ମୂଳମନ୍ତ୍ର ।

ଡ. ବେହେରା ଶ୍ରମ ସଂପର୍କରେ ବିଶ୍ୱାସ କରୁଥିଲେ । ତାଙ୍କର ସ୍ନେହସଜଳ ଭାବ, ଗୁରୁଗମ୍ଭୀର ନିର୍ଦ୍ଦେଶ, ଅଭିଭାବକର ଆକଟ ଆଜି ଅନେକ ତୃଣକୁ ତରୁରେ ପରିଣତ କରିପାରିଛି । ତାଙ୍କ ଜୀବନ ଥିଲା କର୍ମମୟ । କର୍ମକୁ ବିଶ୍ୱାସକୁ ନେଉଥିଲେ ଧର୍ମକୁ ନୁହେଁ । ପ୍ରଶଂସାରେ ବିଚଳିତ ହେଉ ନଥିଲେ କି ଆନନ୍ଦରେ ବିଭୋର ହେଉ ନଥିଲେ, ଦୁଃଖରେ କାତର ହେଉ ନ ଥିଲେ । ଥିଲେ ସ୍ଥିତପ୍ରଜ୍ଞ, ଅବିଚଳ ମହାମେରୁ, ଦୃଢ଼ । କର୍ମକୁ ବିଶ୍ୱାସ କରୁଥିବା ଡ. ବେହେରାଙ୍କ କଥା ଲେଖିଲା ବେଳେ ମନକୁ ସ୍ୱତଃ ଆସିଥାଏ, ଭାଗବତର ସେଇ ମହାନବାଣୀ-

"କର୍ମ କରିଣ ଫଳ ପାଇ, ପ୍ରାଣୀ ତା' ଅବଶ୍ୟ ଭୁଞ୍ଜଇ ।

ଯେଉଁମାନେ ତାଙ୍କ ନୈକଟ୍ୟରେ ଥିଲେ ସେଇମାନେ ହିଁ ତାଙ୍କୁ ବେଶ୍ ଭଲଭାବେ ଜାଣିଥିବେ । ଅନୁଭବ କରିଥିବେ ତାଙ୍କର ପ୍ରତିଟି ଜୀବନଛନ୍ଦକୁ ।

ପିଲାଟି ଦିନରୁ ସକଳ ଯାତନାକୁ ଜଉମୁଦ ଦିଆ ଲଫାପାରେ ଭର୍ତ୍ତି କରି କେଉଁ ସାତତାଳ ପଙ୍କ ଭିତରେ ଥିବା ସିନ୍ଦୁକରେ ସାଇତି ନିଜ ଆଗେଇ ନେବାର ପ୍ରବଣତାକୁ ପ୍ରଗାଢ଼ କରିଥିଲେ । ପରଶ୍ରୀକାତରତା ନୁହେଁ, ବରଂ ପରିଶ୍ରମକୁ ପାଥେୟ କରି ନିଜ ଗୋଡ଼ରେ ଠିଆ ହେବା ସ୍ୱପ୍ନ ତାଙ୍କୁ ବାଟ କଢ଼େଇ ନେଇଥିଲେ ଆଗକୁ ଆଗକୁ । ଭଦ୍ରକରୁ କଟକ, କଟକରୁ କୋଲକାତା ଥିଲା ତାଙ୍କ ଶିକ୍ଷାଭୂମି । ବିଶ୍ୱକବି ରବୀନ୍ଦ୍ର

ନାଥ ଠାକୁରଙ୍କ ପ୍ରିୟ ଶାନ୍ତିନିକେତନ ଥିଲା ତାଙ୍କ ସାଧନାର ଆଦ୍ୟପୀଠ । ସେଇଠୁ ସେ ଅବଗାହନ କରିଥିଲେ ଅନେକ କଥା । ଜୀବନକୁ ଜଟିଳତାର ପରିଧି ଭିତରୁ ବାହାର କରି ଅର୍ଥ ନୁହେଁ, ବରଂ ପରମାର୍ଥ ଲାଭ ଆଶାରେ ଆଗୁସାର ହୋଇଥିଲେ । ସେଇଠି ତାଙ୍କର ଅପୂର୍ବ ସଂଯୋଗ ହୋଇଥିଲା କେତେକ ପ୍ରଖ୍ୟାତ ସାହିତ୍ୟିକ ସହ । ଶିକ୍ଷା ସାରି ଓଡ଼ିଶା ଫେରିବା ପରେ ପତ୍ରପତ୍ରିକା ସଂପାଦନା ସହ ଯୋଡ଼ି ହେଇଯାଇଥିଲେ । ଜ୍ଞାନଭଣ୍ଡାର ତାଙ୍କର ଆହୁରି ଶାଣିତ ଓ ଋଦ୍ଧିମନ୍ତ ହୋଇଥିଲା ।

ତାଙ୍କ ପରବର୍ତ୍ତୀ ଜୀବନବୋଧ ଅତି ପ୍ରାଞ୍ଜଳ, ଆଦୌ ପ୍ରଶ୍ନିଳ ନୁହେଁ । କର୍ମ ବନ୍ଧନରେ ବାନ୍ଧି ହୋଇ କୃତିତ୍ୱ ଅର୍ଜନରେ ଲାଗି ପଡ଼ିଛନ୍ତି । ସର୍ଜନା ହେଉ କି ସୃଷ୍ଟି ସମୀକ୍ଷା ସବୁଠି ରହିଛି ଗଭୀର ପ୍ରବେଶ । ସଂପାଦନା-ସଂକଳନ କ୍ଷେତ୍ରରେ ମଧ୍ୟ ସେ ଦିବାଧ୍ୟାୟୀ, ଅଗ୍ରଜ ଅଭିମନ୍ୟୁ । ସଂଗଠନ କ୍ଷେତ୍ରରେ ମଧ୍ୟ ସଂଗୁପ୍ତ ସହଚର । ସତୀର୍ଥ ସଖା, ପ୍ରାରମ୍ଭରେ ପ୍ରବୃଦ୍ଧ । ପ୍ରବନ୍ଧ, ରମ୍ୟରଚନା ଏବଂ ସ୍ତମ୍ଭ ରଚନାରେ ତାଙ୍କର ପୁରୋଦୃଷ୍ଟ- ଅନ୍ତର୍ଦୃଷ୍ଟି ବୈପ୍ଳବିକ । ନୂତନ ଦୃଷ୍ଟିଭଙ୍ଗୀ ନିରୁତା ଭଲପାଇବାର ଭୌମିକ ଭରସା । ପ୍ରତିରୋଧ କି ଗତିରୋଧକୁ କେବେ ଭ୍ରୂକ୍ଷେପ କରି ନାହାନ୍ତି । ସେଇଥିପାଇଁ ତ ତାଙ୍କର 'ବେଦୀ' ଓ 'ମୋର ସେଇ ଅବ୍ୟର୍ଥ ଅଙ୍ଗ' ଆଜି ବି ଚର୍ଚ୍ଚାରେ । ସେଇଠି ଅଛି- ବାସ୍ତବତାର ବୃହନ୍ନଳା, ମାର୍ମିକ ଅଭିବ୍ୟକ୍ତି, ଜୀବନବୋଧ ଓ ଆଦିମ ଅନୁଭବର ଜଟିଳ ପ୍ରଶ୍ନ ।

କାରୁଣ୍ୟର ପ୍ରତିଛବିକୁ ସେ ପ୍ରତ୍ୟାଖ୍ୟାତ କରି ନୂତନ ଆଲୋକ ସନ୍ଧାନକୁ ଗୁରୁତ୍ୱ ଦେଇଛନ୍ତି । ନିଜେ ପ୍ରତିଷ୍ଠିତ ହେବା ସହିତ ଅନ୍ୟକୁ ପ୍ରତିଷ୍ଠା ପଥରେ ପ୍ରବେଶ କରାଇବାର ପ୍ରମୁଖ ପ୍ରବଣତା ତାଙ୍କ ଜୀବନର ପାଥେୟ ହୋଇଯାଇଛି । କେବଳ ଭାଷା ସାହିତ୍ୟ ପାଇଁ ତାଙ୍କ ଜୀବନ ସମର୍ପିତ ନ ଥିଲା, ଶିକ୍ଷା ଓ ଗବେଷଣାର ବିସ୍ତାର ପାଇଁ ସେ ଥିଲେ ଆଲୋକବର୍ତ୍ତିକା । ପ୍ରାଚୀନ ହେଉ କି ଆଧୁନିକ ସବୁ ସାହିତ୍ୟରେ ଥିଲା ତାଙ୍କର ଗଭୀର ପ୍ରବେଶ । ଶିକ୍ଷକତାରୁ ଚାକିରି ଜୀବନ ଆରମ୍ଭ କରିଥିବା ଡକ୍ଟର ବେହେରା ଅଧ୍ୟାପକ, ଅଧ୍ୟକ୍ଷ ପଦ ମଣ୍ଡନ କରିବା ପରେ ଏକ ଦୈନିକ ଖବରକାଗଜ 'ଜନବାଣୀ'ର ସଂପାଦକ ଭାବେ କାର୍ଯ୍ୟକରି ସେ ଯେଉଁ କାର୍ଯ୍ୟଦକ୍ଷତାର ପରିଚୟ ଦେଇଛନ୍ତି, ତାହା ସ୍ମରଣୀୟ ।

ସାଲିସ କରିବାକୁ ଭଲପାଉ ନ ଥିବା ଏଇ ନିରହଙ୍କାରୀ ମଣିଷ ଅତି ନିରାଡ଼ମ୍ବର ଭାବରେ ଜୀବନ ନିର୍ବାହ କରୁଥିଲେ । ନିରବ ସାଧକ ସେ । ଅଗଣିତ ମଣିଷର ମଉଡ଼ମଣି । ଅନେକ ଛାତ୍ରଙ୍କୁ ଜ୍ଞାନର କଷଟି ପଥରରେ କଷି କଷି 'ମାଟିର ପିତୁଳା କରି ଗଢ଼ି' ଥୋଇ ନାହାନ୍ତି, ବରଂ ଖାଣ୍ଟି ସୁନା ଛଡ଼ଟିଏ କରି ଛିଡ଼ା କରାଇଛନ୍ତି ।

ଡ. ବେହେରାଙ୍କ ଲେଖା ଶ୍ରଦ୍ଧାଶୀଳ ପାଠକ ପ୍ରାଣରେ ପୁଲକ ଜାତକରେ, ଏହା

ଶତ ପ୍ରମାଣିତ । ତାଙ୍କ ଅକ୍ଷର କୀର୍ତ୍ତିକୁ ପରଖାଗଲେ ସେ ପ୍ରଥମେ ଜଣେ କବି, ପରେ କଥାକାର । ମାତ୍ର ଅଧ୍ୟାପନା ଜୀବନରେ ପ୍ରବନ୍ଧ-ସମାଲୋଚନା ଓ ଗବେଷଣା ହୋଇଯାଇଛି ତାଙ୍କର ଧ୍ୟେୟ । ବୃତ୍ତିଗତ ଜୀବନ ତାଙ୍କ ପ୍ରବୃତ୍ତିରେ ବାଧା ସୃଷ୍ଟି କରିପାରି ନାହିଁ, ବରଂ ଉଜ୍ଜ୍ୱଳମୟ ଆଲେଖ୍ୟ ପ୍ରସ୍ତୁତିରେ ପ୍ରସାରିତ ହୋଇଛି । ଶିଶୁର ସଜଳ ଅନୁଭୂତି ଭିତରେ ସେ ଭେଦିଛନ୍ତି,- କିଶୋରର କାମନାରେ କମନୀୟ କରିଛନ୍ତି କିୟଦଂଶ, ଯୌବନରେ ଜଡ଼ତା ଡେଇଁ ଜୟଯାତ୍ରାର ଜଣାଣ ଗାଇଛନ୍ତି ।

ସାହିତ୍ୟପ୍ରାଣ କୃଷ୍ଣଚରଣଙ୍କ ସଂଘର୍ଷମୟ ଜୀବନ ସଂପର୍କରେ ସେ ତାଙ୍କ ଆତ୍ମଜୀବନୀ 'ଆଖିର ଦେଖା ପ୍ରାଣର କଥା' ପୁସ୍ତକରେ ଉଲ୍ଲେଖ କରିଛନ୍ତି । ତାଙ୍କ ଅବଗାହୀପୂର୍ଣ୍ଣ ଜୀବନ କାହାଣୀ ବେଶ୍ ରୁଚିଶୀଳ, ମନୋଜ୍ଞ ଓ ଚମକପ୍ରଦ । ସାହିତ୍ୟ ସାଧନା ଅନୁକରଣୀୟ । କୃଷ୍ଣଙ୍କ ପ୍ରେମରେ ଯିଏ ତଲ୍ଲୀନ ହୋଇଛି, ସିଏ ପାଇଚି ଅମୃତ । ଶିରା ପ୍ରଶିରାରେ ଖେଳି ଯାଇଚି ଉତ୍‌ଥାନର ଅନୁରଣନ । ସାହିତ୍ୟିକ ଅବର୍ଜ୍ଜିଆକୁ ଘୃଣା କରୁଥିବା କୃଷ୍ଣଚରଣଙ୍କ ସଂସ୍ପର୍ଶରେ ଆସି ଅନେକ ଅଗ୍ରଗତିର ଅଖଣ୍ଡ ଅବବୋଧ ଭିତରେ ଘାଣ୍ଟି ଚକଟି ହୋଇ ଶୀର୍ଷରେ ପହଞ୍ଚିଛନ୍ତି ।

ସେ ଥିଲେ ନିଷ୍କାର ମଣିଷ । ମଣିଷକୁ ଭଲ ପାଉଥିବା ମଣିଷ । ଅନ୍ୟକୁ ଆପଣାର କରିନେବା ଏବଂ ଉନ୍ନତିରେ ଉତ୍ତଂସରେ ପହଞ୍ଚିବା ପର୍ଯ୍ୟନ୍ତ ଲାଗି ରହିବା ବିରଳ ବ୍ୟକ୍ତିତ୍ୱର ପ୍ରମାଣ । ତାଙ୍କ ସଂସ୍ପର୍ଶରେ ଆସିଥିବା ଅନେକଙ୍କୁ ଗୋଟିଏ ଗୋଟିଏ କରି ଗଢ଼ି ଥୋଇଛନ୍ତି ।

ଅନ୍ୟକୁ ଆପଣାର କରିବା, ସୃଜନଶକ୍ତିକୁ ଆକଳନ କରି ବିକାଶର ଧ୍ୱଜା ଧରେଇ ଗୋଟିଏ ନିଦା ନିଚୋଳ ଜାତୀୟ ଜୀବନ ଗଠନ କରିବାରେ ତାଙ୍କ ଉଦ୍ୟମ କେବେ ଅସଫଳ ହୋଇନାହିଁ । ପ୍ରକୃତରେ ସେ ହେଉଛନ୍ତି ଶ୍ରେଷ୍ଠ ମଣିଷ । କୃଷ୍ଣରସାମୃତ ଯିଏ ପାନ କରିଛି, ସେ ବିମୁଗ୍ଧ ହେଇଛି, ବିମୋହିତ ହେଇଛି ସାରା ଜୀବନ ।

ଆଜି ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ଯେଉଁମାନେ ତାଙ୍କ ସ୍ମୃତି ମନ୍ଥନ କରିଛନ୍ତି ସେମାନଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ପ୍ରକାଶନ ପାଇଁ ବିଜୟିନୀ ପବ୍ଲିକେଶନ୍‌ସର ସଂଚାଳକ ତଥା 'ଜନସୁଧା'ର ସଂପାଦକ ଦିଲୀପ କୁମାର ବେଉରାଙ୍କ ଆନ୍ତରିକ ଉଦ୍ୟମ ଭୁଲିବାର ନୁହେଁ ।

ଚିତ୍ତରଂଜନ ବେହେରା

# ସୂଚୀପତ୍ର

# ଜ୍ଞାନତପସ୍ୱୀ କୃଷ୍ଣଚରଣ

ସେକ୍ ମତଲୁବ ଅଲ୍ଲି

୨୯ ତାରିଖ ଜୁଲାଇ ୨୦୧୭ । ଚାହୁଁଚାହୁଁ ବର୍ଷେ ପୂରିଗଲା । ପ୍ରଫେସର ଡ. କୃଷ୍ଣଚରଣ ବେହେରା ଏ ସଂସାରରୁ ବିଦାୟ ନେଇ ଚାଲିଗଲେ । ହେଲେ ଏକଥା ଆଦୌ ବିଶ୍ୱାସ କରିହେଉ ନାହିଁ ସେ ଆଉ ନାହାନ୍ତି ବୋଲି । ଦୀର୍ଘ ୬୦ ବର୍ଷରୁ ଊର୍ଦ୍ଧ୍ୱକାଳ ନିରବଚ୍ଛିନ୍ନ ଭାବରେ ସାରସ୍ୱତ ସାଧନା କ୍ଷେତ୍ରରେ ସେ ଜଡ଼ିତ ହୋଇ ରହିଥିଲେ । କବିତା, ଗଳ୍ପ ଓ ସୃଜନଶୀଳ ସାହିତ୍ୟ ସୃଷ୍ଟି କରିବା ସହିତ ନିବନ୍ଧ, ରମ୍ୟରଚନା ଏବଂ ସାହିତ୍ୟ ଗବେଷଣା କାର୍ଯ୍ୟରେ ଗଭୀର ଭାବରେ ସଂପୃକ୍ତ ଥିଲେ । ଏହାବ୍ୟତୀତ ତାଙ୍କର ଗୁଣମୁଗ୍ଧ ସାରସ୍ୱତ ଅନୁରାଗୀ ଛାତ୍ରମାନଙ୍କୁ ଗବେଷଣା କାର୍ଯ୍ୟରେ ମଧ୍ୟ ନିୟୋଜିତ କରୁଥିଲେ । 'ଓଡ଼ିଆ ଗବେଷଣା ପରିଷଦ' ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ଗବେଷଣାଧର୍ମୀ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା 'ଏଷଣା' ସଂପାଦନା କରି ପ୍ରକାଶ କରୁଥିଲେ । ସାର୍ ବହୁତଗୁଡ଼ିଏ ଅମୂଲ୍ୟ ପୁସ୍ତକ ସଂପାଦନା କରିଛନ୍ତି । 'ମୋଗଲ ତାମସା' ଏବଂ 'ଫୁଲମଣି ଓ କରୁଣାର ବିବରଣ' ପାଣ୍ଡୁଲିପିର ଆବିଷ୍କାର ଏବଂ ସଂପାଦନା ଓଡ଼ିଆ ସାହିତ୍ୟ ଇତିହାସରେ ତାଙ୍କର ଅନନ୍ୟ କୃତି ଏବଂ ସ୍ମରଣୀୟ କାର୍ଯ୍ୟକ୍ରମ ।

କର୍ମଜୀବନର ଆରମ୍ଭରେ ପ୍ରତିଷ୍ଠିତ ପତ୍ରିକା ଡଗରର ଏକବର୍ଷରୁ ଊର୍ଦ୍ଧ୍ୱ ସହସଂପାଦକ ଦାୟିତ୍ୱ ତୁଲାଇଥିଲେ । ସେହିପରି ଝଙ୍କାରର ମଧ୍ୟ ସହସଂପାଦକ ଦାୟିତ୍ୱରେ ରହିଥିଲେ । ଦୈନିକ ଜନବାଣୀ ସଂବାଦପତ୍ରର ସଂପାଦନା ଦାୟିତ୍ୱରେ ଥିଲେ । ଶେଷପର୍ଯ୍ୟନ୍ତ ସଂଭ୍ରାନ୍ତ ଗବେଷଣାତ୍ମକ ପତ୍ରିକା 'ଏଷଣା'ର ସଂପାଦନା କରୁଥିଲେ । ପ୍ରକୃତରେ ଜଣେ ସାର୍ଥକ ସାରସ୍ୱତ ସାଧକ, ସାହିତ୍ୟ ସମୀକ୍ଷକ ଓ ବରିଷ୍ଠ ସଂପାଦକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ସାର୍‌ଙ୍କର ଶିକ୍ଷାକ୍ଷେତ୍ର ଥିଲା ସାଧନା ଭୂଇଁ । ତାଙ୍କ ବିଚାରରେ ଶିକ୍ଷାବୃତ୍ତି ଅନ୍ୟ ବୃତ୍ତିଭଳି କେବଳ ଚାକିରି ନୁହେଁ- ତାହାଠାରୁ ଭିନ୍ନ ଆହୁରି କିଛି ସ୍ୱାତନ୍ତ୍ର୍ୟତା ରହିଛି ସେଥିରେ । ଜଣେ ଗୁଣି, ଜ୍ଞାନୀ ଛାତ୍ର ହେଉ ବା ଅଭାବୀ ଛାତ୍ର ହେଉ ସାର୍‌ଙ୍କ ସଂପର୍କରେ ଆସିଲେ ତା'ର ଭାଗ୍ୟ ଓ ଭବିତବ୍ୟର ସଂପୂର୍ଣ୍ଣ ପରିବର୍ତ୍ତନ ଘଟିଯାଏ । ବହୁ

ଛାତ୍ରଛାତ୍ରୀଙ୍କୁ ପ୍ରଭାବିତ କରି ଅନର୍ସ ନେବା ପାଇଁ ବ୍ୟବସ୍ଥା କରିଦେଇଛନ୍ତି । ଆର୍ଥିକ ଦୃଷ୍ଟିରୁ କଲେଜରେ ନାମ ଲେଖା ହୋଇପାରୁ ନ ଥିଲେ ସେଥିପାଇଁ ସେ ବ୍ୟବସ୍ଥା କରୁଥିଲେ । ହଷ୍ଟେଲରେ ଦେୟ ଠିକ୍ ସମୟରେ ଦେଇ ନପାରୁଥିଲେ ସେଥିପାଇଁ ମଧ ସାର୍ ସହାୟତାର ହାତ ବଢ଼ାଇ ଦେଉଥିଲେ । ବହୁ ଛାତ୍ରଛାତ୍ରୀ ସର୍ବୋତ୍ତମ ମାର୍ଗଦର୍ଶନ ସାର୍‌ଙ୍କ ଠାରୁ ପାଇଛନ୍ତି । ଏହାର ଅନେକ ଉଦାହରଣ ରହିଛି ।

ସାର୍‌ଙ୍କର ପ୍ରିୟ ଛାତ୍ର ଅଧ୍ୟାପକ ଡ. କ୍ଷେତ୍ରବାସୀ ନାୟକ- ବରିଷ୍ଠ ଗବେଷକ, ଆଲୋଚକଙ୍କର ଆକସ୍ମିକ ବିୟୋଗରେ ସାର୍ ଗଭୀର ଭାବରେ ମର୍ମାହତ ହୋଇଥିଲେ । ଗବେଷଣା ପରିଷଦ ଗଠନରେ କ୍ଷେତ୍ରବାସୀ ବାବୁ ବହୁଭାବରେ ଜଡ଼ିତ ଥିଲେ । ସାର୍ ତାଙ୍କ ସ୍ମୃତିରେ 'କ୍ଷେତ୍ରବାସୀ ସାହିତ୍ୟ-ବିଦ୍ୟା ପୁରସ୍କାର' ପ୍ରବର୍ତ୍ତନ କରି ସାରସ୍ୱତ ସାଧକ ଓ ଯୁବଗବେଷକମାନଙ୍କୁ ପ୍ରତିବର୍ଷ ପ୍ରଦାନ କରି ସଂବର୍ଦ୍ଧିତ କରୁଥିଲେ ।

୧୯୫୯-୬୦ ମସିହାର କଥା । ଜଣେ ପ୍ରବୀଣ ଅଧ୍ୟାପକ ଆଦର୍ଶ ଶିକ୍ଷାବିତ୍ ଭାବରେ ସେ ଭଦ୍ରକ କଲେଜର ଛାତ୍ରଛାତ୍ରୀମାନଙ୍କର ଅତିପ୍ରିୟ ଅଧ୍ୟାପକ ଥିଲେ । ଡ. ବେହେରା ସାହିତ୍ୟ ଓ ସଂସ୍କୃତିର ନିଷ୍ଠାପର ସାଧକ ଥିଲେ । ତାଙ୍କର ପ୍ରିୟ ଛାତ୍ର କ୍ଷେତ୍ରବାସୀ ନାୟକ ଓ ଯୁଗଳ କିଶୋର ପଟ୍ଟନାୟକ- ଭଦ୍ରକ କଲେଜର ମୋର ଘନିଷ୍ଠ ବନ୍ଧୁ । କ୍ଷେତ୍ରବାସୀ ନାୟକ ସାହିତ୍ୟିକ, ଗାଳ୍ପିକ ଏବଂ ସୁବକ୍ତା । ଅନ୍ୟପକ୍ଷରେ ଯୁଗଳବାବୁ ଜଣେ ଦକ୍ଷ ଛାତ୍ରନେତା ଓ ଛାତ୍ର ସଂଗଠକ ଥିଲେ । ମୋର ଏହି ଦୁଇଜଣ ବନ୍ଧୁଙ୍କ ମାଧ୍ୟମରେ ମୁଁ ସାର୍‌ଙ୍କ ସଂପର୍କରେ ଆସିଥିଲି । ସେତେବେଳେ ମୁଁ ଭଦ୍ରକ କଲେଜରେ ବିଜ୍ଞାନଶ୍ରେଣୀର ଛାତ୍ର ଏବଂ ଭଦ୍ରକ କଲେଜର ନାଟ୍ୟସଂସଦର ସଂପାଦକ ଭାବରେ ନିର୍ବାଚିତ ହୋଇଥିଲି । ସେହି ସମୟରେ ଭଦ୍ରକରେ ଏକ ଭଡ଼ା ଘରେ ସାର୍ ରହୁଥିଲେ । କ୍ଷେତ୍ରବାସୀ ବାବୁଙ୍କ ସହିତ ମତେ ତାଙ୍କ ଘରେ ଦେଖି ସାର୍ ପଚାରିଲେ ତୁମ ଘର କେଉଁଠି ? ମୁଁ କହିଥିଲି- କଟକ ଜିଲ୍ଲା ମାହାଙ୍ଗା ଥାନା ଅନ୍ତର୍ଗତ ଧାରୋଶ୍ୟାମସୁନ୍ଦରପୁର ଗ୍ରାମରେ । ତତ୍‌କାଳୀନ ଡିପିଆଇ ବାମାଚରଣ ଦାସଙ୍କ ଘର ପାଖରେ ।

ସାର୍ ମତେ ଚାହିଁଲେ ଏବଂ ପଚାରିଲେ- ତୁମେ କ'ଣ କେବେ ଥିଏଟର ଅଂଶଗ୍ରହଣ କରିଛ ?

ହଁ ସାର୍ ଆମ ସ୍କୁଲରେ ଅନେକ ସମୟରେ ଥିଏଟର ହୁଏ- ମୁଁ ଅଂଶଗ୍ରହଣ କରି ପୁରସ୍କୃତ ହୋଇଛି ।

ତୁମେ ନାଟ୍ୟକାର ଜଗମୋହନ ଲାଲ୍‌ଙ୍କୁ ଜାଣିଛ ?

ନା ସାର୍ ମୁଁ ତାଙ୍କୁ ଜାଣିନାହିଁ । କିନ୍ତୁ ମାହାଙ୍ଗାରେ ଲାଲ୍ ପରିବାର ଅଛନ୍ତି ? ରଂଗମଞ୍ଚ ଅଛି- ପ୍ରତିବର୍ଷ ଦଶହରା ସମୟରେ ସେଠାରେ ନାଟକ ହୁଏ, ମୁଁ ଦେଖିଛି ।

ତୁମେ କିଶୋରୀ ଚରଣ ଦାସଙ୍କୁ ଚିହ୍ନିଛ ?

ସେହି ବର୍ଷ ସ୍କୁଲର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ମୁଁ କିଶୋରୀ ବାବୁଙ୍କ ଲିଖିତ ଏକ ଗଳ୍ପ ପୁସ୍ତକ ପୁରସ୍କାର ଭାବରେ ପାଇଥିଲି । ତେଣୁ ମୁଁ କହିଲି ହଁ- ସେ ଜଣେ ଭଲ କଥାକାର ।

ତା'ପରେ ସାର୍ କହିଲେ- ତୁମେ ବିଜ୍ଞାନର ଛାତ୍ର- ମନଦେଇ ପାଠ ପଢ଼ । ନାଟ୍ୟ ସଂସଦର ସଂପାଦକ ହୋଇଛ କିପରି ସମ୍ଭାଳିବ ?

କ୍ଷେତ୍ରବାସୀ ବାବୁ ଏବଂ ଯୁଗଳବାବୁ ସେତେବେଳେ ଓଡ଼ିଶାରେ ଛାତ୍ର ୟୁନିୟନର ବରିଷ୍ଠ ନେତା । କଂଗ୍ରେସ ଦଳ ତଥା ଡ. ହରେକୃଷ୍ଣ ମହତାବଙ୍କ ସହିତ ସେମାନଙ୍କର ସଂପର୍କ ଥିଲା । ମହତାବ ବାବୁ ଥିଲେ କଲେଜର ଦୃଢ଼ ପୃଷ୍ଠପୋଷକ । ପୁଣି ସ୍ଥାନୀୟ ବିଶିଷ୍ଟ ବ୍ୟକ୍ତି ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସ ଥିଲେ କଲେଜ ପରିଚାଳନା କମିଟିର ସଂପାଦକ । ସମସ୍ତଙ୍କ ସହିତ ଯୁଗଳବାବୁ ଏବଂ କ୍ଷେତ୍ରବାସୀ ବାବୁଙ୍କର ସଂପର୍କ ଥିଲା ।

ଡ. ବେହେରା ପ୍ରକୃତରେ ଛାତ୍ରମାନଙ୍କର ସର୍ବଦା ଶୁଭେଚ୍ଛୁ ଥିଲେ ଏବଂ ସୁମାର୍ଗ ପ୍ରଦର୍ଶନ କରୁଥିଲେ । ବିଭିନ୍ନ ଛୁଟି ଦିନରେ ମୁଁ କ୍ଷେତ୍ରବାସୀ ବାବୁଙ୍କ ସହିତ ସାର୍‌ଙ୍କ ଘରକୁ ଯାଏ । ଛୁଟି ହୋଇଛି ମୁଁ ଯାଇନାହିଁ । କ୍ଷେତ୍ରବାସୀ ବାବୁ ଆସି କହନ୍ତି- ସାର୍ ତୁମକୁ ଖୋଜୁଥିଲେ । ପରେ ମୁଁ ଗଲି । ସାର୍‌ଙ୍କର ଲିଖିତ ଏକ ପ୍ରବନ୍ଧ ଗୀତି ନାଟ୍ୟକାର କବି ବୈଷ୍ଣବ ପାଣି କୌଣସି ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେହି ଲେଖାଟି ମତେ ପଢ଼ିବା ପାଇଁ ଦେଇ ସାର୍ କହିଲେ- ତୁମେ କବି ବୈଷ୍ଣବ ପାଣିଙ୍କୁ ଜାଣିଛ ?

ହଁ ସାର୍ । କବି ମୋ ମାମୁଘର ଗାଁର ଲୋକ । ତାଙ୍କୁ ମୁଁ ପାଖରୁ ଦେଖିଛି- ପ୍ରଖ୍ୟାତ ଗୀତିନାଟ୍ୟକାର ଏବଂ ଆଶୁକବି । ହଁ ତୁମେ କବି ବୈଷ୍ଣବ ପାଣି ଏବଂ ନାଟ୍ୟକାର ଜଗମୋହନ ଲାଲଙ୍କ ସଂପର୍କରେ କିଛି କାର୍ଯ୍ୟ କର- ଭଲ ହେବ । ମୁଁ ସାର୍‌ଙ୍କୁ ସେଦିନ ଜବାବ ଦେଇଥିଲି । ନିଶ୍ଚୟ କିଛି କାର୍ଯ୍ୟ କରିବି ।

ଭଦ୍ରକ କଲେଜର ପ୍ରତିବର୍ଷ ସପ୍ତାହବ୍ୟାପୀ ସାଂସ୍କୃତିକ ଉତ୍ସବ ଅନୁଷ୍ଠିତ ହୁଏ । ପୂର୍ଣ୍ଣାଙ୍ଗ ନାଟକ ମଞ୍ଚସ୍ଥ ହୁଏ । ସେଥିରେ ମୁଁ ନାୟକ ଭୂମିକାରେ ଏବଂ କବି ଜେନାମଣି ଲକ୍ଷ୍ମୀକାନ୍ତ ମୋ ସହିତ ନାୟିକା ଭୂମିକାରେ ଅଭିନୟ କରି ଉଭୟେ ପୁରସ୍କୃତ ହୋଇଥିଲୁ । ମୋର ମନେ ହୁଏ ପ୍ରଫେସର ଶ୍ୟାମଚରଣ ସାହୁ, ପ୍ରଫେସର ପ୍ରଫୁଲ୍ଲ କୁମାର ମିଶ୍ର ଏବଂ ପ୍ରଫେସର କୃଷ୍ଣଚରଣ ବେହେରା ତା'ର ବିଚାରକ ଥିଲେ ।

ତା'ପରେ ପରୀକ୍ଷା ସରିଲା- କଲେଜ ଛୁଟି ହୋଇଗଲା । ମୁଁ ଘରକୁ ଫେରି ଆସିଲି । କିଛିଦିନ ପରେ ଭଦ୍ରକ କଲେଜର ଦିବାଧାୟୀ ସଂଘର ପତ୍ରିକା ଖଣ୍ଡେ ଡାକରେ ଆସି ମୋ ପାଖରେ ପହଞ୍ଚିଲା । ମୁଁ ଦେଖିଲି- ସେଥିରେ ମୋ ଲିଖିତ କବିତା 'ଧୂଳିଝଡ଼' ପ୍ରକାଶିତ ହୋଇଛି । ମୁଁ ସାର୍‌ଙ୍କୁ ୨/୩ଟି ଲେଖା ଦେଇଥିଲି । ସେଥିରୁ ବାଛି ସାର୍ ଏହି

ଲେଖାଟିକୁ ପତ୍ରିକାରେ ଛାପିବା ପାଇଁ ଦେଇଛନ୍ତି । ତାହା ପ୍ରକାଶିତ ହୋଇଛି । ଏହା ଥିଲା ପ୍ରଥମ ପ୍ରକାଶିତ କବିତା । ଲେଖାଟି ଦେଖି ମୁଁ ବହୁତ ଖୁସି ହୋଇଥିଲି ।

ତା'ପରେ ମୁଁ ଚାଲିଆସିଲି ରେଭେନ୍ସା କଲେଜକୁ । କ୍ଷେତ୍ରବାସୀ ବାବୁ ରେଭେନ୍ସାକୁ ଆସି ଓଡ଼ିଆରେ ଏମ୍.ଏ. ପଢ଼ିଲେ ଏବଂ ଯୁଗଳବାବୁ ମଧୁସୂଦନ ଆଇନ୍ କଲେଜରେ ଆଇନ୍ ଅଧ୍ୟୟନ କଲେ । ସେମାନଙ୍କ ସହିତ ମୋର ବନ୍ଧୁତା ଅତୁଟ ରହିଥାଏ । ତାଙ୍କ ଠାରୁ ସାର୍‌ଙ୍କ ବିଷୟରେ ସବୁ ଖବର ପାଉଥାଏ । ସାର୍ କଟକ ଆସିଲେ ଡଗରପ୍ରେସକୁ ଯା'ନ୍ତି- ସେଠାରେ ଫତୁରା ନନ୍ଦଙ୍କ ସହିତ ମୋର ପରିଚୟ ଥିଲା । ମୁଁ ସେଠିକି ଯାଏ- ସାର୍‌ଙ୍କ ସହିତ ସେଠାରେ ଦେଖାହୁଏ । ମୋର ଡଗରରେ ଲେଖା ବାହାରିଲା- ରବିବାର କଳିଙ୍ଗ ଓ ରବିବାର ପ୍ରଜାତନ୍ତ୍ର ସମ୍ବାଦପତ୍ରର ସାହିତ୍ୟ ପୃଷ୍ଠାରେ ମୋ ଲେଖା ବାହାରୁଥାଏ । ଏଗୁଡ଼ିକ ସବୁ ସାରଙ୍କ ଦୃଷ୍ଟିକୁ ଆସେ । ସାକ୍ଷାତରେ ଏବଂ ଚିଠିଲେଖି ସାର୍ କେବଳ ପ୍ରଶଂସା କରନ୍ତି ନାହିଁ, ଲେଖାରେ ତ୍ରୁଟି କେଉଁଠି ରହିଲା- ତାହା ମଧ୍ୟ ସୂଚାଇ ଦିଅନ୍ତି । ମୋ ସଂପାଦନାରେ ୧୯୬୬ ମସିହାରେ ଗଣକବି ସ୍ମରଣିକା ଓ ୧୯୬୭ରେ ଆଦି ନାଟ୍ୟକାର ଜଗନ୍‌ମୋହନ ଲାଲ୍ ସ୍ମରଣିକା ପ୍ରକାଶିତ ହୁଏ । ଦୁଇଟିଯାକ ସ୍ମରଣିକା ମୁଁ ସାର୍‌ଙ୍କୁ ଦେଇଥିଲି । ତାହା ଦେଖି ସେ ବହୁତ ଖୁସି ହୋଇଥିଲେ । ଏହି ନାମକରଣ କିଏ କରିଛି ସେ ପଚାରିଥିଲେ ? ମୁଁ ଏହାର ନାମକରଣ କରିଛି । କବି ବୈଷ୍ଣବ ପାଣିଙ୍କୁ ଗଣକବି ବୈଷ୍ଣବପାଣି ଏବଂ ନାଟ୍ୟକାର ଜଗମୋହନ ଲାଲ୍‌ଙ୍କୁ ଆଦି ନାଟ୍ୟକାର ଜଗନ୍‌ମୋହନ ଲାଲ୍ ନାମରେ ମୁଁ ସମ୍ମାନିତ କରିଛି । ସାର୍ ମୋତେ ଧନ୍ୟବାଦ ସହିତ କହିଲେ ତୁମେ ଦୁଇଜଣ ବିସ୍ମୃତ ସାରସ୍ୱତ ସାଧକଙ୍କୁ ପୁନଃ ଉଜ୍ଜୀବିତ କରିଦେଲ ।

ସେହି ସମୟରେ ଏକ ନୂତନ ପତ୍ରିକା 'ଶତରୂପା' ପ୍ରକାଶ ପାଇଲା । ଡ. ବେହେରାଙ୍କର ଏକ ଗଳ୍ପ 'ବେଦୀ' ସେଥିରେ ପ୍ରକାଶ ପାଇଥିଲା । ଉକ୍ତ ଗଳ୍ପକୁ ନେଇ ବାଦ ପ୍ରତିବାଦ ସୃଷ୍ଟି ହେଲା । ସେହି ସମୟରେ ମୁଁ ପଶ୍ଚିମ ଛାତ୍ରାବାସର ମୁଖପତ୍ର ଊର୍ମିର ସଂପାଦକ ଥାଏ । ପତ୍ରିକା ପାଇଁ ବାର୍ତ୍ତା ଆଣିବା ନିମନ୍ତେ ନିଆଁଖୁଣ୍ଟାର ସଂପାଦକ ପ୍ରଖ୍ୟାତ କବି ଗୋଦାବରୀଶ ମହାପାତ୍ରଙ୍କ ପାଖକୁ ମୁଁ ଯାଇଥାଏ । ନିଆଁଖୁଣ୍ଟା ପତ୍ରିକାର କାର୍ଯ୍ୟାଳୟରେ ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ଓ ସାମ୍ବାଦିକ ଅଦ୍ୱୈତ ବଲ୍ଲଭ ରାୟ ମଧ୍ୟ ବସି ତାଙ୍କ ସହିତ ଆଳାପ କରୁଥିଲେ । ନିଆଁଖୁଣ୍ଟାର ସଂପାଦକ ଗୋଦାବରୀଶ ବାବୁ କହିଲେ ସୁଲେଖକ ଏବଂ ଜଣେ ବିଶିଷ୍ଟ ଅଧ୍ୟାପକ ଗୋଟେ ଅତ୍ୟନ୍ତ ଅଶ୍ଳୀଳ ଗପ ଲେଖିଛନ୍ତି- ତାହା ଏକ ଚର୍ଚ୍ଚାର ବିଷୟ ହୋଇଛି । ବିଧାନସଭାରେ ମଧ୍ୟ ଏ କଥା ଉଠିଲାଣି ।

ଅଦ୍ୱୈତ ବାବୁ ମତେ ପଚାରିଲେ- ତୁମେ ସେ ଗଳ୍ପ ପଢ଼ିଛ ?

ହଁ ପଢ଼ିଛି ଏବଂ ଖୁବ୍ ଭଲ ହୋଇଛି ବୋଲି ମୁଁ କହିଲି ।

କିହୋ ସେ ଜଣେ ଶିକ୍ଷକ- କ୍ଲାସ୍‌ରେ ପୁଅଝିଅଙ୍କୁ ପାଠ ପଢ଼ାଉଛନ୍ତି । ଏପରି ଅଶ୍ଳୀଳ ଗପ ଲେଖିବେ ? ଛାତ୍ର ସମାଜରେ ତା'ର ପତ୍ରିକ୍ରିୟା କ'ଣ ହେବ ?

ତା' ପରେ ମୁଁ କହିଲି- କବିସମ୍ରାଟ ଉପେନ୍ଦ୍ରଭଂଜଙ୍କର ଲାବଣ୍ୟବତୀ କାବ୍ୟର ଅଶ୍ଳୀଳ ଛାନ୍ଦ ପଢ଼ାଇବା, କୋଣାର୍କର ସୂର୍ଯ୍ୟ ମନ୍ଦିର ଦେଖିବା ସମୟରେ କାହାରି ତ ପ୍ରତିକ୍ରିୟା ସୃଷ୍ଟି ହେଉନାହିଁ ?

କବି ଗୋଦାବରୀଶ ମହାପାତ୍ର ମୋ କଥାରେ ବିଶେଷ ସନ୍ତୁଷ୍ଟ ହେଲା ଭଳି ମନେହେଲା ନାହିଁ ।

ମୋ କାମସାରି ସେଠାରୁ ମୁଁ ଆସିଲା ପରେ ରେଭେନ୍ସା କଲେଜ ଛକରେ କ୍ଷେତ୍ରବାସୀ ବାବୁଙ୍କ ସହିତ ଦେଖାହେଲା ।

ସେ କହିଲେ ଭଦ୍ରକ କଲେଜର ପରିଚାଳନା କମିଟି ସାର୍‌ଙ୍କୁ 'ବେଦୀ' ଗଳ୍ପ ପାଇଁ କୈଫିୟତ ତଲବ କରିଛି । ସାର୍‌ଙ୍କର ବିରୋଧୀ ଗୋଷ୍ଠୀ ଅଯଥାରେ ଏପରି ଗଣ୍ଡଗୋଳ ଲଗାଇଛନ୍ତି । ସେହିଠାରୁ ଆମେ ଉଭୟେ ଡଗର ପତ୍ରିକା ଅଫିସକୁ ଆସିଲୁ- ଫତୁରାନନ୍ଦଙ୍କୁ ଭେଟିଲୁ- ଉକ୍ତ ଘଟଣା ବିଷୟରେ ଜାଣିବା ପାଇଁ । ଫତୁରାନନ୍ଦ ବାବୁ କହିଲେ- ମୁଷ୍ଟିମେୟ ଲୋକଙ୍କର କୌଣସି ବ୍ୟକ୍ତିଗତ ଆକ୍ରୋଶ ଥିବା ହେତୁ ଏବଂ ବିକାରଗ୍ରସ୍ତ ମନର ପ୍ରତିକ୍ରିୟା ହେତୁ ସେମାନେ କୃଷ୍ଣବାବୁଙ୍କ ବିରୋଧରେ 'ମାଙ୍କଡ଼ ହୁରୁଡ଼ା ହଲ୍ଲା' ସୃଷ୍ଟି କରିଛନ୍ତି । ଏସବୁ ମାମୁଲି କଥା । କିଛି ହେବ ନାହିଁ ।

ଉତ୍କଳ ସାହିତ୍ୟ ସମାଜ ତରଫରୁ ଶ୍ରୀରାମଚନ୍ଦ୍ର ଭବନରେ ଏକ ଆଲୋଚନାଚକ୍ର ମଧ୍ୟ ଆୟୋଜିତ ହୋଇଥିଲା । ଡ. କୃଷ୍ଣଚରଣ ବେହେରା ଅଶ୍ଳୀଳତା ବିପକ୍ଷରେ ଏକ ଲିଖିତ ପ୍ରବନ୍ଧ ପାଠ କରିଥିଲେ । ଉକ୍ତ ପ୍ରବନ୍ଧଟି ଅତ୍ୟନ୍ତ ବଳିଷ୍ଠ ଯୁକ୍ତି ସଂବଳିତ ତଥ୍ୟପୂର୍ଣ୍ଣ ଲିଖିତ ବକ୍ତବ୍ୟ ଥିଲା । ଉପସ୍ଥିତ ସମସ୍ତ ବୁଦ୍ଧିଜୀବୀ, ଶ୍ରୋତୃମଣ୍ଡଳୀଙ୍କ ଦ୍ୱାରା ତାହା ଉଚ୍ଚପ୍ରଶଂସିତ ହୋଇଥିଲା । ସାହିତ୍ୟିକ ତଥା ଭଦ୍ରକର ବିଧାୟକ ନିତ୍ୟାନନ୍ଦ ମହାପାତ୍ର, କଳିଙ୍ଗର ସଂପାଦକ ସୁରେନ୍ଦ୍ର ମହାନ୍ତି, ଡଗରର ସଂପାଦକ ଫତୁରାନନ୍ଦ, ପ୍ରଜାତନ୍ତ୍ରର ସଂପାଦକ ଜାନକୀବଲ୍ଲଭ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ରଙ୍କର ସମର୍ଥନ ଏବଂ ସର୍ବୋପରେ ଡ. ହରେକୃଷ୍ଣ ମହତାବଙ୍କର ଡ. ବେହେରାଙ୍କ ପ୍ରତି ଆନ୍ତରିକ ଶୁଭେଚ୍ଛା ଥିଲା । କିଛି ଦିନ ପରେ ଏହି କଥିତ ପ୍ରତିକ୍ରିୟା ଚାହା କପୂର ଝଡ଼ଭଳି ବିଲୀନ ହୋଇଯାଇଥିଲା । ଆଉ ବେଦୀ ଗଳ୍ପ ଅପୂର୍ବ ପାଠକୀୟ ଶ୍ରଦ୍ଧା ଲାଭ କରିବା ସହିତ ଡ. ବେହେରାଙ୍କର ଏହା ଏକ ଅନନ୍ୟ କୃତି ଭାବରେ ଖ୍ୟାତି ଲାଭ କରିଥିଲା ।

ଭଦ୍ରକ ଅଞ୍ଚଳରେ ଲୋକପ୍ରିୟ ନାଟକ କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କର ରଚିତ ମୋଗଲ ତାମସାର ପାଣ୍ଡୁଲିପି ଉଦ୍ଧାର କରି ଡ. ବେହେରା ତା'ର ସଂପାଦନା କରି

ପ୍ରକାଶ କରିଥିଲେ । ଏଥିପାଇଁ ଡ. ହରେକୃଷ୍ଣ ମହତାବ ଏବଂ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ସାର୍‌ଙ୍କୁ ଭୂରି ଭୂରି ପ୍ରଶଂସା କରିଛନ୍ତି । ପ୍ରାୟ ୧୯୮୨ ମସିହା-ସାର୍‌ଙ୍କର ପ୍ରିୟ ଛାତ୍ର ମୋର ବନ୍ଧୁ ଯୁଗଳକିଶୋର ପଟ୍ଟନାୟକ ରାଜ୍ୟରେ ସଂସ୍କୃତି ବିଭାଗ ମନ୍ତ୍ରୀ ଥିଲେ । ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ସଂସ୍କୃତି ବିଭାଗ ତରଫରୁ ମୋଗଲ ତାମସା ମଞ୍ଚସ୍ଥ ହୋଇ ଉଚ୍ଚପ୍ରଶଂସିତ ହେଲା । ଯାହା ଫଳରେ ରାଜ୍ୟସ୍ତରରେ ଏବଂ ଜାତୀୟ ସ୍ତରରେ ଦିଲ୍ଲୀରେ ମଧ୍ୟ ମୋଗଲ ତାମସା ମଞ୍ଚସ୍ଥ କରାଗଲା, ଯେଉଁଦିନ ଏହି ମୋଗଲ ତାମସା ମଞ୍ଚସ୍ଥ କରୁଥିଲେ ସେମାନେ ସଂସ୍କୃତି ବିଭାଗରୁ ଆର୍ଥିକ ସହାୟତା ପାଉଥିଲେ । ଯେଉଁ ସରକାରୀ କାର୍ଯ୍ୟକ୍ରମରେ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନର କଳାକାରମାନେ, ଓଡ଼ିଶୀ ନୃତ୍ୟ ଓ ସଂଗୀତ ଅନୁଷ୍ଠାନର ଶିକ୍ଷୀମାନେ ସରକାରଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମରେ ଯୋଗଦେଇ ଆର୍ଥିକ ସହାୟତା ପାଉଥିଲେ । ମୋଗଲ ତାମସା ମଞ୍ଚସ୍ଥ ହେବା ହେତୁ ସେମାନଙ୍କର ସରକାରୀ ପ୍ରୋଗ୍ରାମ କମିଗଲା ଓ ଆର୍ଥିକ ଦୃଷ୍ଟିରୁ ସେମାନେ କ୍ଷତିଗ୍ରସ୍ତ ହେଲେ । ସେମାନଙ୍କ ଭିତରେ ଏଥିପାଇଁ ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ସେମାନଙ୍କ ସହିତ ସଂସ୍କୃତି ବିଭାଗର କିଛି କର୍ମଚାରୀ ମଧ୍ୟ ଜଡ଼ିତ ହୋଇଗଲେ ।

ପ୍ରଦ୍ୟୁମ୍ନ ବଳଙ୍କର ପ୍ରତିଷ୍ଠିତ ଓ ସଂପାଦିତ 'ପ୍ରଗତିବାଦୀ' ଦୈନିକ ଖବରକାଗଜରେ ପ୍ରକାଶ ପାଇଲା- "ଜଣେ ମନ୍ତ୍ରୀଙ୍କ ଉଦ୍ୟମରେ ରାଜ୍ୟବ୍ୟାପୀ ସଂସ୍କୃତି ବିଭାଗ ଆନୁକୂଲ୍ୟରେ ଏବଂ ରାଜ୍ୟ ବାହାରେ ଏକ ଇସଲାମଧର୍ମକୁ ବିଦ୍ରୂପ କରୁଥିବା- ନିମ୍ନମାନର ନାଟକ ମୋଗଲ ତାମସାକୁ ସରକାର ପ୍ରୋତ୍ସାହନ ଦେଉଛନ୍ତି କାହିଁକି ଏବଂ ଉକ୍ତ ନାଟକକୁ ବିଭିନ୍ନ ସ୍ଥାନରେ ଆର୍ଥିକ ସହାୟତା ଦେଇ ମଞ୍ଚସ୍ଥ କରାଯାଉଛି କେଉଁ ସ୍ୱାର୍ଥରେ ? ଓଡ଼ିଶାରେ ବହୁ ଉନ୍ନତମାନର ଗୀତିନାଟ୍ୟ, ଥିଏଟର, ଛଉନୃତ୍ୟ, ସମ୍ବଲପୁରୀ ନୃତ୍ୟ ଓ ଓଡ଼ିଶୀ ନୃତ୍ୟ କାର୍ଯ୍ୟକ୍ରମ ସରକାରୀ ପ୍ରୋଗ୍ରାମରେ ଅନ୍ତର୍ଭୁକ୍ତ ନହୋଇ ମୋଗଲ ତାମସାକୁ କାହିଁକି ଗୁରୁତ୍ୱ ଦିଆଯାଉଛି ।" ଏହା ପ୍ରଗତିବାଦୀରେ ପ୍ରକାଶିତ ହେଲା ପରେ ସର୍ବତ୍ର ଏହା ଏକ ଚର୍ଚ୍ଚିତ ଘଟଣା ହୋଇଗଲା ।

କଟକ, ଝାଞ୍ଜିରୀ ମଙ୍ଗଳା, ପ୍ରଦ୍ୟୁମ୍ନ କିଶୋର ବଳଙ୍କର ନିଜ ଘର ସାଗରିକାରେ ମୁଁ ରହୁଥାଏ- ଦିନେ ସକାଳୁ ଡ. କୃଷ୍ଣଚରଣ ବେହେରା ସେଠାରେ ଆସି ପହଞ୍ଚିଲେ । ମୋ ସହିତ ଦେଖାହେଲା । ପ୍ରଦ୍ୟୁମ୍ନ ବାବୁଙ୍କ ସହିତ ମୋ ଉପସ୍ଥିତିରେ 'ମୋଗଲ ତାମସା' ସଂପର୍କରେ ପ୍ରକାଶିତ ସମ୍ବାଦ ବିଷୟରେ ଆଲୋଚନା ହେଲା । ସେ ପ୍ରଦ୍ୟୁମ୍ନ ବାବୁଙ୍କୁ ମୋଗଲ ତାମସା ବହି ଖଣ୍ଡକ ଦେଲେ । ଡ. ମହତାବ ଏବଂ କାଳୀବାବୁଙ୍କର ଏହି ନାଟକ ସଂପର୍କରେ ମତାମତକୁ ମଧ୍ୟ ଜଣାଇଲେ । ଏହା ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ମୈତ୍ରୀଭାବ ସ୍ଥାପନ ଉଦ୍ଦେଶ୍ୟରେ ରଚିତ ହୋଇଛି- ଏହା ଇସ୍‌ଲାମ ଧର୍ମ ବିରୋଧୀ ସାଂପ୍ରଦାୟିକ ନାଟକ ହେଲା କିପରି ?

ପ୍ରଦ୍ୟୁମ୍ନବାବୁ ସବୁକଥା ଶୁଣି ଘଟଣାକୁ ହୃଦୟଙ୍ଗମ କଲେ । ଏକ ସ୍ପଷ୍ଟୀକରଣ ରୂପେ ପ୍ରକାଶିତ ସଂବାଦର ଏକ ଜବାବ ପ୍ରଗତିବାଦୀରେ ପ୍ରକାଶିତ କରିବା ପାଇଁ ସ୍ଥିର କରାଗଲା । ମୁଁ ସେତେବେଳେ ବିଧାୟକ ଥାଏ । ପ୍ରଦ୍ୟୁମ୍ନ ବାବୁ ମତେ ଏକଥା ପଚାରିବାରୁ ମୁଁ ତାଙ୍କୁ ସବୁ କଥା ବୁଝାଇଦେଲି । ସଂସ୍କୃତି ବିଭାଗର ଅଫିସରଙ୍କ ଗୋଷ୍ଠୀବିବାଦ ଏବଂ କଟକ-ଭୁବନେଶ୍ୱରରେ ସାଂସ୍କୃତିକ ଅନୁଷ୍ଠାନ ସରକାରୀ ଆର୍ଥିକ ଅନୁଦାନରୁ ବଞ୍ଚିତ ହେବା ହେତୁ ଏଭଳି ପ୍ରତିକ୍ରିୟା ସୃଷ୍ଟି ହୋଇଛି । ଏହା ପରେ ସଂସ୍କୃତି ବିଭାଗ ତରଫରୁ ମୋଗଲ ତାମସାର ଅଭିନୟ ବନ୍ଦ ହୋଇଯାଇଥିଲା । ତା' ବିରୁଦ୍ଧରେ ସୃଷ୍ଟି ହୋଇଥିବା ପ୍ରତିକ୍ରିୟା ଓ ଆନ୍ଦୋଳନ ଆପେ ଆପେ ଥମି ଯାଇଥିଲା ।

ସେହି ୧୯୮୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ଉତ୍ସବ ମହାସମାରୋହରେ ଆୟୋଜନ କରାଯାଇଥିଲା । ଭୁବନେଶ୍ୱର ପ୍ରଦର୍ଶନୀ ପଡ଼ିଆରେ ପୁସ୍ତକ ମେଳାର ମଧ୍ୟ ଆୟୋଜନ ହୋଇଥିଲା । ସେତେବେଳେ ବିଶିଷ୍ଟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି, କବି ରାଧାମୋହନ ଗଡ଼ନାୟକ ଉପସଭାପତି ଦାୟିତ୍ୱରେ ଥିଲେ । ଶ୍ରୀ ରାଈଚରଣ ଦାସ ସଚିବ ଭାବରେ କାର୍ଯ୍ୟ କରୁଥିଲେ । ଏକାଡ଼େମୀର ରୌପ୍ୟ ଜୟନ୍ତୀ ଉତ୍ସବରେ 'ଓଡ଼ିଆ ଗବେଷଣା ପରିଷଦକୁ ଦାୟିତ୍ୱ ଦିଆଯାଇଥିଲା- ଓଡ଼ିଆ ସାହିତ୍ୟର ବିକାଶଧାରା ସଂପର୍କିତ ଏକ ପୁସ୍ତକ ପ୍ରଦର୍ଶନୀ ଆୟୋଜନ କରିବାକୁ ।" ଶ୍ରୀଜଗନ୍ନାଥ ମନ୍ଦିର ଆକାରରେ ପ୍ରଦର୍ଶନୀ ମଣ୍ଡପ ନିର୍ମିତ ଓ ସଜ୍ଜିତ ହୋଇଥିଲା । ମଣ୍ଡପରେ ଓଡ଼ିଆ ସାହିତ୍ୟର ବିକାଶର ନୂତନ ଧାରା ପ୍ରବର୍ତ୍ତନ କରିଥିବା ଓଡ଼ିଆ ସାହିତ୍ୟର ପୁସ୍ତକଗୁଡ଼ିକକୁ ସଂକ୍ଷିପ୍ତ ବିବରଣୀ ସହିତ ସଜ୍ଜିତ କରି ମଣ୍ଡପରେ ରଖାଯାଇଥିଲା । ଏକାଡ଼େମୀ କର୍ତ୍ତୃପକ୍ଷଙ୍କର ନିର୍ଦ୍ଦେଶ ଅନୁଯାୟୀ ଏହା କରାଯାଇଥିଲା ।

ଏଥିରେ କିଛି ଲେଖକ ଓ କବିଙ୍କର ପୁସ୍ତକ ସ୍ଥାନିତ ହୋଇପାରି ନ ଥିଲା । ସଭାସ୍ଥଳରେ ସେମାନେ ପାଟିତୁଣ୍ଡ ଏବଂ ବିଭ୍ରାଟ ଉପୁଯାଇବା ସହିତ ଏକାଡ଼େମୀର ସଭାପତିଙ୍କ ପାଖରେ ଗୁରୁତର ଅଭିଯୋଗ ଆଣିଥିଲେ । ଆର୍ଥିକ ଅପବ୍ୟୟ ସଂପର୍କରେ ମଧ୍ୟ କଥା ଉଠିଲା । ଏହି ଉତ୍ସବରେ କର୍ତ୍ତୃପକ୍ଷ ଅଯଥା ଅତିରିକ୍ତ ଖର୍ଚ୍ଚ କରି ଜନସାଧାରଣଙ୍କର ଅର୍ଥର ଅପବ୍ୟବହାର କରିଛନ୍ତି ବୋଲି ତୀବ୍ର ସମାଲୋଚନା ହେଲା । ଅବଶ୍ୟ ଏକାଡେମୀର ସଭାପତି ସୁରେନ୍ଦ୍ର ମହାନ୍ତି ଏହାକୁ ଦୃଢ଼ ଭାବରେ ଖଣ୍ଡନ କରିଥିଲେ ।

କିନ୍ତୁ ଏହି ପ୍ରତିକ୍ରିୟା ଥିଲା ପ୍ରକୃତରେ ସଂସ୍କୃତି ବିଭାଗର କିଛି ଅର୍ଥଲୋଭୀ ଅଫିସର ଗୋଷ୍ଠୀ ଓ ଆର୍ଥିକ ସହାୟତା ପାଇବାରୁ ବଞ୍ଚିତ ହୋଇଥିବା କିଛି ତଥାକଥିତ ସାହିତ୍ୟିକବୃନ୍ଦ- ଉଭୟେ ଏକତ୍ରିତ ହୋଇ ଏଭଳି ପରିସ୍ଥିତି ସୃଷ୍ଟି କରିଥିଲେ । ଏକାଡେମୀର ରୌପ୍ୟ ଜୟନ୍ତୀ ଉତ୍ସବ ଏବଂ ମୋଗଲ ତାମସା ଘଟଣା ପ୍ରାୟ ପାଖାପାଖି ଏକ ସମୟର ଘଟଣା । କଥାରେ ଅଛି 'ମାରିନେଲେ ମହାପାତ୍ରେ- ଚାହିଁ ରହିଲେ ଜଳକା'- ପ୍ରକୃତରେ ଅର୍ଥସବୁ

ଅନର୍ଥର ମୂଳ । ଏସବୁ କଥାରେ ଡ.କୃଷ୍ଣଚରଣ ବେହେରାଙ୍କର ଆଦୌ ସଂପର୍କ ନ ଥିଲା । ଯଦି ସଂସ୍କୃତି ବିଭାଗ ମନ୍ତ୍ରୀ ଦୂରଦୃଷ୍ଟି ରଖି ଏସବୁ ଘଟଣାକୁ ଠିକ୍ ଭାବରେ ନିୟନ୍ତ୍ରଣ ଓ ପରିଚାଳନା କରିଥାନ୍ତେ- ଏଭଳି ବିଶୃଙ୍ଖଳା ଓ ଅପପ୍ରଚାର ଆଦୌ ଘଟିନଥାନ୍ତା ।

ସଦାସର୍ବଦା ଡ. ବେହେରାଙ୍କ ସହିତ ମୋର ଘନିଷ୍ଠ ସଂପର୍କ ରହିଥିଲା । ଓଡ଼ିଆ ଗବେଷଣା ପରିଷଦର ଆଲୋଚନାଚକ୍ରକୁ ମତେ ଅତିଥି ଭାବରେ ସାର୍ ଆମନ୍ତ୍ରଣ କରିଛନ୍ତି । ତାଙ୍କ ପରାମର୍ଶରେ ଓଡ଼ିଆ ନାଟକର ଆଦିପର୍ବ ତଥା ଆଦିନାଟ୍ୟକାର ଜଗନ୍ମୋହନ ଲାଲଙ୍କ ସଂପର୍କରେ ସେଠାରେ ମୁଁ ବକ୍ତବ୍ୟ ପ୍ରଦାନ କରିଛି । ପୁନଶ୍ଚ ଗବେଷଣା ପରିଷଦର ବାର୍ଷିକ ଉତ୍ସବରେ (୧୯୮୭-୮୮) ଶ୍ରୀରାମଚନ୍ଦ୍ର ଭବନକୁ ଉଦ୍‌ଘାଟକ ଭାବରେ ସାର୍ ମତେ ଆମନ୍ତ୍ରଣ କରିଛନ୍ତି । ଏପରି ଶ୍ରଦ୍ଧା ଓ ସମ୍ମାନକୁ କେବେ ବି ମୁଁ ଭୁଲିପାରିବି ନାହିଁ ।

ମାହାଙ୍ଗାରେ ଗଣକବି ବୈଷ୍ଣବ ପାଣିଙ୍କ ଜୟନ୍ତୀ କୁମାରପୂର୍ଣ୍ଣିମା ଦିନରୁ ସାତଦିନ ବ୍ୟାପୀ ମହାସମାରୋହରେ ତଟିନୀ ବିରୂପାର ଉଭୟ ତଟରେ ଏକ ଜାତୀୟ ଉତ୍ସବ ଭାବରେ ପାଳିତ ହୁଏ । ଗୀତିନାଟ୍ୟ ପ୍ରତିଯୋଗିତା ଅନୁଷ୍ଠିତ ହୁଏ । ଉକ୍ତ ଉତ୍ସବରେ ଯୋଗଦେବା ପାଇଁ ମୁଁ ସାର୍‌ଙ୍କୁ ଆମନ୍ତ୍ରଣ କରି ନେଇଥିଲି । ଗଣକବିଙ୍କର ଜନ୍ମଭୂମି ଓ ସାଧନାପୀଠ କୋଠପଦା ମଠରେ ଜୟନ୍ତୀ ଉତ୍ସବ ଦେଖି ସାର୍ ବିମୋହିତ ହୋଇଥିଲେ । ସଭାରେ କହିଥିଲେ- ଆମ ଲୋକସାହିତ୍ୟକୁ ତଥା ଗୀତିନାଟ୍ୟକୁ ଜନପ୍ରିୟ କରିବା ସହିତ ତୁମେ ମତଲୁବ ଗଣକବିଙ୍କୁ ଗଣଜୀବନର ମହାକବି ଭାବରେ ଉଜ୍ଜୀବିତ କରିଦେଲ ।

ପୁନଶ୍ଚ ସାର୍‌ଙ୍କୁ ଆମ ଅଞ୍ଚଳର ଆଉ ଏକ ପ୍ରସିଦ୍ଧ ଉତ୍ସବ କବିସମ୍ରାଟ୍ ଉପେନ୍ଦ୍ରଭଂଜ ଜୟନ୍ତୀ ଓ ରଜ ଉତ୍ସବକୁ ମୁଖ୍ୟ ଅତିଥି ଭାବରେ ଆମନ୍ତ୍ରଣ କରି ଆଣିଥିଲି । କବିସମ୍ରାଟ୍ ଉପେନ୍ଦ୍ରଭଂଜ ସମ୍ମାନରେ ଗୋକନ ଭଂଜମଣ୍ଡପରେ ତାଙ୍କୁ ସଂବର୍ଦ୍ଧିତ କରାଯାଇଥିଲା । ଉପେନ୍ଦ୍ରଭଂଜଙ୍କ ମୂର୍ତ୍ତି ଓ ଉତ୍ସବ ଦେଖି ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ । ଆମ ଅଞ୍ଚଳର ସାଂସ୍କୃତିକ କାର୍ଯ୍ୟକ୍ରମକୁ ଦେଖି ସେ ଅନୁଷ୍ଠାନ ଓ ଉଦ୍ୟୋକ୍ତାମାନଙ୍କୁ ଭୂୟସୀ ପ୍ରଶଂସା କରିଥିଲେ । ବାଟରେ କାର୍‌ରେ ଆସିଲା ବେଳେ ସାର୍ ମତେ କହିଲେ- "ମୁଁ ଆଶ୍ଚର୍ଯ୍ୟ ହେଉଛି- ଏକାଧାରରେ ରାଜନୀତି, ସମାଜସେବା, ସେଥିରେ ସାଂସ୍କୃତିକ ଉତ୍ସବ, ସାହିତ୍ୟ ସାଧନା ତୁମେ କରିପାରୁଛ- ଏତେ ସମୟ ପାଉଛ କେଉଁଠୁ ?"

ଏହା ସହିତ ମୁଁ ଏଠାରୁ ଯାହା ଜାଣିଲି- ତୁମେ ତୁମ ଅଞ୍ଚଳର ସମସ୍ତ ସାରସ୍ୱତ ସାଧକ ଜାତୀୟ ଗୌରବ ମଧୁସୂଦନ ଦାସ, ପଣ୍ଡିତ ଗୋପବନ୍ଧୁ ଦାସ, ପଲ୍ଲୀକବି ନନ୍ଦକିଶୋର ବଳ, ବାଗ୍ମୀ ବିଶ୍ୱନାଥ କର, ଗଣକବି ବୈଷ୍ଣବ ପାଣି, ଆଦିନାଟ୍ୟକାର

ଜଗନ୍‌ମୋହନ ଲାଲ, ଐତିହାସିକ ପ୍ୟାରୀମୋହନ ଆଚାର୍ଯ୍ୟ, ଶିକ୍ଷାଗୁରୁ ବିଦ୍ୟାଧର ବର୍ମାଙ୍କର ମୂର୍ତ୍ତି ତାଙ୍କ ଜନ୍ମସ୍ଥାନରେ ପ୍ରତିଷ୍ଠା କରିଛ । ପୁନଶ୍ଚ ଗାନ୍ଧିଜୀ, ପଣ୍ଡିତ ଜବାହାରଲାଲ ନେହରୁ, ଇନ୍ଦିରା ଗାନ୍ଧିଙ୍କ ମୂର୍ତ୍ତି ପ୍ରତିଷ୍ଠା କରିଛ । ଏହା ସହିତ ଉତ୍କଳ ସାହିତ୍ୟ ସମାଜରେ ସ୍ଥାନିତ ପାଇଁ ତୁମେ ଅନେକ କବିଙ୍କର ତୈଳଚିତ୍ର ପ୍ରଦାନ କରିଛ । ପଲ୍ଲୀକବିଙ୍କର ପ୍ରତିମୂର୍ତ୍ତି ସେଠାରେ ପ୍ରତିଷ୍ଠା କରିଛ । ଏହା କମ୍ କଥା ନୁହେଁ । ଡ. ମହତାବଙ୍କୁ ଛାଡ଼ିଦେଲେ ଏତେ ସାହିତ୍ୟ ସଂସ୍କୃତିପ୍ରାଣ ରାଜନେତା ମୁଁ ଆଉ କେଉଁଠି କାହାକୁ ଦେଖିନାହିଁ । ମୁଁ ଆଶୀର୍ବାଦ କରୁଛି- ତୁମର ଏହି ସାଂସ୍କୃତିକ ସାଧନା ଅବାରିତ ରହୁ । ଜୀବନରେ ତୁମେ ଅଧିକ ଯଶସ୍ୱୀ ହୁଅ । ଡ. ବେହେରାଙ୍କର ଆବେଗଭରା ବକ୍ତବ୍ୟ ଓ ଆତ୍ମବିଭୋର ଅବସ୍ଥା ଦେଖି ମୁଁ ମଧ୍ୟ ଅଭିଭୂତ ହୋଇଯାଇଥିଲି ।

ଅନେକ ପରିସ୍ଥିତିରେ ମୁଁ ସାର୍‌ଙ୍କୁ ସାକ୍ଷାତ କରିଛି । ତାହା ବେଦୀ ଗଙ୍ଗର ପ୍ରତିକ୍ରିୟା ସମୟ ହେଉ, ମୋଗଲ ତାମସା ସଂପର୍କରେ ବିଭିନ୍ନ ଚର୍ଚ୍ଚା ଓ ସମାଲୋଚନା ସମୟରେ ମୁଁ ସାର୍‌ଙ୍କୁ ଦେଖିଛି । ତାଙ୍କର ସୁଯୋଗ୍ୟ ସନ୍ତାନ ବରିଷ୍ଠ ପ୍ରଶାସକ ଶୁଭକାନ୍ତଙ୍କର ଆକସ୍ମିକ ବିୟୋଗ ସମୟରେ ମୁଁ ସାର୍‌ଙ୍କୁ ଭେଟିଛି । ଅସାଧାରଣ ତପସ୍ୱୀ ଜ୍ଞାନଯୋଗୀ ପୁରୁଷ । ଅସୀମ ଧୈର୍ଯ୍ୟ, ଅପରିସୀମ ଶକ୍ତି । ଏଭଳି ମହାମନୀଷୀ ସତରେ ଭାଗ୍ୟରେ ଥିଲେ ମିଳନ୍ତି ।

ମୋ ସଂପାଦିତ 'ଆଗାମୀ ଶତାବ୍ଦୀ' ପତ୍ରିକାର ସାର୍ ଥିଲେ ନିୟମିତ ପାଠକ । ମୋର ନିବନ୍ଧଗୁଡ଼ିକ 'ଆଗାମୀ ଶତାବ୍ଦୀ' ପତ୍ରିକାରେ ବିଭିନ୍ନ ସଂଖ୍ୟାରେ ପ୍ରକାଶ ପାଉଥିଲା । ତାକୁ ପଢ଼ି ସାର୍ ଅନେକଥର ମତେ ଫୋନ କରିଛନ୍ତି ଏବଂ ପ୍ରବନ୍ଧଗୁଡ଼ିକର ଆଲୋଚନା କରିଛନ୍ତି । ସେହି ପ୍ରବନ୍ଧଗୁଡ଼ିକୁ ଏକତ୍ରିତ କରି ପୁସ୍ତକ ଆକାରରେ ପ୍ରକାଶ ପାଇଁ ମତେ ପରାମର୍ଶ ଦେଲେ । ଶେଷରେ ସମସ୍ତ ପ୍ରବନ୍ଧକୁ ଏକତ୍ରିତ କରି 'ଶତାବ୍ଦୀର ମହାନାୟକ' ପୁସ୍ତକକୁ ମୁଁ ତାଙ୍କ ପାଖରେ ଥୋଇଲି ତା'ର ମୁଖବନ୍ଧ ଲେଖିବାକୁ । ସେ ଆନନ୍ଦର ସହିତ ମୁଖବନ୍ଧ ଲେଖିଥିଲେ । ସେଥିରେ ଉଲ୍ଲେଖ କରିଥିଲେ- 'ସେକ୍ ମତଲୁବ୍ ଅଲ୍ଲିଙ୍କ ରଚିତ ଏଗାର ଗୋଟି ପ୍ରବନ୍ଧର ସୁନ୍ଦର ସଞ୍ଚୟନଟି ହାତକୁ ଆସିଲା । ସରଳ ଭାଷା ଓ ସ୍ୱଚ୍ଛ ପ୍ରାଞ୍ଜଳ ଶୈଳୀରେ ଲେଖା । ଏହି ପ୍ରବନ୍ଧଗୁଡ଼ିକ ପଢ଼ି ମନପ୍ରାଣ ପୁଲକିତ ହୋଇଉଠିଲା । ଏହି ରଚନାରାଜି ବହୁ ତଥ୍ୟରେ ପରିପୂର୍ଣ୍ଣ, ମଝିରେ ମଝିରେ କିଛି କିଛି ବିଶ୍ଳେଷଣ ବି ରହିଛି । ଏଗୁଡ଼ିକୁ 'ଚରିତ ପ୍ରବନ୍ଧ' ବୋଲାଯାଇପାରେ ।'

ଏଠି ଆଉ ଏକ ଘଟଣା ମୋର ମନକୁ ଆସୁଛି । ସାର୍‌ଙ୍କର ଅନୁରୋଧରେ ପ୍ରଖ୍ୟାତ ବୌଦ୍ଧ ମହାବିହାର ଲଳିତଗିରି ଠାରେ ଓଳାଶୁଣି ପାହାଡ଼ରେ ସନ୍ଥ ଅରକ୍ଷିତ ଦାସଙ୍କର ସମାଧି ପୀଠରେ- 'ଓଡ଼ିଆ ଗବେଷଣା ପରିଷଦ'ର ଏକ ଅଧିବେଶନ ମୁଁ ଆୟୋଜନ କରିଥିଲି । ବହୁ ବିଶିଷ୍ଟ ସାହିତ୍ୟିକ, କବି, ଲେଖକମାନେ ସାର୍‌ଙ୍କ

ନେତୃତ୍ୱରେ ସେଠାରେ ଯୋଗ ଦେଇଥିଲେ । ବିଭିନ୍ନ ବିଷୟରେ ଆଲୋଚନା ସହିତ ସନ୍ଥ ଅରକ୍ଷିତ ଦାସଙ୍କର ମହିମଣ୍ଡଳ ଗୀତା ସଂପର୍କରେ ମଧ୍ୟ ଆଲୋଚନା ହୋଇଥିଲା ।' ଗବେଷଣା ପରିଷଦର ବହୁ ସଦସ୍ୟ ସନ୍ଥ ଅରକ୍ଷିତ ଦାସଙ୍କ ସଂପର୍କରେ ବିଶେଷ କିଛି ଜାଣି ନଥିଲେ । ସାର୍ ମତେ ସାଧକ ସନ୍ଥ ଅରକ୍ଷିତ ଦାସଙ୍କ ସଂପର୍କରେ କିଛି କହିବା ପାଇଁ କହିବାରୁ- ମହିମଣ୍ଡଳ ଗୀତା ଓ ତାଙ୍କର ମାନବଧର୍ମ ସଂପର୍କରେ ମୁଁ ବକ୍ତବ୍ୟ ରଖିଥିଲି । ମୋର ବକ୍ତବ୍ୟ ଶୁଣିଲା ପରେ ବହୁ ସଦସ୍ୟ ଅନେକ ପ୍ରଶ୍ନ ଉଠାଇଥିଲେ । ସେଠାରେ ପୋଡ଼ପିଠା, ଶୁଖୁଆ ଏବଂ କାଞ୍ଜି ଭୋଗ ହୁଏ କିପରି ଓ କାହିଁକି ? ମୁଁ ଉତ୍ତରରେ କହିଥିଲି ଆମିଷ ଓ ନିରାମିଷ ଭିତରେ ସନ୍ଥ ସାଧକ ଅରକ୍ଷିତ ଦାସଙ୍କ ପାଖରେ କୌଣସି ଭେଦଭାବ ନ ଥିଲା । ତାଙ୍କର ମହିମଣ୍ଡଳ ଗୀତାରେ ସେ ଏ ସଂପର୍କରେ ସମସ୍ତ ବ୍ୟାଖ୍ୟା ପ୍ରଦାନ କରିଛନ୍ତି । ତା'ପରେ ଗବେଷଣା ପରିଷଦର ବିଜ୍ଞ ସଦସ୍ୟମାନେ ଓଳାଶୁଣି ପାହାଡ଼ ଏବଂ ଲଳିତଗିରି ମହାବିହାର ପରିଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ମୁଁ ସେହିଦିନ ଲକ୍ଷ୍ୟ କରିଥିଲି- ଆମ ରାଜ୍ୟର ସାହିତ୍ୟିକ ଓ ବୁଦ୍ଧିଜୀବୀ ଏବଂ ତରୁଣ ଗବେଷକ ଗୋଷ୍ଠୀଙ୍କର ସାର୍‌ଙ୍କ ପ୍ରତି କିପରି ଅପୂର୍ବ ଭକ୍ତି ଓ ଶ୍ରଦ୍ଧା ଭରି ରହିଥିଲା- ସାର୍ ମଧ୍ୟ ସମସ୍ତଙ୍କୁ ନିଜ ପରିବାରର ସଦସ୍ୟ ପରମଆତ୍ମୀୟ ବୋଲି ଗ୍ରହଣ କରିଥିଲେ । ବାସ୍ତବିକ ଏପରି ସାହିତ୍ୟ ସଂଗଠନର ନେତା ଏବଂ ଗୁରୁଙ୍କର ଗୁରୁ ପ୍ରଜ୍ଞାପିତ ଡ. କୃଷ୍ଣଚରଣ ବେହେରା ଭଳି ମନୀଷୀ ବିରଳ ।

ସେ ନିଜେ ଧ୍ୟାନମଗ୍ନ ଗବେଷକ ଭାବରେ ଗବେଷଣା କରି ସାହିତ୍ୟରେ ନୂତନ ତଥ୍ୟ ଆବିଷ୍କାର କରିଛନ୍ତି । ସେ ବହୁ ସାହିତ୍ୟିକ ଓ ଗବେଷକ ସୃଷ୍ଟି କରିଛନ୍ତି । ପ୍ରକୃତରେ ଶିକ୍ଷକତା ଓ ଅଧ୍ୟାପନା ତାଙ୍କ ଜୀବିକା ଥିଲା । କିନ୍ତୁ ସାହିତ୍ୟ ସାଧନା ଥିଲା ତାଙ୍କର ଜୀବନ । ସେ ଆଦୌ ପ୍ରଚାରଧର୍ମୀ ନ ଥିଲେ- ସେ ପ୍ରକୃତରେ ଜ୍ଞାନତପସ୍ୱୀ । ଧ୍ୟାନମଗ୍ନ ଜ୍ଞାନପିପାସୁ ଗବେଷକ, କାବ୍ୟିକପ୍ରାଣ ଡ. କୃଷ୍ଣଚରଣ ବେହେରା- ଏକ କ୍ରାନ୍ତିକାରୀ ସାରସ୍ୱତ ପୁରୁଷ । ସତରେ ସେ ମୃତ୍ୟୁଞ୍ଜୟୀ । କବିଙ୍କ ସ୍ୱରରେ କୁହାଯାଇପାରେ-

"ତୁମ୍ଭ ମାଟିଦେହ ଗ୍ରାସିଛି ଶ୍ମଶାନ,
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ ।"

ପ୍ରଥମ ବାର୍ଷିକୀ ଶ୍ରାଦ୍ଧ ଉତ୍ସବ ଅବସରରେ-ତାଙ୍କର ପବିତ୍ର ସ୍ମୃତିରେ ମୁଁ ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ❖

ପୂର୍ବତନ ମନ୍ତ୍ରୀ
ଧାରୋଶ୍ୟାମସୁନ୍ଦରପୁର, ଶୁକ୍ଳେଶ୍ୱର
ମାହାଙ୍ଗା, କଟକ, ଓଡ଼ିଶା

# କିଛି ସ୍ମୃତି କିଛି ଅନୁଭୂତି

ରାସବିହାରୀ ବେହେରା

ଡକ୍ଟର କୃଷ୍ଣଚରଣ ବେହେରା ଜଣେ କୃତ ସଂକଳ୍ପ ମଣିଷ । ଯାହା ସତ ମଣୁଥିଲେ ତାକୁ ସତ ରୂପରେ ପରିଣତ ମଧ୍ୟ କରୁଥିଲେ । ସେ ଜଣେ ପ୍ରଗତିଶୀଳ ସମାଲୋଚକ । ନବୀନ ଲେଖକ ଲେଖିକାଙ୍କୁ ସେ ଗଭୀର ଭାବରେ ବିଶ୍ଳେଷଣ କରି ଲେଖକକୁ ଆଗକୁ ବଢ଼ିବା ପାଇଁ ଉତ୍ସାହିତ କରୁଥିଲେ । ଲେଖକୀୟ ଚିନ୍ତା ଚେତନାକୁ ହୃଦୟଙ୍ଗମ କରି ଆବଶ୍ୟକ ସ୍ଥଳେ ଉଦାହରଣ ମାଧ୍ୟମରେ ବାଟକୁ ଆଣିବା ପାଇଁ ଉଦ୍ୟମ କରିଥାନ୍ତି । ତାଙ୍କ ମତରେ- ସେ ଲେଖି ଚାଲିଲେ ଆଜି ଯାହା ଆମ ଆଖିରେ ଭୁଲ୍ ରୂପେ ଦେଖା ଦେଇଛି- କାଲି ତାହା ସେ ଠିକ୍ ଭାବରେ କରିଦେଖାଇବ ।

ତାଙ୍କ ମତରେ ବଗିଚାର ମାଳି ଯେପରି ଗଛର ଅନାବନା ଡାଳକୁ କାଢ଼ି ଗଛକୁ ପରିପୁଷ୍ଟ ହୋଇ ବଢ଼ିବାରେ ସହାୟକ ହୋଇଥାଏ, ସମାଲୋଚକର ଧର୍ମ ମଧ୍ୟ ସେହିଭଳି ହେବା ଉଚିତ ।

ଆବଶ୍ୟକ ଡାଳ ଛିଣ୍ଡାଇବା ବଦଳରେ ଚେର ଛିଣ୍ଡାଇଲେ ଗଛ ନଷ୍ଟ ହୋଇଯିବ । ସମାଲୋଚକ ସତର୍କତା ସହିତ ନୂତନ ଲେଖକମାନଙ୍କ ଲେଖାକୁ ଠିକ୍ ଭାବରେ ତର୍ଜମା କରିବା ଉଚିତ ।

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଗୌରବଭରା ଘଟଣାକୁ ମୁଁ ଏଠି ପ୍ରକାଶ ନକରି ରହିପାରୁନାହିଁ ।

ଅନେକ ତରୁଣ ଲେଖକଙ୍କୁ ଡକ୍ଟର ବେହେରା ପ୍ରବୀଣ ହେବାରେ ସହାୟକ ହୋଇଛନ୍ତି । 'ଅନ୍ୟକୁ ପ୍ରେରଣା ଦେଉଥିବା ମଣିଷ ହିଁ ଜଣେ ଶ୍ରେଷ୍ଠ ମଣିଷ ।' ମୋତେ, ଜଣେ ସାହିତ୍ୟିକ ହିସାବରେ ଆଗକୁ ବଢ଼ିବାରେ ଅନେକ କ୍ଷେତ୍ରରେ ପରାମର୍ଶ ଦେଇଛନ୍ତି ।

ଓଡ଼ିଆ ଉପନ୍ୟାସ ଯଦିଓ ତାଙ୍କ ଗବେଷଣା ନିବନ୍ଧର ପରିସର ତେବେ ଏହି ସ୍ଥାନେ ଓଡ଼ିଆ ଉପନ୍ୟାସର ନୂତନ ଲେଖକମାନଙ୍କ ପ୍ରତି ତାଙ୍କର ଅଦୃଶ୍ୟ ଆଶୀର୍ବାଦ ଭରି ରହିଥାଏ ।

ଓଡ଼ିଆ ସମାଲୋଚନା ସାହିତ୍ୟର ଅଭାବ ମେଣ୍ଟାଇବା ପାଇଁ ତାଙ୍କର ପ୍ରଚେଷ୍ଟା ସାହିତ୍ୟମାନଙ୍କ ବିଷୟରେ ଗବେଷଣା କରି ସମୀକ୍ଷା ଲେଖିବା ତାଙ୍କ ଜୀବନର ଆଭିମୁଖ୍ୟ ।

ତେଣୁ ଆଜି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଡକ୍ଟର ବେହେରାଙ୍କ ଅବଦାନ ଅବିସ୍ମରଣୀୟ । ଜଣେ ନିରବ ସାଧକ ଭାବେ ନିଜର ଗବେଷଣାତ୍ମକ କାର୍ଯ୍ୟ କରି ଯାଇଛନ୍ତି । ଡକ୍ଟର ବେହେରାଙ୍କ ମତରେ ସମାଜ ପାଇଁ ସାହିତ୍ୟର ଆବଶ୍ୟକତା ରହିବ । ସାହିତ୍ୟର ପ୍ରତିଷ୍ଠା ଓ ବିକାଶ ଦିଗରେ ସାହିତ୍ୟିକ ସଂଗଠନର ମଧ ଆବଶ୍ୟକତା ରହିଛି ।

ସେ ସଦାବେଳେ ମତ ପୋଷଣ କରି ଆସିଛନ୍ତି, ସାହିତ୍ୟିକ ଆଲୋଚନା ସରଳ ଓ ସୁବୋଧ ହେବା ଆବଶ୍ୟକ କାରଣ ପାଠକ ନିକଟରେ ସାହିତ୍ୟ ସ୍ରଷ୍ଟାଙ୍କ ଚିନ୍ତାଧାରାକୁ ପୁଙ୍ଖାନୁପୁଙ୍ଖ ଆତ୍ମ ସମୀକ୍ଷାକରି ମତ ପ୍ରଦାନ କରିବା ସମାଲୋଚକର ସର୍ବପ୍ରଧାନ କର୍ତ୍ତବ୍ୟ । ତାହା ପାଠକ ପାଇଁ ବ୍ୟାପକ ଓ ଅଧିକ ପ୍ରଭାବଶାଳୀ ହୋଇପାରିବ ।

ଏହି ପୃଷ୍ଠଭୂମି ଉପରେ ମୁଁ ମୋର ପ୍ରଥମ ଉପନ୍ୟାସ 'ବିଜୟୀ'(୧୯୬୨) ସମ୍ବନ୍ଧରେ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ମତାମତ ଉପସ୍ଥାପନ କରୁଛି । ସେ ମତ ପୋଷଣ କରିଛନ୍ତି- ଏହି ଉପନ୍ୟାସର ବୈଶିଷ୍ଟ୍ୟ ଉପଲବ୍ଧି କରି ମୁଁ ପ୍ରଥମେ ୧୯୬୯ ମସିହାରେ କଟକ ପ୍ରଜାତନ୍ତ୍ର ପ୍ରଚାର ସମିତି ବିଷୁବ ମିଳନରେ ମୋର ଏକ ଲିଖିତ ଅଭିଭାଷଣରେ ଏଥିପ୍ରତି ସୁଧୀମଣ୍ଡଳଙ୍କ ଦୃଷ୍ଟି ଆକର୍ଷଣ କରିଥିଲି । ସେତେବେଳେ ମୁଁ କହିଥିଲି ସ୍ୱାଧୀନତାର ପରବର୍ତ୍ତୀ କାଳରେ ଆମର ଜାତୀୟଜୀବନ ନୂତନ ଭାବ ଦୀକ୍ଷା ଗ୍ରହଣ କରିଛି ଆମ ସମାଜ କ୍ଷେତ୍ରରେ କେତେକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ସାଧିତ ହୋଇଛି । ତନ୍ମଧ୍ୟରୁ ପ୍ରଥମ ଓ ପ୍ରଧାନ ହେଲା ଗଣତାନ୍ତ୍ରିକ ନୀତି ବା ଆଦର୍ଶ ପ୍ରବର୍ତ୍ତନ । ରାଜାମହାରାଜା-ସୁଲତାନ ଗଭର୍ଣ୍ଣର ଶାସିତ ଆମର ଜନଜୀବନ ସ୍ୱାଧୀକାର ଓ ସ୍ୱାଭିମାନରେ ସହସା ଯେପରି ସଚେତନ ହୋଇ ଉଠିଲା । ଦେଶ ମଧ୍ୟରେ ଏହାର ସୁଫଳ ତଥା କୁଫଳ ଉଭୟ ଦେଖା ଦେଇଛି । ଛାତ୍ର ସମାଜ ମଧ୍ୟରେ ଏହି ଗଣତାନ୍ତ୍ରିକ ପଦ୍ଧତି ସମୟ ସମୟରେ କିଭଳି ଭୁଲ ଭାବରେ ଗୃହୀତ ହୋଇଛି ତାହାର ଚିତ୍ର ରାସବିହାରୀଙ୍କ ବିଜୟୀ ଉପନ୍ୟାସରେ ପ୍ରତିଫଳିତ ହୋଇଛି । କେତୋଟି ସାହିତ୍ୟିକ ଅଭିଭାଷଣ-୨ୟ ସଂସ୍କରଣ- ୧୯୭୭ ଫ୍ରେଣ୍ଡସ ପବ୍ଲିଶର୍ସ କଟକ-୨ ପୃଷ୍ଠା ୬୬ । ପୁଣି ୧୯୮୧ ମସିହାରେ ଫୁଲବାଣୀରେ ଅନୁଷ୍ଠିତ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଏକ ସଂପାନରେ ଉପସ୍ଥାପିତ କରିଥିଲି । ରାଜନୈତିକ କଥା ସାହିତ୍ୟ ପ୍ରବନ୍ଧରେ ପ୍ରକାଶ ଦେଶର ନିର୍ବାଚନ - ସର୍ବସ୍ୱ ରାଜନୀତି ଘେନି ଆମର କେତେକ ଉତ୍କୃଷ୍ଟ କଥାସାହିତ୍ୟ ସୃଷ୍ଟି ହୋଇଛି । ଶ୍ରୀ ରାସ ବିହାରୀ ବେହେରାଙ୍କ ବିଜୟୀ ୧୯୬୨ ଉପନ୍ୟାସରେ ସେହି ନିର୍ବାଚନ-ରାଜନୀତି ପୁଣି ଛାତ୍ରସମାଜ ସଂପର୍କିତ । ସ୍ୱାଧୀନତା ଲାଭ ସଙ୍ଗେ ସଙ୍ଗେ ଆମର ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କର ଛାତ୍ର ରାଜନୀତିର ସ୍ୱରୂପ ପ୍ରକୃତି ସଂପର୍କରେ ଏକ ଚମତ୍କାର ଚିତ୍ର

ରାସବିହାରୀ ପରିବେଷଣ କରିଛନ୍ତି । (ସଂପାନ ସନ୍ଦର୍ଭ, ଉତ୍କଳିକା ବାଙ୍କା ବଜାର ୨- ୧୯୮୧(ପୃଷ୍ଠା ୭୩)

ଏବେ ଯେଉଁ ଛାତ୍ର ରାଜନୀତି ଓ ଛାତ୍ର ଅଶାନ୍ତି ବିଷୟ ଚାରିଆଡ଼େ ଶୁଣାଯାଉଛି ପ୍ରାୟ ୪୫ ବର୍ଷ ତଳେ ସେହି ବିଷୟ ଘେନି ଲେଖାଯାଇଥିବାରୁ 'ବିଜୟୀ'ର ବୈଶିଷ୍ଟ୍ୟ ଆମ ଇତିହାସ ସାହିତ୍ୟରେ ଅନସ୍ୱୀକାର୍ଯ୍ୟ । 'ବିଜୟୀ' ରାଜନୈତିକ ଉପନ୍ୟାସ ଏବଂ ରାଜ୍ୟର ବିଦ୍ୟମାନ ଥିବା ଏକ ନିର୍ଦ୍ଦିଷ୍ଟ ଶିକ୍ଷାୟତନକୁ ଘେନି ରଚିତ ହୋଇଥିବାରୁ ଏହାକୁ 'ଅକଳ୍ପନାମୂଳକ ଉପନ୍ୟାସ' (Nonfiction Novel) ମଧ୍ୟ ବୋଲାଯାଇପାରେ ।

ଉପନ୍ୟାସରେ ରାସବିହାରୀ ୪୫ବର୍ଷ ତଳେ ଶୋଚନୀୟ ପରିସ୍ଥିତି ପ୍ରତ୍ୟକ୍ଷ କରି ଉପନ୍ୟାସ ମାଧ୍ୟମରେ ତାହାର ସୂଚନା ଦେଇଥିଲେ । ଉପନ୍ୟାସରେ ରମେଶ ଚରିତ୍ର ତୁଣ୍ଡରେ ସେ ଯଥାର୍ଥରେ କୁହାଇଛନ୍ତି-

'ଆମ୍ଭେ ଆଜି ନିଜକୁ ଶିକ୍ଷିତ ବୋଲି ଗର୍ବ କରିବାରେ କୌଣସି କାରଣ ନାହିଁ । ଆଜି ଦେଶର ସେହି ଶିକ୍ଷିତ ଗୋଷ୍ଠୀ ଦେଶର କଳଙ୍କ ରୂପେ ଛିଡ଼ା ହୋଇ ଏକ ନୂତନ ସମସ୍ୟା ସୃଷ୍ଟି କରିଚାଲିଛନ୍ତି । (ପୃଷ୍ଠା.୪୯)

'ଶିକ୍ଷାର ଏ ନଗ୍ନରୂପ' ଉପନ୍ୟାସ ମାଧ୍ୟମରେ ପ୍ରଦର୍ଶନ କରିଥିବା ବିଷୟ ରାସବିହାରୀ 'ନିଜକଥା'ରେ ସୂଚାଇଛନ୍ତି । କଲେଜରେ ବିଶୃଙ୍ଖଳା ଦେଖି ତାଙ୍କର ସମ୍ବେଦନଶୀଳ ମନ, ତିକ୍ତ ଓ ବିଦ୍ରୋହୀ ହୋଇଉଠିଛି । ନିଜ କଲେଜ ଜୀବନର କେତୋଟି ବାସ୍ତବ ଘଟଣାକୁ ରୂପାୟିତ କରି ଉପନ୍ୟାସ ରଚିଥିବାର ସେ ଉଲ୍ଲେଖ କରିଛନ୍ତି । ଜଣେ ଶିକ୍ଷାର୍ଥୀଙ୍କର ପ୍ରତ୍ୟକ୍ଷ ଅନୁଭୂତି ଓ ଅଭିଜ୍ଞତାରୁ ଛାଣି ହୋଇ ଆସିଥିବା ଘଟଣାଗୁଡ଼ିକ ତେଣୁ ଆକର୍ଷଣୀୟ ହୋଇଉଠିଛି ।

ଘଟଣାଗୁଡ଼ିକର ନିନ୍ଦନୀୟ ଚିତ୍ର ଦେଇ ବା ସମସ୍ୟାଟି କେବଳ ଉପସ୍ଥାପନ କରି ରାସବିହାରୀ ନିରବ ରହି ନାହାନ୍ତି, ତାହାର ପରିବର୍ତ୍ତନ ବା ସମାଧାନର ଇଙ୍ଗିତ ମଧ୍ୟ ଉପନ୍ୟାସରେ ପ୍ରଦାନ କରିଛନ୍ତି ।

ଉପନ୍ୟାସଟିର କଳାପକ୍ଷ ଅବହେଳିତ ହୋଇନାହିଁ ।... ଉପନ୍ୟାସର ବିଭିନ୍ନ ସ୍ଥାନରେ ଶିକ୍ଷା-ସୁଲଭ ଭଙ୍ଗୀରେ ଘଟଣା ବିନ୍ୟାସ କରିଛନ୍ତି- ନାନା ବିଷୟର କଳାତ୍ମକ ବର୍ଣ୍ଣନା କରିଛନ୍ତି...

କଥାବସ୍ତୁର ଅଭିନବତ୍ୱରେ, ବକ୍ତବ୍ୟର ଉପାଦେୟତାରେ, ଶୈଳୀର କଳାତ୍ମକତାରେ 'ବିଜୟୀ' ଆମ ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ ଉପନ୍ୟାସ ।

ମାତ୍ର ରାସବିହାରୀ ନିଜର ସାହିତ୍ୟ ସାଧନ ନିରବଚ୍ଛିନ୍ନ ଭାବରେ ଚଳାଇ ରଖିଲେ ହେଲା । ତାହା କାହିଁ ମୋର ମନେ ହେଉନାହିଁ ? ଏବେ ବୋଧହୁଏ ରାଜନୀତି ଓ ସମାଜସେବା ରାସବିହାରୀଙ୍କର ପ୍ରାୟ ସମସ୍ତ ଶକ୍ତି ଓ ସମୟକୁ କୁକ୍ଷିଗତ କରିନେଇଛି ।

ସେଥିପାଇଁ ତାଙ୍କଠାରୁ ଆମେ ଆଉ ଏଣିକି ଅଧିକ ଲେଖା ପାଇପାରୁନାହୁଁ । ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ସୁରେନ୍ଦ୍ର ମହାନ୍ତି ପ୍ରମୁଖଙ୍କ କ୍ଷେତ୍ରରେ ଯଦି ରାଜନୀତି-ସମାଜସେବା ଓ ସାହିତ୍ୟ ସାଧନା ମଧ୍ୟରେ ସମବାୟ ତଥା ସହାବସ୍ଥାନ ସମ୍ଭବ ହୋଇପାରିଲା, ରାସବିହାରୀଙ୍କ କ୍ଷେତ୍ରରେ ତାହା ନହେବ କାହିଁକି ? ତଥାସ୍ତୁ-ତଥାସ୍ତୁ ।

ଡକ୍ଟର କୃଷ୍ଣଚରଣ ବେହେରା 'ବିଜୟୀ' ଉପନ୍ୟାସ ଉପରେ ବିଭିନ୍ନ ସାହିତ୍ୟ ସଭାରେ ଏବଂ ବିଭିନ୍ନ ଲେଖା ମାଧ୍ୟମରେ ଶ୍ରୋତାମଣ୍ଡଳୀ ଏବଂ ପାଠକ ପାଠିକାଙ୍କ ଦୃଷ୍ଟି ଆକର୍ଷଣ କରି ମତାମତ ପ୍ରଦାନ କରି ପାଠକ ପାଠିକାଙ୍କ ମନରେ ଆକର୍ଷଣ ସୃଷ୍ଟି କରିପାରିଛନ୍ତି । ଲେଖକର ଲେଖାର ଉପଯୁକ୍ତ ସମାଲୋଚନା ହେବା ଉଚିତ । ତାହା ଲେଖକକୁ ପ୍ରେରଣା ଯୋଗାଇ ଥାଏ । ଏ ଦିଗରେ ମୁଁ ତାଙ୍କଠୁ ବିଶେଷ ପ୍ରେରଣା ପାଇଛି, ଯାହା ମୋର ସାହିତ୍ୟ ଜୀବନକୁ ଆହୁରି ଚଳଚଞ୍ଚଳ କରିବାରେ ସହାୟକ ହେବା ସଂଗେ ସଂଗେ ନୂତନ ଉପନ୍ୟାସ ଲେଖିବା ପାଇଁ ମନରେ ଆତ୍ମବିଶ୍ୱାସ ଭରି ଦେଇଛି ।

ବିଜୟୀ ଉପନ୍ୟାସର ହିନ୍ଦୀ ଅନୁବାଦ ମଧ୍ୟ ଅଧ୍ୟାପକ ଶଙ୍କରଲାଲ ପୁରୋହିତ କରି ଦିଲ୍ଲୀର ସୁନାମଧନ୍ୟ ବାଣୀପ୍ରକାଶନୀ, ଦରିଆଗଂଜ ମୁଦ୍ରଣ କରି ସମଗ୍ର ଦେଶର ପାଠକ ପାଠିକାଙ୍କ ପାଖରେ ପହଞ୍ଚାଇ ଉପନ୍ୟାସର ମହତ୍ତ୍ୱ ବୃଦ୍ଧି କରିବାରେ ସକ୍ଷମ ହୋଇଛନ୍ତି ।

ବିଜୟୀ ଉପନ୍ୟାସର ବ୍ୟାପକ ଆଲୋଚନା ଏବଂ ବିଭିନ୍ନ ପତ୍ରପତ୍ରିକାରେ ବହୁ ଲେଖା ପ୍ରକାଶ ପାଇ ପାଠକଙ୍କ ଦ୍ୱାରା ଆଦୃତ ହେବା ଫଳରେ ମୋ ମନରେ ଗଭୀର ଆତ୍ମବିଶ୍ୱାସ ସୃଷ୍ଟି ହୋଇଛି । ଏତେସତ୍ତ୍ୱେ, ମୁଁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ସହିତ ବ୍ୟକ୍ତିଗତ ଭାବେ ସାକ୍ଷାତ ପାଇବାର ସୁଯୋଗ ପାଇନଥିଲି । ମୋ ମନରେ ମଧ୍ୟ ଉତ୍କଣ୍ଠା ବଢ଼ି ଚାଲିଥାଏ, ଥରେ ତାଙ୍କୁ ଭେଟିବା ପାଇଁ, ଦିନେ ମୁଁ ହଠାତ୍ ତାଙ୍କ କଟକ ବାସଭବନରେ ଯାଇ ପହଞ୍ଚିଗଲି । ଦାଣ୍ଡଫାଟକ ବନ୍ଦ ଥାଏ । ଦାଣ୍ଡରେ ଛିଡ଼ା ହୋଇ କଲିଂ ବେଲ ବଜାଇଲି । କବାଟ ଖୋଲି ଡକ୍ଟର ବେହେରା ପ୍ରଶ୍ନ କଲେ, କାହାକୁ ଖୋଜୁଛନ୍ତି ? ମୁହଁରେ ହସ ଖେଳାଇ ଉତ୍ତର ଦେଲି, ଡକ୍ଟର କୃଷ୍ଣଚରଣ ବେହେରାଙ୍କୁ ସାକ୍ଷାତ୍ କରିବା ପାଇଁ ଆସିଛି । ମୋର ନମସ୍କାର ଜଣାଇଲି ।

ମୁଁ ହିଁ କୃଷ୍ଣଚରଣ ବେହେରା, ଘର ଭିତରକୁ ଆସନ୍ତୁ । ପାଖରେ ପଡ଼ିଥିବା ଚୌକି ଆଡ଼କୁ ହାତ ବଢ଼ାଇ ବସିବା ପାଇଁ କହିଲେ ।...ମୁଁ ତ ଆପଣଙ୍କୁ ଚିହ୍ନି ନାହିଁ-ଆଶ୍ଚର୍ଯ୍ୟରେ ମୋ ମୁହଁକୁ ଚାହିଁଲେ । ମୁଁ କହିଲି, ମୁଁ ରାସବିହାରୀ ବେହେରା ।

ମୋ ନାଁ ଶୁଣି ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲେ, ରାସବିହାରୀ ବେହେରା ଜଣେ ମନ୍ତ୍ରୀ, ହୋଇଥିଲେ ଆପଣ ନିଶ୍ଚେ ମୋଟା, ତାଗଡ଼ା ହୋଇଥାନ୍ତେ, ତେଣୁ ମନ୍ତ୍ରୀ ବୋଧହୁଏ ହୋଇନ ଥିବେ ? ତାଙ୍କ ମନର ସନ୍ଦେହ ଭାବନାକୁ ଦୂର କରିବା ପାଇଁ ମୁଁ କହିଲି, ମୁଁ

'ବିଜୟୀ' ଉପନ୍ୟାସର ଲେଖକ ରାସବିହାରୀ ବେହେରା ? ସେ ମୋଠୁ ଏତକ ଶୁଣି ଆଶ୍ଚର୍ଯ୍ୟ ହୋଇ ମୁହଁରେ ହସ ଖେଳାଇ ମୋତେ କୁଣ୍ଢାଇ କହିଲେ ତମେ 'ବିଜୟୀ' ଉପନ୍ୟାସର ଲେଖକ ରାସବିହାରୀ ବେହେରା ? ଅନେକ ଦିନ ପରେ ଆଜି ତୁମ ସହିତ ଭେଟ ହେଲା । ସେ ଦିନର ମୋର ପ୍ରଥମ ସାକ୍ଷାତ ଆଜି ମୋ ମନରେ ପୁଲକ ସୃଷ୍ଟି କରୁଛି । ସେ ଆଜି ଆମ ଗହଣରେ ନଥିଲେ ମଧ୍ୟ ସେହି ସ୍ମୃତି ଟିକକ ଆଜି ମଧ୍ୟ ମୋ ମନ ହୃଦୟରେ ଜୀବନ୍ତ ହୋଇ ରହିଛି ।

ଏହାପରେ ଆମର ବନ୍ଧୁତା ଘନିଷ୍ଠ ହେବାରେ ଲାଗିଥାଏ । ମୋ ଅନୁରୋଧରେ 'ଅର୍ଚ୍ଚି' ସାପ୍ତାହିକ ପତ୍ରିକାର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଏକ ସାରଗର୍ଭକ ଭାଷଣ ଦେଇ ଉପସ୍ଥିତ ଶ୍ରୋତାମଣ୍ଡଳୀଙ୍କ ମନରେ ଅପାର ଆନନ୍ଦ ସଂଚାର କରିଥିଲେ ।

କଳାହାଣ୍ଡି ଜିଲ୍ଲା, ମଦନପୁର ରାମପୁର ବ୍ଲକ୍‌ର ରିଷିଡ଼ା ଗ୍ରାମର ହାଇସ୍କୁଲ ପ୍ରାଙ୍ଗଣରେ ମୋ ଦ୍ୱାରା ସମ୍ପାଦିତ 'ଅର୍ଚ୍ଚି' ସାପ୍ତାହିକ ପତ୍ରିକା ବାର୍ଷିକ ଉତ୍ସବରେ ଯୋଗ ଦେଇ, ଡକ୍ଟର କୃଷ୍ଣଚରଣ ବେହେରା ତାଙ୍କ ଅଭିଭାଷଣ ପ୍ରଦାନ କରିଥିଲେ । ସାହିତ୍ୟ ସଭାରେ ହଜାରେରୁ ମଧ୍ୟ ଊର୍ଦ୍ଧ୍ୱ ଲୋକଙ୍କ ସମାଗମ ଦେଖି ସେ ଉତ୍ସାହିତ ହୋଇ ସରଳ ଭାଷାରେ ସାମ୍ବାଦିକତା ସମ୍ବନ୍ଧରେ ଚମ୍ବକ ମତ ପ୍ରଦାନ କଲେ । 'ଅର୍ଚ୍ଚି' ସାପ୍ତାହିକ ପତ୍ରିକା ହେଲେ ମଧ୍ୟ ଏହାର ବହୁଳ ପ୍ରସାର ଏବଂ ଲେଖାର ପ୍ରଭାବ ଲୋକଙ୍କ ଉପରେ ପଡ଼ିଥାଏ । ସମ୍ବାଦର ପ୍ରଭାବ ସଦାବେଳେ ରହିଛି । ସତ୍ୟପ୍ରକାଶ କରିବା ସାମ୍ବାଦିକର ଧର୍ମ । ସତ୍ୟ ସମ୍ବାଦ ପରିବେଷଣ ହେଲେ ତାହା ସଭିଙ୍କ ଗ୍ରହଣୀୟ ହୋଇଥାଏ । ସତ୍ୟ ଅନୁସନ୍ଧାନ କରୁଥିବା ସାମ୍ବାଦିକ ମନରେ ମଧ୍ୟ ସନ୍ତୋଷ ମିଳିଥାଏ । ସତ୍ୟ ପ୍ରକାଶ ପାଇଲେ କିଛି ଲୋକ ଆଘାତପ୍ରାପ୍ତ ହୋଇଥାନ୍ତି । ତଥାପି ସତ୍ୟ ପ୍ରକାଶ ହେବା ଉଚିତ୍ । ଏହିଭଳି ତାଙ୍କ ଅଭିଭାଷଣ ଦେଇ ଉପସ୍ଥିତ ଲୋକଙ୍କ ମନରେ ଆନନ୍ଦ ସଂଚାର କରିଥିଲେ ।

ଗ୍ରାମାଞ୍ଚଳର ଲୋକଙ୍କ ମନରେ ମଧ୍ୟ କଟକରୁ ଜଣେ ଅଧ୍ୟାପକ, ଗବେଷକ ଆସିଥିବା ଯୋଗୁଁ ଗ୍ରାମବାସୀଙ୍କ ମନରେ ଉତ୍କଣ୍ଠା ଭରି ରହିଥାଏ । ଛାତ୍ରଛାତ୍ରୀ ତଥା ବହୁ ଅଭିଭାବକ, ଶିକ୍ଷକ, ଅଧ୍ୟାପକ ମଧ୍ୟ ବିଭିନ୍ନ ସ୍ଥାନରୁ ଆସି ଯୋଗଦେଇ, ଅଧ୍ୟାପକ କୃଷ୍ଣଚରଣ ବେହେରାଙ୍କ ସହିତ ଆଲୋଚନା କରିବାର ସୁଯୋଗ ମଧ୍ୟ ପାଇପାରିଥିଲେ । ବିଭିନ୍ନ ପ୍ରତିଯୋଗିତାରେ ଅଂଶଗ୍ରହଣ କରିଥିବା ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

ଡକ୍ଟର କୃଷ୍ଣଚରଣ ବେହେରା ମୋ ଘରେ ରହି, ମୋର ସଂଗୃହୀତ ପୁସ୍ତକ ସବୁ ଦେଖି, 'ଅର୍ଚ୍ଚି' ପତ୍ରିକାର ପ୍ରତିବର୍ଷର ପ୍ରକାଶିତ ପତ୍ରିକାକୁ ସୁନ୍ଦର ଭାବରେ ବନ୍ଧାଇ ବାରବର୍ଷର 'ଅର୍ଚ୍ଚି'ରୁ ଅନେକ ଉପାଦେୟ ସଂପାଦକୀୟ ପଢ଼ି, ମୋତେ ପରାମର୍ଶ

ଦେଲେ । ଏଥିରେ ପ୍ରକାଶିତ କେତୋଟି ସଂପାଦକୀୟକୁ ଏକାଠି କରି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ । ମୁଁ ଏ ଦିଗରେ ଉଦ୍ୟମ ଆରମ୍ଭ କରିଛି ।

ସକାଳ ସାତଟାରେ ଆମେ ଚୌକିରେ ବସି ଅନେକ ଆଲୋଚନା କରୁଥିବା ସମୟରେ ଡକ୍ଟର ବେହେରା ମୋତେ କହିଲେ, ରାସବିହାରୀ ମୁଁ ସେଇ ପାହାଡ଼ ତଳକୁ ଯିବାକୁ ଚାହୁଁଛି । ଥରେ ସେଇ ପାହାଡ଼ ତଳ ଦେଖି ଆସିବାକୁ ମନ ହେଉଛି ।

ଡକ୍ଟର ବେହେରାଙ୍କ ପ୍ରଶ୍ନ ଶୁଣି ମୋ ମନରେ ହସ ଚହଟି ଆସିଲା । 'ସେଇ ପାହାଡ଼ ତଳ' ହେଉଛି ମୋର ଏକ ଉପନ୍ୟାସ । କିଶୋର ଜୀବନର ଦୁଇ ବାଳକ ବାଳିକା ମଧ୍ୟରେ ଅଙ୍କୁରିତ ପ୍ରେମ, ପରବର୍ତ୍ତୀ ଜୀବନରେ ଦୁଇ ସଂପ୍ରଦାୟକୁ ବିବାହ ସ୍ୱୀକୃତି ଦେଇନାହିଁ । ସାମାଜିକ ଚାଲିଚଳଣୀକୁ ମଧ୍ୟ ଗ୍ରାମ୍ୟ ଜୀବନରେ ଆଡ଼େଇ ଦେଇ ଆଗେଇ ଯିବା ଏତେ ସହଜ ନୁହେଁ । ସେହି ଆଧାରରେ ଉପନ୍ୟାସ ରଚିତ । ପଲ୍ଲୀ ଅଂଚଳର ସରଳତା ଭିତରୁ ସାଂସ୍କୃତିକ ଆତ୍ମାକୁ ଉଦ୍‌ଘାଟିତ କରାଯାଇ ଏହି ଉପନ୍ୟାସ ସୃଷ୍ଟି ହୋଇଛି ।

ଏହି ଉପନ୍ୟାସର ବିଶେଷତ୍ୱ ହେଲା ପ୍ରାକୃତିକ ବର୍ଣ୍ଣନା । ଡକ୍ଟର ବେହେରାଙ୍କୁ ସେହି ପ୍ରାକୃତିକ ବର୍ଣ୍ଣନା ଲେଖକ କେଉଁ ପରିସ୍ଥିତିରେ ଲେଖିଛନ୍ତି, ତାହା ଜାଣିବା ପାଇଁ ତାଙ୍କର ଆଗ୍ରହ ମୋ ମନରେ ଆନନ୍ଦ ସଂଚାର କଲା ।

ଆମର ଜଳଯୋଗ ପରେ ଗୋଟିଏ କାର୍‌ରେ ବସି ସହରଠୁ ପ୍ରାୟ ୨୦କି.ମି. ଦୂରରେ ମୋର ଚାଷଗ୍ରାମ 'କନ୍ଧ ବ୍ରାହ୍ମଣୀଗୁଡ଼ା' ଗ୍ରାମକୁ ଯାଇ ମୋର ଘରର ଗୋଟିଏ ପୁରାତନ ଚୌକିରେ ବସିବା ପାଇଁ କହି ଦୂରରେ ଥିବା ପାହାଡ଼ 'ପରିଆଡ଼ଙ୍ଗର'କୁ ହାତ ଠାରି ଦେଖାଇଲି ।

ସେ କିଛିକ୍ଷଣ ଅନାଇ ନେଇ ମୁହଁରେ ହସ ଖେଳାଇ ପୁଣି କହିଲେ, ମୁଁ ସେଇ ପାହାଡ଼ ତଳକୁ ଯିବାକୁ ଚାହେଁ ।

ତାଙ୍କ ମନ କଥା ମୁଁ ବୁଝି, ତାଙ୍କୁ ସାଙ୍ଗରେ ନେଇ କିଛି ଦୂର ଚାଲିଗଲୁ । ପାହାଡ଼ ତଳେ ଥିବା ବିରାଟ ବନ୍ଧରେ ଜଳ ଗଛିତ ହୋଇ ରହିଛି । ତା' ଅନତି ଦୂରରେ ପୁଅ, ଝିଅମାନେ ଛେଳି, ଗାଈ ଚରାଇବା ଦୃଶ୍ୟ । ନିଜ ନିଜ ଭିତରେ ଧାଁ ଦୌଡ଼, ନିଜ ନିଜ ଭିତରେ ବାଡ଼ିଆ ପିଟା, ଥଟ୍ଟା ତାମସା ଦେଖି, ଯାହା ମୋ ପୁସ୍ତକରେ ବର୍ଣ୍ଣିତ ହୋଇଛି ତାହା ସ୍ୱଚକ୍ଷୁରେ ଦେଖିଲେ । ପୁସ୍ତକରେ ବର୍ଣ୍ଣିତ 'ଶିବସାଗର' ବର୍ଣ୍ଣନା ସହ ପରିଆଡ଼ଙ୍ଗର ତଳେ ଗାଈ, ଛେଳି ଚରାଉଥିବା ଦୁଇ ତରୁଣ ତରୁଣୀଙ୍କ ପ୍ରେମର କାହାଣୀ ସବୁ କାହାଣୀ ସବୁ ଗୋଟି ଗୋଟି ତାଙ୍କ ମାନସ ପଟରେ ଝଲସି ଉଠିଲା ।

ବାସ୍ତବ ଦୃଶ୍ୟପଟକୁ ଭାଷାରେ ରୂପ ଦେଇ ଯେଉଁ ବର୍ଣ୍ଣନା ହୋଇଛି, ତା' ପାଠକ ହୃଦୟକୁ ସହଜରେ ସ୍ପର୍ଶ କରିଥାଏ, ଏହା ସେ ଉପଲବ୍ଧି କରି, ମୋ ମୁହଁକୁ ଚାହିଁ

କହିଲେ, ରାସବିହାରୀ ଉପନ୍ୟାସରେ ବର୍ଣ୍ଣିତ ଦୃଶ୍ୟ, ମୁଁ ସ୍ୱଚକ୍ଷୁରେ ଦେଖି ବହୁତ ଆନନ୍ଦିତ । ଜଣେ ସମୀକ୍ଷକ, ଜଣେ ଗବେଷକ, ଲେଖକର ମନର ଭାବକୁ ସ୍ପଷ୍ଟ ଜାଣିବା ପାଇଁ ପରିବେଶ କିପରି ତାକୁ ପ୍ରଭାବିତ କରିଥାଏ, ତାହା ସେ ଉପଲବ୍ଧି କରି ମୋତେ ଉତ୍ସାହିତ କରିଥିଲେ ।

ଗ୍ରାମବାସୀଙ୍କ ସହିତ ମିଶି, ସେମାନଙ୍କ ସହିତ କଥା ହୋଇ ସେ ଅପାର ତୃପ୍ତି ପାଇଥିଲେ ।

କଳାହାଣ୍ଡି ଜିଲ୍ଲାର ଏକ ନିପଟ ମଫସଲ ଗ୍ରାମର ବିଶେଷତଃ କୃଷକ, ଶ୍ରମିକ ଶ୍ରେଣୀର ଲୋକଙ୍କ ସହିତ ଆଳାପ ଆଲୋଚନା କରି ମନରେ ଆନନ୍ଦ ପାଇଥିଲେ ।

ଗ୍ରାମବାସୀମାନେ ମଧ୍ୟ ମୋ ଲେଖାର ପ୍ରଭାବ ବଳରେ କଟକ ଅଂଚଳରୁ ଜଣେ ବିଶିଷ୍ଟ ଗବେଷକ, ସାହିତ୍ୟିକ, ସମୀକ୍ଷକଙ୍କ ତାଙ୍କ ଗ୍ରାମକୁ ଅଚାନକ ଆଗମନ ଜାଣି ସେମାନେ ମଧ୍ୟ କୌତୂହଳ ହୋଇ ବହୁ ସଂଖ୍ୟାରେ ଆସି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ।

ବାସ୍ତବରେ ଡକ୍ଟର ବେହେରା ଜଣେ ବିରଳ ବ୍ୟକ୍ତିତ୍ୱ । ମୋ ପାଇଁ ସେ ଜଣେ ଆଦର୍ଶ ଶିକ୍ଷକ, ଅନ୍ୟକୁ ପ୍ରେରଣା ଦେବାରେ ଜଣେ ସଫଳ ମଣିଷ । ଜଣେ ସରଳ ଆମାୟିକ ମଣିଷ ।

ଗାଁ ମଫସଲରେ ଭରି ରହିଥିବା ଅନ୍ଧବିଶ୍ୱାସ, କୁସଂସ୍କାର ପ୍ରଭୃତି ପ୍ରତି ବିରୋଧୀ ମନୋଭାବ ସ୍ପଷ୍ଟ ବାରି ହୋଇଯାଏ ।

ମୋ ଗାଁ କନ୍ଧ ବ୍ରାହ୍ମଣୀଗୁଡ଼ା ଗ୍ରାମବାସୀଙ୍କ ମନରୁ ଅନ୍ଧବିଶ୍ୱାସ ଦୂର କରିବା ପାଇଁ ଅନେକ ପରାମର୍ଶ ଦେଇଥିଲେ । ସେହି କଥା ଆଜି ପର୍ଯ୍ୟନ୍ତ ମୋ ଗ୍ରାମବାସୀ ମନେ ପକାଇ ତାଙ୍କୁ ଏବେ ମଧ୍ୟ ସ୍ମରଣ କରିଥାନ୍ତି ।

ମୋ ପାଇଁ ତ ସେ ଜଣେ ପ୍ରେରଣାଦାୟୀ ବ୍ୟକ୍ତି, ସେହିଭଳି ସମାଜର ଅନ୍ୟମାନଙ୍କ ପାଇଁ ମଧ୍ୟ ପ୍ରେରଣାଦାୟୀ ବ୍ୟକ୍ତି ଥିଲେ ଡକ୍ଟର କୃଷ୍ଣଚରଣ ବେହେରା ।

ଅତୀତର ବହୁ ସ୍ମୃତି, ଅନୁଭୂତି ମଧ୍ୟରୁ ପାଠକ ପାଠିକାଙ୍କ ଅବଗତି ନିମନ୍ତେ କିଛି ଉପସ୍ଥାପନ କରିଛି । ପ୍ରକୃତରେ ଅତୀତର ଘଟଣା ଯାହା ମନରେ ବସାବାନ୍ଧି ରହିଯାଇଥାଏ ତାକୁ ଭୁଲିହୁଏନା ।

ତେଣୁ ପରା କୁହାଯାଇଛି-

'ସ୍ମୃତି ତ କେବେ ନୁହେଁ ଭୁଲିବାର, ଭୁଲି ପାରିଲେ ସେ ମିଳନ୍ତା ନିସ୍ତାର ।'

ତେଣୁ ମୁଁ ମୋର ଅତୀତର ଅନେକ କଥାକୁ ମନେ ରଖି ସେଥିରୁ ଅନେକ କଥା ଶିଖି କାର୍ଯ୍ୟ କରିଥିବା ଯୋଗୁଁ ମୁଁ ଉପକୃତ ହୋଇଛି । ❖

ମହାବୀରପଡ଼ା, ଭବାନୀପାଟଣା, କଳାହାଣ୍ଡି
ମୋ-୯୪୩୭୪୪୬୫୧୧

# ସାର୍ଥକ ସାରସ୍ୱତ ସାଧକ

ଡକ୍ଟର ବିମଳେନ୍ଦୁ ମହାନ୍ତି

ଚାହୁଁ ଚାହୁଁ ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ଦେହାନ୍ତର ଏକବର୍ଷ ପୂରିଗଲା । ପ୍ରଫେସର କୃଷ୍ଣଚରଣ ବେହେରାଙ୍କୁ ମୁଁ ପ୍ରାୟ ୫୦ବର୍ଷ ପୂର୍ବରୁ ଜଣେ ବିଶିଷ୍ଟ ଓଡ଼ିଆ ଅଧ୍ୟାପକ ଭାବେ ଜାଣିଥିଲି । ମୋର ଅନ୍ତରଙ୍ଗ ବନ୍ଧୁ ସ୍ୱର୍ଗତ ରମାପଦ ଚିନ୍ତକଙ୍କର ବଡ଼ଝିଅ ରାଜଶ୍ରୀ ସହିତ ତାଙ୍କର ଦ୍ୱିତୀୟ ପୁତ୍ର ଇଣ୍ଡିଆନ 'ରେଳ୍ ସର୍ଭିସରେ କାର୍ଯ୍ୟ କରୁଥିବା ଶୁଭକାନ୍ତଙ୍କ ସହ ୧୯୮୯ ମସିହାରେ ବିବାହ ସମ୍ପନ୍ନ ହେବା ପରେ ତାଙ୍କ ପରିବାର ସହିତ ଆମର ସମ୍ପର୍କ ନିବିଡ଼ ହୋଇଥିଲା । ଉଭୟ ପରସ୍ପରକୁ ସମ୍ବୁଦୀ ବୋଲି ସମ୍ବୋଧନ କରୁ । ବହୁ ସମୟରେ କଟକ ଗଲେ ତାଙ୍କ ଘରକୁ ଯିବା ଏକ ଅଭ୍ୟାସରେ ପରିଣତ ହୋଇଯାଇଥିଲା । ଯେକୌଣସି ବ୍ୟକ୍ତିଙ୍କୁ ତାଙ୍କ ବିଷୟରେ ପଚାରିଲେ ସମସ୍ତେ ସେ ଜଣେ ନିର୍ବିବାଦୀୟ ବ୍ୟକ୍ତିତ୍ୱର ଅଧିକାରୀ ଓ ଛାତ୍ରବତ୍ସଳ ଅ୍ଧାପକ ଭାବରେ ନିଜର ସୁଖ୍ୟାତିକୁ ସୁଦୃଢ଼ କରିପାରିଛନ୍ତି ବୋଲି କହିଥାନ୍ତି । ତାଙ୍କ ଘରକୁ ଗଲେ ସେ ନିଜ ରଚିତ ବିଭିନ୍ନ ପୁସ୍ତକ ମୋତେ ଉପହାର ଦିଅନ୍ତି । ସେସବୁକୁ ମୁଁ ପଢ଼ିଥାଏ । ଆମେ ଓଡ଼ିଆ ସାହିତ୍ୟ ସମ୍ବନ୍ଧରେ ଆଲୋଚନା କରିଥାଉ । ଶାନ୍ତିନିକେତନରେ ଥିଲାବେଳେ ଓଡ଼ିଆ ବ୍ୟତୀତ ଇଂରାଜୀ, ହିନ୍ଦୀ ଓ ବଙ୍ଗଳା ସାହିତ୍ୟର ବହୁ ଉପାଦେୟ ପୁସ୍ତକ ଅ୍ଧୟନ କରିବାକୁ ସେ ସକ୍ଷମ ହୋଇଥିବା କଥା ବର୍ଣ୍ଣନା କରିଥାନ୍ତି । ସେ ଜଣେ ବହୁପାଠୀ ଓ ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତି ଏହା ମୁଁ ଧୀରେ ଧୀରେ ଅନୁଭବ କରିଥିଲି । ତାଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ ପରଠାରୁ ଓଡ଼ିଆ ସାହିତ୍ୟ କିଭଳି ସମୃଦ୍ଧ ହେବ ସେ ବିଷୟରେ ଯତ୍ନବାନ ହେଲି । ସେ ସବୁବେଳେ ମୋତେ ଲେଖାଲେଖି କରିବାକୁ ଉତ୍ସାହିତ କରିଥାନ୍ତି ।

କୃଷ୍ଣଚରଣଙ୍କ ଗଳ୍ପ, କବିତା, ପ୍ରବନ୍ଧ ପଢ଼ିଲେ ଯେକୌଣସି ବ୍ୟକ୍ତି ତାଙ୍କ ପ୍ରତିଭାର ପରିଚୟ ପାଇପାରିବ । ତାଙ୍କ ଏକାଙ୍କିକା ରଚନା ପାଠକମାନଙ୍କୁ ଆକର୍ଷିତ କରିଥାଏ । ସେ ଯେଉଁ ଶିଶୁ ସାହିତ୍ୟ ରଚନା କରିଛନ୍ତି ତାହା କେବଳ ଶିଶୁମାନଙ୍କ ମନରେ ନୁହେଁ ପରିଣତ ଲୋକମାନଙ୍କୁ ମଧ୍ୟ ଆନନ୍ଦ ଦେଇଥାଏ । ସେ ଥିଲେ ପ୍ରଥିତଯଶା ସାହିତ୍ୟ ସାଧକ ଓ ପ୍ରବୀଣ ଓଡ଼ିଆ ସାହିତ୍ୟ-ସମାଲୋଚକ ।

କୃଷ୍ଣଚରଣଙ୍କ ଆତ୍ମଜୀବନୀ 'ଆଖିର ଦେଖା ପ୍ରାଣର କଥା'ରେ ସେ ଆରମ୍ଭ କରିଛନ୍ତି-

'ଏହା ଜଣେ ସାଧାରଣ ମଣିଷର କଥା- ଜନ୍ମସୂତ୍ରରେ ଯେ ଶୂଦ୍ର, କିନ୍ତୁ କର୍ମତନ୍ତ୍ରରେ ରୁଦ୍ର- ସାମାଜିକ ସ୍ଥିତିରେ ଯେ ଇତର, କିନ୍ତୁ ଚେଷ୍ଟାଚରିତ୍ରରେ ଐତରେୟ । କ୍ଷୁଦ୍ର ହେଲେ ହେଁ ସେ ଉର୍ଦ୍ଧ୍ୱକୁ ଉଠିବା ପାଇଁ ଉଦ୍ୟମ କରିଛି ଆର୍ଥିକ କ୍ଷେତ୍ରରେ ତଥା ପାରମାର୍ଥିକ ଦିଗରେ । ସେ କିପରି ଶମ୍ବୁକର ତପସ୍ୟା କରିଛି- କିପରି କଣ୍ଟକାକୀର୍ଣ୍ଣ ଉତ୍ତରଣର ପଥ ରକ୍ତଝରା ପାଦରେ ଅତିକ୍ରମ କରିଛି, ସେହି କାହାଣୀ ସମସ୍ତଙ୍କ ଆଗରେ ଥୋଇ ଯାଉଛି ନିଷ୍କପଟ ଭାବରେ ।

ଭଲ ମଣିଷଟିଏ ହୋଇ ଉପରକୁ ଉଠିବା ପାଇଁ ଚାହୁଁଥିବା ଯଦି କେହି ଏଥିରୁ ସୁସ୍ଥ ସୁନ୍ଦର ଜୀବନ ବଞ୍ଚିବାକୁ ଖିଅଟିଏ ପାଇଯାଏ..."

ସେ ଜଣେ ସୁସଙ୍ଗଠକ ରୂପେ ଓଡ଼ିଆ ସାହିତ୍ୟିକମାନଙ୍କ ମନରେ ସୁପରିଚିତ । ସେ ବହୁ ସାହିତ୍ୟ ସଙ୍ଗଠନ ସହିତ ସମ୍ପୃକ୍ତ ଥିଲେ । ପ୍ରାୟ ୩୮ ବର୍ଷ ତଳେ ସେ ଗଠନ କରିଥିଲେ 'ଓଡ଼ିଆ ଗବେଷଣା ପରିଷଦ' । ଗୋଟିଏ ବର୍ଷ ମୋତେ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ହେଉଥିବା 'ଓଡ଼ିଆ ଗବେଷଣା ପରିଷଦ'ର ବାର୍ଷିକ ଉତ୍ସବକୁ ମୁଖ୍ୟ ଅତିଥି ଭାବେ ନିମନ୍ତ୍ରିତ କରିଥିଲେ । ସେଠାରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିବାରେ ତାଙ୍କର ପ୍ରଚେଷ୍ଟା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଏହି ଅନୁଷ୍ଠାନ ପକ୍ଷରୁ ଡକ୍ଟର ବେହେରା ବର୍ଷକୁ ଦୁଇଖଣ୍ଡ ମୁଖପତ୍ର 'ଏଷଣା' ପ୍ରକାଶ କରିଥାନ୍ତି ଯାହା ପାଠକଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ।

କୃଷ୍ଣଚରଣ ବେହେରାଙ୍କ ଏକ ସୁଖୀ ପରିବାର ଥିଲା । ତାଙ୍କ ସହଧର୍ମିଣୀ ଜୟନ୍ତୀ ଦେବୀ ବିଶେଷ ପାଠୋଇ ହୋଇ ନଥିଲେ ମଧ୍ୟ ସ୍ୱାମୀଙ୍କର ପ୍ରତିଭା କିପରି ବିକଶିତ ହେବ ସେଥିପ୍ରତି ସବୁବେଳେ ଯତ୍ନବାନ ଥାଆନ୍ତି ଏବଂ ସ୍ୱାମୀ କିଭଳି ସଂସାର ଜଞ୍ଜାଳରେ ଛନ୍ଦି ନହୋଇ ନିଜର ସାହିତ୍ୟ ସାଧନାକୁ ଉଜ୍ଜ୍ୱଳୋତ୍ତର କରିବେ ସେଥିପ୍ରତି ଦୃଷ୍ଟି ରଖିଥାଆନ୍ତି । ବଡ଼ପୁଅ ପୁଣ୍ୟଶ୍ଳୋକ(ବାପୁ) ଓ ପୁତ୍ରବଧୂ ମୀନାକ୍ଷୀ କୃଷ୍ଣବାବୁଙ୍କ ପାଖେ ପାଖେ ସବୁବେଳେ ରହୁଥିଲେ ଏବଂ ତାଙ୍କ ସେବାଯତ୍ନରେ କେବେ ତ୍ରୁଟି କରି ନଥିଲେ ।

କୃଷ୍ଣଚରଣ ବେହେରା ୨୦୦୮ ମସିହାରେ ତାଙ୍କ ପତ୍ନୀ ଜୟନ୍ତୀଙ୍କୁ ହରାଇବା ପରେ ନିଃସଙ୍ଗ ହୋଇପଡ଼ିଥିଲେ । କିନ୍ତୁ ସାହିତ୍ୟ ଚର୍ଚ୍ଚା, ଗବେଷଣା ବନ୍ଦ କରି ନଥିଲେ । ୨୦୧୨ ମସିହାରେ ଅଷ୍ଟ୍ରେଲିଆରେ ଭାରତୀୟ ଦୂତାବାସରେ କାର୍ଯ୍ୟରତ ଥିବା ସମୟରେ ତାଙ୍କ କନିଷ୍ଠ ପୁତ୍ର ଶୁଭକାନ୍ତଙ୍କର ହଠାତ୍ ମୃତ୍ୟୁ ହୋଇଥିଲା । ସେଥିରେ ସେ ଗଭୀର ଭାବେ ମର୍ମାହତ ହୋଇଥିଲେ । କିନ୍ତୁ ସବୁ ଦୁଃଖ ସହିନେଇ ସେ ତାଙ୍କର ସାହିତ୍ୟ

ସାଧନା ଜାରି ରଖିଥିଲେ । ସେ ଥିଲେ ଜଣେ କର୍ମଯୋଗୀ । ସେ ସମାଲୋଚନା ପ୍ରବନ୍ଧ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଓଡ଼ିଆ ସାହିତ୍ୟ ଜଗତରେ ସେ ଚିରସ୍ମରଣୀୟ ହୋଇ ରହିବେ । ଏହିଭଳି ଜଣେ ସାରସ୍ୱତ ସାଧକଙ୍କ ସାନ୍ନିଧ୍ୟରେ ଆସିଥିବାରୁ ମୁଁ ନିଜକୁ ଭାଗ୍ୟଶାଳୀ ମନେକରୁଛି । ତାଙ୍କ ପିଲାମାନେ ସୁଖଶାନ୍ତିରେ ରୁହନ୍ତୁ, ଏହା ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା । ❖

ପୂର୍ବତନ କୁଳପତି, ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ
ମୋବାଇଲ- ୯୨୩୮୩୦୦୦୨୬୫

# ଲଘୁରେ ପଞ୍ଚକ ପାଞ୍ଚରେ ଗରୁ

ଡକ୍ଟର ନଟବର ଶତପଥୀ

ଆଙ୍ଗିକର ପରୀକ୍ଷା ସାହିତ୍ୟ ଜଗତରେ ଏକ ବଡ଼କଥା, ବିଶେଷ କରି କବିତାର ଇତିହାସ ବୋଲି କୁହାଯାଏ । ଉକ୍ତିର ସତ୍ୟତା ପ୍ରାଚୀନ ଓଡ଼ିଆ କବିତାର ରଚନାରୀତି ଲକ୍ଷ୍ୟ କଲେ ଜଣାଯିବ । ସଂସ୍କୃତ ସାହିତ୍ୟରେ କବିତା/କାବ୍ୟର ରୂପଭେଦ ଅସାମାନ୍ୟ । ରାଜଶେଖର ସର୍ବପ୍ରଥମ କାବ୍ୟର ବିଷୟାନୁସାର ଭେଦ ଦର୍ଶାଇ କହିଲେ ପ୍ରବନ୍ଧକାବ୍ୟ ଓ ମୁକ୍ତକ କାବ୍ୟ- 'ସ ପୁନର୍ଦ୍ୱିଧା ମୁକ୍ତକ ପ୍ରବନ୍ଧବିଷୟତ୍ୱେନ'(କାବ୍ୟ ମୀମାଂସା.୯) । ବିଷୟଗତ ଭେଦାନୁସାରେ ସେ ପୁଣି ପ୍ରତ୍ୟେକଟିକୁ ପାଞ୍ଚ ଭେଦରେ ଭାଙ୍ଗି ଦେଲେ ଯଥା- ଶୁଦ୍ଧ, ଚିତ୍ର, କଥୋତ୍ଥ, ସମ୍ବିଧାନକ ଓ ଆଖ୍ୟାନକମନ । କିନ୍ତୁ ବିଷୟ ଦୃଷ୍ଟିରେ ବିଭାଜନ କଲେ ସଂଖ୍ୟା କଳନା କରିବା କଷ୍ଟ । ଏଣୁ ଆଙ୍ଗିକ ଭେଦହିଁ ଏକ ଉଚିତ ମାର୍ଗ । ମୁକ୍ତକର ଅନେକ ଭେଦ ମୁଖ୍ୟତଃ ସଂଖ୍ୟାବାଚକ ବା ଛନ୍ଦାଶ୍ରିତ । ଏକ ବା ଅଧିକ ଛନ୍ଦ ଆଶ୍ରୟରେ) ହିନ୍ଦୀ କବିତାରେ ଏହି ମୁକ୍ତକର ଗୋଟିଏ ଗୋଟିଏ ଭେଦ ହେଉଛି ପଞ୍ଚକ, ଅଷ୍ଟକ, ଓ ଦଶକ । କୋଶ ପର୍ଯ୍ୟାୟ ରୀତିରେ- ବିସୀ, ବାଇଶି, ଚୋବିଶି, ପଚିଶି, ଏକତ୍ରିଶି, ବତ୍ରିଶୀ, ଚାଳିସା, ପଞ୍ଚାଶିକା ବା ପଚାଶା, ବାବନୀ, ସତରୀ, ବୃହତରୀ ଶତକ ବା ସପ୍ତଶତୀ, ହଜାରା ଶ୍ରେଣୀର କବିତା ରହିଛି । ଏଗୁଡ଼ିକ ମଧ୍ୟରେ ଚାଳିସା(ଯଥା ହନୁମାନ ଚାଳିସା) ଅତ୍ୟନ୍ତ ଲୋକପ୍ରିୟ । ସଂସ୍କୃତରେ ପଞ୍ଚାଶିକା (ଯେପରି ଚୌର ପଞ୍ଚାଶିକା) ଓ ସପ୍ତଶତୀ / ଯଥା ଚଣ୍ଡୀ ସପ୍ତଶତୀ) ମଧ ବହୁ ପ୍ରସିଦ୍ଧ । ହିନ୍ଦୀରେ ରାଗାଶ୍ରିତ ଆଙ୍ଗିକ ହେଉଛି ରାସା ଲାବଣୀ, ଗରବା, ପଦ, କଗରୀ, ଧମାଳ, ଗୀତା ଆଦି ଏବଂ ଋତୁ ଅନୁକ୍ରମେ କବିତାର ଆଙ୍ଗିକ ଓ ଆତ୍ମିକ ବିଶେଷତା ରହିଛି, ଯେପରି ଫାଗ, ହୋଲି ଚର୍ଚରୀ ବାର୍ହାଁରେ, ମଙ୍ଗଳ, ଷଡ଼ଋତୁ । ଓଡ଼ିଆରେ ମଧ୍ୟଯୁଗରେ ଚାଚରୀ ରଚିତ ହୋଇଛି । ତାତ୍ପର୍ଯ୍ୟ ଯେ ଓଡ଼ିଶାରେ ଚଉତିଶା, ଚଉପଦୀ ଯେପରି ଲୋକପ୍ରିୟ । ଆଙ୍ଗିକ ଓ ଏହାର ଆଙ୍ଗିକ ପରୀକ୍ଷା ନିରୀକ୍ଷାର ସୀମା ଅତ୍ୟକ୍ତ ନୁହେଁ, ଅନୁରୂପ କବିତା ବା ପଦ୍ୟର ପାଦ ସଂଖ୍ୟାକୁ ଆଧାର କରି ପଞ୍ଚକ, ଅଷ୍ଟକ, ଦଶକ ପରି

କେତେକ ଲୋକପ୍ରିୟ ପଦ୍ୟ ପ୍ରସ୍ତୁତ ହୋଇଛି । ପଦ ବା ପାଦ ସଂଖ୍ୟାନୁକ୍ରମେ 'ଚଉତିଶା' ବା 'ଷୋଡ଼ଶା' ଏବଂ ଯଦିଓ ଅନିର୍ଦ୍ଦିଷ୍ଟ ପଦ୍ୟର 'ପୋଇ' ରଚନାର ପ୍ରାଚୁର୍ଯ୍ୟ ରହିଛି, ଓଡ଼ିଆରେ ସଂସ୍କୃତ ବା ହିନ୍ଦୀ ଅନୁରୂପ ପଦ/ପାଦ ଆଧାରିତ କବିତା ସୁଲଭ ନୁହେଁ । ଆଧୁନିକ ଆଙ୍ଗିକ ସନେଟ କବିତାର ଆଙ୍ଗିକ ପାଶ୍ଚାତ୍ୟ ରୀତି ଆଧାରିତ, ଏଣୁ ଓଡ଼ିଆ କବିତା ମେଳନରେ ତା'ର ସ୍ଥାନ ଭିନ୍ନ ଏକ ବିଚାର ବିଷୟ ।

ଲେଖକ ପ୍ରଫେସର ଦିବଂଗତ ବେହେରାଙ୍କ 'ଲଘୁ ପଞ୍ଚକ' ଏକ ସ୍ୱତନ୍ତ୍ର ଆଙ୍ଗିକ ଉପସ୍ଥାପନ କରେ । ପଞ୍ଚକ ପାଞ୍ଚ ପାଦ ବିଶିଷ୍ଟ- ଅଧିକନ୍ତୁ ଏହାର ରୀତି ପାଶ୍ଚାତ୍ୟ କବିତା ବିଶେଷ କରି ଇଂରାଜୀ ଧାରା ଅନୁସୃତ । ଏହି ରୀତି ଇଂରାଜୀମୂଳ କୁହାଯାଉଥିଲେ ହେଁ ଏହାର ଆବୃତି ମଧ୍ୟ ଅନ୍ୟ ଭାଷାରେ ମିଳେ । ସମ୍ଭବତଃ ଆଙ୍ଗିକ ଯେତେ ସୁକର ଓ ଲୋକପ୍ରିୟ ନୁହେଁ ତା'ର ବକ୍ତବ୍ୟ ଅଧିକ ମନୋରମ ହୃଦୟଗ୍ରାହୀ; ମଧ୍ୟ କିଛି ପରିମାଣରେ ବୌଦ୍ଧିକତା ଓ ଚାତୁର୍ଯ୍ୟଯୁକ୍ତ । ଇଂରାଜୀ ଲିମେରିକ(Limerick)ର ରୀତି ଅବଲମ୍ବିତ କବିତାକୁ ପ୍ରଫେସର ବେହେରା 'ପଞ୍ଚକ' ଆଖ୍ୟା ଦେଇଛନ୍ତି, ପାଞ୍ଚଟି ପାଦଯୁକ୍ତ ହୋଇଥିବା ହେତୁ । କବି ବ୍ରଜନାଥ ରଥ ମଧ୍ୟ ଏପରି ଆଙ୍ଗିକରେ କବିତା ରଚନା କରିଥିବାର ମନେହୁଏ । ତେବେ 'ପଞ୍ଚକ' ଆଙ୍ଗିକରେ ଏକ ନୂତନ ପ୍ରୟାସ ଡକ୍ଟର କୃଷ୍ଣଚରଣ ବେହେରା ହିଁ ପ୍ରଥମେ ଆରମ୍ଭ କରିଛନ୍ତି । ଏହା ସେ ନିଜ ଆଡୁ ସୂଚାଇଛନ୍ତି ବୋଲି କୁହାଯାଉନାହିଁ, ଏହାହିଁ ସତ୍ୟ ।

ଇଂରାଜୀ ଲିମେରିକ ପାଞ୍ଚ ପାଦଯୁକ୍ତ । ୧ମ, ୨ୟ ଓ ୫ମ ପାଦର ବର୍ଣ୍ଣ ମଧ୍ୟରେ ଏବଂ ୩ୟ, ଓ ୪ର୍ଥରେ ମେଳ ହୋଇଥାଏ । ଏଣୁ ମେଳକୁ କୁହାଯାଏ କକ ଖଖକ । କେତୋଟି ଉଦାହରଣ ନେଇ ଦେଖାଯାଉ ।

There was an old man with a beard,
who said, if is just as I feared.
Two owls and a hen,
Four larks and a wren.
Have all built their nests in my beard.

beard and feard= AA, hen and wren=BB, and in fifth line beard=A,

ଏଣୁ ଯତିପାତର ନିୟମ AA BBAବା କକଖଖକ । ଅନୁରୂପ ଅନ୍ୟ ଏକ ପଦ ।

A youngman on the journey had met her,
And he tried just his hardest to get her.
He knelt at her feet,
said, I will die for you sweet.
And she cruelly told him, he would better,

her and her, feet and sweet and better
= r & r, t &t & last r = AA BBA

ଆଉ ଏକ କବିତା ଅଂକରେ ଛନ୍ଦ ଉଚ୍ଚାରିତ ହେଉଛି-
Sega was top of the line,
On the day of 9-9-99.
But play stain 2,
Proved the dream cast blew.
The sound was blee had gehod dyin.
Lines & 99, 2 & blew and
Last dyin=AA BBA

ଏହି ରୂପରେ ଦେଖିଲେ ଲିମେରିକ ଏକ ସରଳ, କୌତୁକକର ପଦବନ୍ଧ ରଚନା । ପାଶ୍ଚାତ୍ୟ ଜଗତରେ ଅର୍ଥାତ ଏହାର ଜନ୍ମଭୂମିରେ ଲିମେରିକ ପାଇଁ ଏକ ସମାବେଶ ଘଟେ । ଏ ସମାବେଶ ସାମାଜିକ ମିଳନରେ ଲଘୁ ପ୍ରତିଯୋଗିତା ପରି, ଏକତ୍ରିତ ଲିମେରିକ ପ୍ରିୟମାନେ କୁହନ୍ତି 'Will you come upto limerick' ? ଉପସ୍ଥିତ ଲଘୁ ହାସ୍ୟପ୍ରେମୀମାନେ ସ୍ୱତଃ ଲିମେରିକ ଆବୃତ୍ତି କରନ୍ତି । ଉର୍ଦ୍ଦୁରେ କଓ୍ୱାଲି ବା ଓଡ଼ିଆରେ ପ୍ରଚଳିତ ଅନ୍ତାକ୍ଷରୀ ପ୍ରତିଯୋଗିତା ପରି ଲିମେରିକ ପ୍ରେମୀମାନେ ଦୁଇ ଦଳରେ ବିଭକ୍ତ ହୋଇ ପ୍ରତିଯୋଗିତାରେ ଅଂଶୀଭୂତ ହୋଇଯାନ୍ତି । ଲଘୁ କବିତା ଭିତରେ ଆତ୍ମପ୍ରକାଶ କରେ ରଚକର ସୃଜନ କ୍ଷମତା ଓ ସାମର୍ଥ୍ୟ; ଯେଉଁ ସାମର୍ଥ୍ୟର ଉଦ୍ଦେଶ୍ୟ ହେଉଛି ପ୍ରତିପକ୍ଷକୁ ବ୍ୟଙ୍ଗ, ବିଦ୍ରୂପ ବା କୌତୁକର ଜାଲରେ ଛନ୍ଦିଦେବା । ପ୍ରତିଯୋଗିତା ପାଇଁ ପ୍ରତିଯୋଗିତା ହୁଏତ ହୁଏ ନାହିଁ ବା ପ୍ରତିଯୋଗୀ ପ୍ରତିପକ୍ଷକୁ ପରାସ୍ତ କରିବାର ଆଶାରେ କ୍ଷତାକ୍ତକାରୀ ଉଦବନ୍ଧ ପ୍ରସ୍ତୁତ କରେନାହିଁ । କେବଳ କୌତୁକ ହିଁ କୌତୁକ । ଆଶୁ ପ୍ରସ୍ତୁତ ପଦ କେତେ ପରିମାଣରେ ପୂର୍ବବର୍ତ୍ତୀ ପଦଠାରୁ ବିଚକ୍ଷଣ କଳ୍ପନା ଓ ରସମୟୀ ଚିନ୍ତାର ବାହକ ହୁଏ ତାହା ଦେଖାଯିବାର କଥା । ପଦ ରଚୟିତାର କଳ୍ପନାବୋଧ ସହ ଚାତୁର୍ଯ୍ୟ ଜଡ଼ିତ ହେଲେ, ଶ୍ଳେଷାତ୍ମକ ରୀତି ହୁଏତ ଆତ୍ମପ୍ରକାଶ କରିପାରେ, ଶ୍ରୋତା ଏଇ ଶ୍ଳେଷରୀତିକୁ ବୁଝିଲେ ଅଧିକ ରସାଶ୍ରିତ ହୋଇପଡ଼େ । କବିତାର ଏଇ ଚିତ୍ତଦ୍ରବୀ ଗୁଣହିଁ ଆଙ୍ଗିକକୁ ଅଧିକ ଲୋକପ୍ରିୟ କରିଛି ।

ଡକ୍ଟର ବେହେରା, ପ୍ରଥମ ଓଡ଼ିଆ ଲିମେରିକ ରୀତିର କବି ଭାବେ ଏହାକୁ 'ଲଘୁ' ପର୍ଯ୍ୟାୟଭୁକ୍ତ କରିଛନ୍ତି । ଲଘୁ ଶବ୍ଦଟି ପ୍ରସଂଗତ ଗୁରୁତ୍ୱପୂର୍ଣ୍ଣ । ପାଦସଂଖ୍ୟା ପାଞ୍ଚ ହେତୁ ତାହା ପଞ୍ଚକ, ଏପରି ନାମ ବା ସଂଜ୍ଞାର ଚମତ୍କାରିତା ନଥାଇପାରେ, କିନ୍ତୁ ଭାବଧର୍ମ ଦୃଷ୍ଟିରୁ 'ଲଘୁତ୍ୱ' ହେଉଛି ତା'ର ଅନ୍ତର୍ନିହିତ ଶକ୍ତିର ଏକ ବିଶେଷଣ । ଏଇ ବିଶେଷଣ ପଦହିଁ କବିତାର ସାମର୍ଥ୍ୟ ଶକ୍ତିର ଧାରଣ । ଶ୍ଳେଷକୁ ଆଶ୍ଳେଷ କରି ଗତିଶୀଳଭାବ

ହୁଏତ ଇଂଗିତଧର୍ମୀ । କିଛିଟା ବିଦ୍ରୂପ ଏହାର ପ୍ରାଣକୁ କରେ ତେଜୋମୟୀ । ଲଘୁତାରୁ ଭାବ ଗୁରୁଗମ୍ଭୀର ଅର୍ଥାତ ସଂସ୍କାରମୁଖୀ ହୋଇପାରେ । ଚାରୁତା ଏହାର ସର୍ବଶେଷ ପଦପରିଣତି, ଚେତାବନୀ ଦେଇ ଲଘୁ ପଦବନ୍ଧକାର କବି ନିଜର ସାମାଜିକ ଦାୟିତ୍ୱବୋଧ ସଂପନ୍ନ କରନ୍ତି । କ୍ଷୁଦ୍ରହିଁ ଶାଣିତ ଓ ଲକ୍ଷ୍ୟ ଭେଦି । ଇଙ୍ଗିତାକାରରେ ତ୍ରୁଟି ବା ଅସମଜୀବନବୋଧର, ଦାୟିତ୍ୱଶୂନ୍ୟ ଆଚରଣର ବା କଳଙ୍କିତ ଆଦର୍ଶର ଉପସ୍ଥାପନକରି କବି କବିତ୍ୱକୁ ଗଠନାତ୍ମକ ଆଦର୍ଶରେ ପରିଣତ କରିଥାନ୍ତି । କ୍ଷୁଦ୍ରତାହିଁ ଚାରୁତା; ସୂକ୍ଷ୍ମତ୍ୱହିଁ ପ୍ରଭାବଶାଳୀ, ସଂସ୍କାର ପ୍ରୟାସୀ । ଡକ୍ଟର ବେହେରାଙ୍କ ଲଘୁପଞ୍ଚକରୁ ଏପରି ବକ୍ତବ୍ୟମୁଖୀଭାବ ପ୍ରତିପନ୍ନ ହୋଇଥାଏ ।

ହାସ୍ୟରସ ଭିତରେ ତୀକ୍ଷ୍ଣ ଇଙ୍ଗିତ ଗୋଟିଏ ଶୈଳୀ । କବିସୂର୍ଯ୍ୟ ବା ବ୍ରଜନାଥ ଓଡ଼ିଆରେ ଏପରି ଧର୍ମ ଅନେକକାଳୁ ଛାଡ଼ିଯାଇଛନ୍ତି 'ଜଗତେ କେବଳ'ର ପରିହାସ ପାଠକର ବୋଧଗମ୍ୟ ବୌଦ୍ଧିକ ବିଚାରୁ କେତେ ଶାଣିତ ନ କରେ ! 'ଚତୁର ବିନୋଦ'ର ଦୀର୍ଘ ଉପମାଯୁକ୍ତ ପଦ ଭିତରେ ଚରିତ୍ର ପ୍ରତି ବ୍ୟଙ୍ଗବାକ୍ୟର ବାଣ କେତେ ବୌଦ୍ଧିକ ଓ ହାସ ସୃଷ୍ଟି କରି ନ ପାରେ ! ଲଘୁହାସ ବୋଲି କେହି ବିଚାରକ କବିଙ୍କର ସୃଜନ ସାମର୍ଥ୍ୟକୁ ଏଡ଼ାଇ ପାରେନାହିଁ, ବୌଦ୍ଧିକ ସଂଜ୍ଞାରୁ କଳ୍ପନା ଜଡ଼ିତ ଭାବଧର୍ମକୁ ଅସ୍ୱୀକାର କରେ ନାହିଁ । ଡକ୍ଟର ବେହେରାଙ୍କ 'ଲଘୁପଞ୍ଚକ ସଂକଳନର ପଦଟି- 'ଆରେ ଚଇତା, ଦୁଇମାଇପର ଘଇତା' ପାଠକେ ସ୍ମରଣ କରନ୍ତୁ । କି କାତର ମୁହୂର୍ତ୍ତରେ 'ଘଇତା'ଟି ପଡ଼ି ନ ଥିବ, ଯେତେବେଳେ ଦୁଇଆଡୁ ଦୁଇଟି ପ୍ରଶ୍ନବାଣ ତାକୁ ଅସ୍ଥିର କରିଦେଉଥିବ । ବେତ ଖାଇବ କି ପଖାଳ- ଏ ସିଦ୍ଧାନ୍ତ ମାଇପର ନୁହେଁ । ଗୋଟିଏ ମାଇପ ଥିଲେ ହୁଏତ ତାହା ହୋଇଥାନ୍ତା । କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ତା'ର ପ୍ରେମ ବା କାମ ଜଡ଼ିତ ପ୍ରେରଣା ତାକୁ ଗୋଟିଏ ସ୍ଥାନରେ ଦୁଇଟି ପାଣିପ୍ରାର୍ଥୀ କରିଛି । ସେ ସବୁ ଅତୀତ । ବର୍ତ୍ତମାନ ଏକ ଦୁଃସହ ଯନ୍ତ୍ରଣା । ଭୋଗ ଭାଗ୍ୟର ଜୀବନ ବୋଲି ସଂସ୍କାରକୁ ଜୀବନ ବ୍ରତରେ ସୁଖମୟ କରିବାର ପରିସ୍ଥିତି ଆଉ ନାହିଁ । କି ଛଟପଟ ହେଉ ନ ଥିବ ଦୁଇ ମାଇପର ଘଇତାଟି ! ଭାବି ବସିଲେ ପିତା ଲାଗିବ ପ୍ରେମ, ଗୃହ ଅରଣ୍ୟତୁଲ୍ୟ ହୋଇଯିବ । 'ମାତାଯସ୍ୟ ଗୃହେ ନାସ୍ତି' ପରି ଆର୍ଷବାଣୀର ଚମତ୍କାରିତା ହେବ ତା'ର ଶେଷ ସିଦ୍ଧାନ୍ତ । ପାଞ୍ଚଧାଡ଼ିର ଏଇ ସଂକ୍ଷିପ୍ତ ପଦ କେଡ଼େ ଶ୍ଳେଷାତ୍ମକ ନୁହେଁ ! ବ୍ୟଙ୍ଗ କାହାକୁ ଆଶ୍ରୟ ଦେଇଛି ? ଏ ପ୍ରଶ୍ନ ମାଇପ ଦୁଇଟିକୁ ନା ଘଇତାକୁ ନା କାମସିକ୍ତ ପୌରୁଷକୁ ? ପଦ ବାନ୍ଧିଦେଇ ହାତ ସଫା କରିଦେଲେ କବି, ପାଠକ ପଢ଼ିଦେଇ ମୁରୁକି ହସଟିଏ ଫୁଟାଇ ଦେଲା ଅଧରରେ । କିନ୍ତୁ ଅବସୋସ କ'ଣ ରହିଲା ? ବଡ଼ ଚିନ୍ତାକାରକ କଥା- ବୁଝିବା ଲୋକ ବୁଝୁ- କବିର ଲଗା କ'ଣ ଏଥିକୁ ?

ଏଇ ଧରଣର ଆଉ ଏକ ପଞ୍ଚକ-
ଜଣେ ଘର ଭିତରେ ଆଉ ଜଣେ ବାହାରେ
ବିଚରା ପୁରୁଷର ଗୋଡ଼ ଦୁଇ ନାଆରେ ।
ଜଣେ ଦେଖେ ବିଲ୍
ଜଣେ ଦେଖେ ଦିଲ୍
ପତ୍ନୀ ଓ ପ୍ରେମିକାର ଫରକ କେ ବିଚାରେ ।

ଶେଷ ପଦଟିକୁ ଯଦି ଅନ୍ୟଭାବେ ଲେଖା ହୋଇଥାନ୍ତା- 'କୁହ ଦେଖି ଏ ଦୁଇ କିଏ ଜିତେ କିଏ ହାରେ ?' ବୋଧହୁଏ ଭଲ ଧନ୍ଦାଟିଏ ହୋଇଥାନ୍ତା । ପତ୍ନୀ ଓ ପ୍ରେମିକାକୁ ନେଇ ପୁରୁଷ ଜୀବନର ଦ୍ୱନ୍ଦ୍ୱ ପ୍ରକୃତରେ ବିଲ୍ ଓ ଦିଲ୍ ଭିତରେ ଥାଏ । ଆଜି ଦିନେ ଦିଲ ଦେଖୁ ନାରୀ ପରଦିନ ବିଲ୍ ଖୋଜି ନ ବସିବ କିଏ କହିବ ?

କବି କୃଷ୍ଣଚରଣ ଅନ୍ତଃକରଣରେ ପରିହାସ ପ୍ରିୟ । ଭାଗବତରୁ ଉଠାଇନେଇ- ଅବଶିଷ୍ଟ ପଦ ପୂରଣ କରୁଛନ୍ତି- ଯେମିତି

ପ୍ରାଣୀର ଭଲମନ୍ଦ ବାଣୀ/ ଜୀବନ କାଳେ ତାହାଜାଣି ।
କେତେ ଖୁଆଅ/ କେତେ ବା ଖାଅ
ଜନତା ତାହା ପରିମାଣି ।(ସଂଖ୍ୟା ୮୬)

ଶେଷ ତିନି ପାଦ ହିଁ ବକ୍ତବ୍ୟ ସ୍ପଷ୍ଟ । ବ୍ୟାଖ୍ୟା ଅନାବଶ୍ୟକ । ଶରଟି ଏତେ ସରଳ ଗତିଶ ଯେ ଭେଦ ଦକ୍ଷତା ତା'ର ଆତ୍ମଶକ୍ତିର ବାହକ । ଜନତା ସବୁ ଜାଣେ । କେତେ କାହାକୁ କିପରି ପୂଜିଲ ବା ଭଣ୍ଡିଲ- କୋଉ କଥା ଅଛପା ଏ ଭାଇରାଲ ଯୁଗରେ ? ସଂଖ୍ୟା ୮୭ରେ-

କାମ ନାହିଁକି ଚାକିରି ନାହିଁ, ଲୋକେ ରହିଲେ ବେକାର
ପିଲା କବିଲା ବିକିର କରି ହେଲେ ଦାଦନ ଶିକାର ।
ଶାସନ ବସି ମାରଇ ହାଇ
ନେତାଏ କେତେ ଭରସା ଦେଇ
ମାୟା ମିରିଗ ଧରାଇ ଦେଲେ, ଡର ନାହିଁ ଛି ଛି କାର ।

ଦାଦନ ସମସ୍ୟା ଜଡ଼ିତ ଏକ ଦେଶରେ ଶାସନର କର୍ତ୍ତବ୍ୟ କ'ଣ ? ଗଣତନ୍ତ୍ର ମଣିଷ ପାଇଁ ଯେଉଁ ଆଶିଷର ଶଙ୍ଖଫୁଙ୍କେ ବା ଜୀବନପଦ୍ମକୁ ସରସୀର ଢଳଢ଼ଳ ନୀଳଜଳରାଶି ଭିତରେ ନିର୍ବିଘ୍ନ ଫୁଟିବାର ଭରସା ଦେଖାଏ ତା'ର ବାସ୍ତବ ସ୍ଥିତି ଦେଖିଲେ ଛି ଛି କହିବା ବ୍ୟତୀତ ଆଉ କ'ଣ କହିହୁଏ ? 'ଛି ଛି କାର', ମାତ୍ର ଦୁଇଟି ଧ୍ୱନି କେତେ ବଳଶାଳୀ ନୁହେଁ । କେତେ ଅକୁହା କଥାକୁ ପ୍ରତିନିଧିତ୍ୱ ନ କରୁଛି ଏଇ ଧ୍ୱନି । ଏହା ବାହାରେ ଅଧିକ କିଛି ଅଛି କି ? ଧ୍ୱନି-ପ୍ରତୀକାତ୍ମକତା କବିତାର ବଡ଼ ଏକ

ସାର୍ଥକ ଗୁଣ । ପ୍ରତୀକ ମାୟାମିରିଗ, ତା'ର ଦଉଡ଼ ଜୀବନ ପଥରେ କେଉଁ ଉଦ୍ଦେଶ୍ୟ ସଫଳ କରୁଛି ? ଜନତାର ହର୍ଷୋତ୍‌ଫୁଲ୍ଲ ଜୟଧ୍ୱନି- ଆମ ଗଣତନ୍ତ୍ରକୁ ସଫଳତାର ଫୁଲହାର ଦେଉଛି ? କବି ପ୍ରଶ୍ନ କରନ୍ତି, ଏକ ପୀଡ଼ାପ୍ରଦ ପରିଣତିର ଅବଶେଷରେ 'ଛି ଛି' କ'ଣ ଏମାନଙ୍କ ଆଚରଣ ପାଇଁ ଯଥାଯୋଗ୍ୟ ଉପହାର ନୁହେଁ ? ଏହିପରି ରାଜନୀତି ନେଇ ଲଘୁ ପଞ୍ଚର କେତୋଟି ପଞ୍ଚକ ଖୁବ୍ ଶକ୍ତିଶାଳୀ ସାମାଜିକ ବ୍ୟଙ୍ଗ ପ୍ରସ୍ତୁତ କରିଛି ।

ଜଣେ ବ୍ୟକ୍ତି ଭାବେ କବି କୃଷ୍ଣଚରଣ ନୀତି ଧୁରୀଣ ଓ ଆତ୍ମସଚେତନ ମଣିଷ, କର୍ମଠ ଜୀବନର ପରିଶ୍ରମ ଓ ପ୍ରେମପୂର୍ଣ୍ଣ ସହଯୋଗକୁ ନିଜର ଆଦର୍ଶ କରିଛନ୍ତି । ଅବହେଳା ତାଙ୍କ କର୍ମ ପଞ୍ଜିକାରେ ତିଥିବାର ଜମାଇ ପାଇନାହିଁ । ସେ ଏଣୁ ସବୁବେଳେ ସଂଗଠନ ଭିତରେ ଭିତରେ ଥାନ୍ତି, ଅନ୍ୟକୁ କାମ ଶିଖାନ୍ତି । ଜୀବନର ସଫଳତାର ମର୍ମ ବୁଝନ୍ତି । ସମାଲୋଚନାକୁ ଘୃଣା କରନ୍ତି, କିନ୍ତୁ ବ୍ୟକ୍ତିକୁ ସୁଧାରିବାକୁ ତ ପଡ଼ିବ । ଏଣୁ ଟିକିଏ ବ୍ୟଙ୍ଗ କରିଦେଲେ କ୍ଷତି କ'ଣ ? ଜୀବନପ୍ରେମୀ ପ୍ରତ୍ୟେକ ବିଦ୍ୱାନ ବୁଝନ୍ତି ବ୍ୟଙ୍ଗ କେଡ଼େ ଉଦ୍ଦେଶ୍ୟହୀନ ତର୍ଜଣା- ଆଘାତ ଦେବା ଏହାର ଉଦ୍ଦେଶ୍ୟ ନୁହେଁ, ଉଦ୍ଦେଶ୍ୟ ସଂସ୍କାର କରିବା । ବ୍ୟକ୍ତି ଜୀବନର ଏଇ ଆଦର୍ଶ ହେତୁ ଲଘୁ ପଞ୍ଚକର ସବୁ ପଞ୍ଚକ ପ୍ରାୟତ ବ୍ୟାଙ୍ଗାତ୍ମକ । ଓଡ଼ିଆମାନଙ୍କ ଚରିତ୍ରକୁ ନେଇ ଚାରୋଟି ପଞ୍ଚକର ଚମତ୍କାରିତା ଖୁବ୍ ଉପଭୋଗ୍ୟ । ପଞ୍ଚକ ନଂ ୧୧, ୮୦, ୮୫, ୯୫ ପଢ଼ିଲେ ଉପଲବ୍ଧି କରିହେବ ଏ ଜାତିର ଚରିତ୍ର । କହିବା ଅନାବଶ୍ୟକ ଯେ ଆଳସ୍ୟ ଓ ପରନିନ୍ଦାର ମାଳା ଶୋଭିତ ରୂପରେ ନିଜକୁ ସେ ଦେଖେ ।

ପଢ଼ିଆ ପଢ଼େ ବଢ଼ିଆ ଜମି କାମକୁ ବଡ଼ କୋଢ଼ିଆ
ବେଳ ପଡ଼ିଲେ ପର ମଥାରେ ଭାଙ୍ଗଇ ତୁଚ୍ଛା ନଡ଼ିଆ ।
ଆପଣା ମନେ ଆପେ ସିହାଣ
କୂଅ ଭିତରେ ବେଙ୍ଗ ସମାନ
ଦେଖରେ ପଶୁ ଦୁଇ ଗୋଡ଼ିଆ ନାମ ତାହାର ଓଡ଼ିଆ ।

ସତ୍ୟର ଅପଳାପ ନୁହେଁ, ସର୍ବତ୍ର ଏଇ ଆକ୍ଷେପ ଶଙ୍କିତ ହୁଏ ଓ ପରସ୍ପରକୁ ଦୋଷ ଦେଇ ଦୁଇ ଓଡ଼ିଆ କୌଳିକତା ବଜାୟ ରଖନ୍ତି ।

୮୦ ନମ୍ବରଟି ଦେଖାଯାଉ ।

ଖାଇବାକୁ ଡର ପିଇବାକୁ ଡର ଡର ଧନ ଜମିବାଡ଼ି
ଅସ୍ତ୍ରର ଭୟ ଶାସ୍ତ୍ରର ଭୟ ଚାରିଆଡୁ ଆସେ ମାଡ଼ି ।
ଡରୁଆ ଓଡ଼ିଆ ଛେରୁଆ ମଣିଷ
ହଜମ କରଇ ସବୁଯାକ ବିଷ
ଛାତିର ସାହସ ବାହୁରୁ ଶକତି କାହିଁ କିଏ ନେଲା କାଢ଼ି ।

ଡରୁଆ ଯଦି ନୀତିନ୍ୟାୟ ପ୍ରତି ସାବଧାନ ହୁଏ ତା'ର ବିକଳ୍ପ ନ ଥାଏ, କିନ୍ତୁ ଡରୁଆ ଯଦି କାପୁରୁଷପଣକୁ ଇଙ୍ଗିତ କରେ ତା'ର ପ୍ରତିକାର କ'ଣ ଅଛି ? ବୁଝାଇବା ଅନାବଶ୍ୟକ ଯେ ଶିଥିଳ ପୌରୁଷ କାପୁରୁଷ ପଣରେ ସବୁ ଶୁଣି ବୁଝି ମଧ ନିରବ ରହିଯାଏ ।

ଆମର ଥିଲା ବହୁତ କିଛି ଧନ
ଆବର ଅଛି ଖଣି ଖାଦାନ ବନ
ରହିଛି ବାୟୁ ରହିଛି ଜଳ
ରହିଛି ମାଟି ଫଳୁଛି ଫଳ
କି ଲୋଡ଼ା ଆଉ କାହାର ଅନୁଦାନ ?

ଏଇଟି ଆତ୍ମସନ୍ତୋଷର ବିହଗଗାନ ? ଆପଣା ସୁଖକୁ ପରମାର୍ଥ ମନେ କରି ନିଜଘର ନିଜ ସଂସାର ବୋଲି କବାଟ ବନ୍ଦ କରି ରହିବା ପରି ବିଷୟ ନୁହେଁ ତ । ଯାହା କିଛି ପ୍ରଦତ୍ତ ପିତୃପିତା ଦୟାରୁ କି ଅନ୍ୟ କୌଣସି ଆଳରୁ ସାମିତାର୍ଥକ ବିଷୟ ସଂପତ୍ତି ଭିତରେ ଅସରନ୍ତି ଆନନ୍ଦ କ'ଣ ମନ୍ଦ ? ଯେଉଁ ଅର୍ଥରେ ପାଠକ ଏଇଟିକୁ ଗ୍ରହଣ କରିବ କରୁ- ଆପତ୍ତି କ'ଣ ଅଛି ?

ନାରୀ ସଂପର୍କିତ କେତୋଟି ପଞ୍ଚକ ମଧ୍ୟରେ ୫୪, ୬୯, ୭୫ ଖୁବ୍ ଉପଭୋଗ୍ୟ ।

ବୁଲଗେରିଆର ଗୋଲାପ ବନରେ ବୁଲବୁଲ
ଏସିଆ ୟୁରୋପେ କିଏ କାହିଁ ତା'ର ସମତୁଲ ?
ହସି ହସାଇବ
ନାଚି ନଚାଇବ,
ରୂପରେ ଗୁଣରେ ଦୁନିଆ କରିବ ମସଗୁଲ ।୭୫।
ସେହିପରି...
ମନ୍ଥରାଦେବୀଙ୍କ ମରଦ ଶାସନ, ସ୍ୱାମୀ ଥାଏ ଡରିମରି
ବିଚରା ସ୍ୱାମୀକି କରାଉ ଥାଆନ୍ତି, ଉଠାବସା କାନ ଧରି ।
ପାନରୁ ଖସିଲେ ଚୂନ
ବାହାର କରନ୍ତି ଖୁଣ ।
ନର ନିର୍ଯାତନା କିଏ କେବେ ଦେଖେ କେହି କହଇ କି ସରି ।(୬୯)

କେବଳ ଉପଭୋଗ କରି ହୁଏ ମନୋ କ୍ଷେତ୍ରରେ, ରସସିକ୍ତ କରିହୁଏ ଜଡ଼ତୁଲ୍ୟ ସୁପ୍ତ ମନ । ବ୍ୟଙ୍ଗର ଏଇ ଧର୍ମ ବା ଲକ୍ଷଣ ବୁଝିଥିବା ପାଠକ କ୍ଷଣକ ପାଇଁ ସତେଜ କରିଦିଏ ନିଜକୁ ।

୧୦୧ ପଞ୍ଚକ ମଧ୍ୟରେ ପ୍ରାୟ ପଚାଶଭାଗ ପଞ୍ଚକ ଜାତୀୟ ଚରିତ୍ରର ଅଂଶବିଶେଷ ରାଜନୀତିକ ଅପକର୍ମ, ବ୍ୟକ୍ତିକ ଭ୍ରଷ୍ଟାଚାର, ସାମାଜିକ ଓ ବ୍ୟବସ୍ଥାଗତ କୌଳିନ୍ୟହୀନ ମୂଲ୍ୟବୋଧ, ଆଦର୍ଶର ପତନର ଚିତ୍ର ରହିଛି । ଯଥା-

ତୁଣ୍ଡେ ଖାଲି ଗାନ୍ଧି ଗାନ୍ଧି କହୁଥା
ଯାହା ଯେତେ ପାଉ ବାନ୍ଧି ନେଉଥା ।
ହେବୁ ଗାନ୍ଧି ନାମ ଧରି
ତପ୍ତ ବୈତରଣୀ ପାରି,
ଚୋରି ଟାଉଟରି ପନ୍ଦେ କରୁଥା ।

ଶଙ୍କରାଚାର୍ଯ୍ୟ ପ୍ରସଙ୍ଗତ ମନେ ପଡ଼ନ୍ତି । କହିଲେ

ଶଲ୍ୟଂପରଂ କିଂ ନିଜମୂର୍ଖତୈବ- ସବୁଠାରୁ ଅଧିକ ତନ୍ମୟକାରୀ କଥାଟି କ'ଣ ? ନିଜର ମୂର୍ଖତା । ଗାନ୍ଧି ଓ ଗାନ୍ଧିକଥା ମୂର୍ଖମାନଙ୍କ ତୁଣ୍ଡରେ ତନ୍ମୟ ସୃଷ୍ଟିକାରୀ ଏକ ନିଷ୍ଫଳ ଧ୍ୱନିରେ ପରିଣତ ହୋଇଛି । ସୁବିଧାବାଦୀ କେହି ବ୍ୟକ୍ତି ଗାନ୍ଧି ଗାନ୍ଧି କହିଲେ ଗାନ୍ଧିଙ୍କ ମୂଲ୍ୟ କମ୍ ହୋଇଯାଏ ନାହିଁ, ଯେମିତି ଭର୍ତ୍ତୃହରି କହିଲେ ସୁନାର ମୂଲ୍ୟରେ ଘଟତି କରୁଥିବା ପରୀକ୍ଷକ ମୂର୍ଖ ବୋଲି ଚିହ୍ନା ପଡ଼େ, ସୁନାର ମୂଲ୍ୟ କମ ହୋଇଯାଏ ନାହିଁ । ଅନୁରୂପ କବି କୃଷ୍ଣଚରଣ ବ୍ୟଙ୍ଗ ଭାଷାରେ ମୂର୍ଖକୁ ମୂର୍ଖ ହିଁ କହୁଛନ୍ତି ।

ଦେଶରେ ସଂରକ୍ଷଣ ନୀତି ନେଇ ବିଭ୍ରାଟ ମୁଣ୍ଡ ଟେକୁଛି । କବି ଏହାର ଅର୍ଥାତ୍ ସଂରକ୍ଷଣ ନୀତିର କଟୁ ସମାଲୋଚନା କରିଛନ୍ତି ।

ସଂରକ୍ଷିତ ସ୍ଥାନ, ସଂରକ୍ଷିତ ବନ, ସଂରକ୍ଷିତ ସବୁ କର୍ମରେ
ସଂରକ୍ଷିତ ବର୍ଣ୍ଣ, ସଂରକ୍ଷିତ ଜାତି, ସଂରକ୍ଷିତ ସବୁ ଧର୍ମରେ ।
ସଂରକ୍ଷିତ ଛତା ସବୁବାଡ଼ବତା
ସଂରକ୍ଷିତ ଲୋକ ପ୍ରତିନିଧି ନେତା, ନଂ ୬୫ ।
ଅରକ୍ଷିତ ଏକା ମଣିଷ ଜୀବନ ଦେଶ ମାତୃକାର ଚର୍ମରେ ।

ଗୋଟିଏ ପାଖରେ ଚରମ ବିଦ୍ରୂପ ଅନ୍ୟ ପକ୍ଷରେ ଜୀବନ ପ୍ରତି ଅତୁଟଅମାପ ଶ୍ରଦ୍ଧା ସମ୍ବେଦନା- ସଂରକ୍ଷଣର ଜଳପ୍ଲାବନରେ ସତେ ଯେପରି ଜୀବନ ମାଛ କଇଁଛ ପରି ଅନାଥ ।

ଦେଶର ଶିକ୍ଷାନୀତିକୁ ଓ ଶିକ୍ଷାନାମରେ ଭେଜାଲ କୃତିତ୍ୱକୁ ବ୍ୟଙ୍ଗ କରାଯାଇଛି ତିନୋଟି ଚାରୋଟି କବିତାରେ । ୫୯ ନମ୍ବର ପଞ୍ଚକରେ କହୁଛନ୍ତି-

ଡକ୍ଟରେଟ୍ ବିଶ୍ୱବିଦ୍ୟାଳୟ ଉଚ୍ଚ ଡିଗିରି
ଖ୍ୟାତି ଗ୍ରନ୍ଥେ ପଡ଼େ ଗାର ଚଢ଼ିହୁଏ ଚାକିରି ।
କାହିଁ ଲେଖା ଥେସିସ୍ !

କାହିଁ ଦେଖା ଦେଉସିସ୍ !
ଯୋଗାଡ଼ିଆ ପାଠୁଆଙ୍କ ସବୁ ଫନ୍ଦିଫିକିରି ।
କିମ୍ବା ୭୦ ନମ୍ବର ପଞ୍ଚକରେ-
କପିକରି ଛପିଯାଅ କପିବର ଭଳି
ଛୁରା ଘେନି ଲାଗିଯାଅ ଗୁରୁସାଥେ କଳି ।
ଗାର୍ଡ଼ିଆନ ଆଗରେ
ଦଳନେତା ପଛରେ
ପାଶ୍ ଫେଲ ଉଠାପଡ଼ା ଏ ଦେହର ମଳି ।

ପରୀକ୍ଷାରେ କପି କରିବା ଏକ ପ୍ରକାର ଦାବି ବୋଲି ଘୋଷଣା କରିଥିବା ଛାତ୍ରଦଳ ଓ ଭାରତବର୍ଷରେ ଶାସନାସୀନ ଏକ ରାଜନୀତିକ ଦଳ ଯୁବକମାନଙ୍କୁ କପି କରିବାର ଅଧିକାର ଦେବା କଥା ଘୋଷଣା କରି ଚର୍ଚ୍ଚାକୁ ଆସିଥିଲା । ଶିକ୍ଷାକୁ ମୂଲ୍ୟବୋଧ ଓ ସାଧନାରୁ ପୃଥକ କରି ରାଜନୀତିକ ହଟଚମଟ ଭିତରେ ଯୁବଶକ୍ତିକୁ ମେଣ୍ଢାପରି ବିଚାର କରିବାକୁ ରାଜନୀତି ପଛେଇ ଯାଇନାହିଁ, ଏ ଭାରତ ବର୍ଷରେ ଯେଉଁଠି କୁହାଗଲା, Youth of a nation are the trustee of posterity, ସେଇଠି ଯୁବକର ଉତ୍ସାହ କେବଳ ତାପ ହୋଇରହିଯାଇଛି । ତାପରେ ତପ ସନ୍ଧାନ ପରିବର୍ତ୍ତେ କୋପ ଓ ସଂହାର ମୂର୍ତ୍ତିର ବାହକ ହୋଇଛି ଯୁବଶକ୍ତି ।

କବି କୃଷ୍ଣଚରଣ ଶିକ୍ଷକ, ଗବେଷକ, ଲେଖକ, ଦିଗଦର୍ଶକର ଜୀବନ ବଂଚିଥିଲେ । ମୂଲ୍ୟବୋଧର ଜଣେ ପ୍ରତିଷ୍ଠାତା ମଧ୍ୟ । ନିର୍ମଳ ବ୍ୟକ୍ତିତ୍ୱ, ସାଂଗଠନିକ ଦକ୍ଷତା କୌଣସି ପ୍ରଶ୍ନର ଉର୍ଦ୍ଧ୍ୱରେ ଥିଲା । ଆଦର୍ଶର ନେତୃତ୍ୱ ନେବା ପରି ସାମର୍ଥ୍ୟ ଥିଲା ଅସୀମ । ସବୁ ଭିତରେ ଥିଲା କବିସତ୍ତାର ଏକ ସୂକ୍ଷ୍ମଶ୍ୱେତ ଅନୁଭବ । ସେଇଟି ବଡ଼ ନିଚୋଳ/ ସଂଭାବନାର ପଥ ଆବିଷ୍କାର କରିପାରୁଥିବା ଗୋଟିଏ ଉଜ୍ଜ୍ୱଳ ଆତ୍ମା କବିର ସବୁ ବଡ଼ପଣରେ ତାହା ଯେତିକି ଉଜ୍ଜ୍ୱଳ, ଅନ୍ୟକୁ ଦୀକ୍ଷିତ କରିବା କରିବା ପାଇଁ ସେତିକି ବ୍ୟାକୁଳ । ଏ ସବୁ ଗୁଣ ଆତ୍ମପ୍ରସାରଣର । କବିରା କବି ଲଙ୍ଗ ଫେଲୋଙ୍କ ଭାଷାରେ କହିଲେ- "We judge ourselves by what we feel
capable of doing, others judge us by
what we have done."

ଦିବଂଗତ କବି ଏଥିରେ ବିଶ୍ୱାସ କରିଥିଲେ, ସମୀକ୍ଷା କରୁଥିଲେ, what we have done." ❖

ସି. ୧୧୬୭, ସେକ୍ଟର-୬
ସିଡ଼ିଏ, କଟକ

# ଯଶସ୍ୱୀ ସର୍ଜନଶୀଳ ପ୍ରତିଭା

ଡ. ଫକୀରମୋହନ ସାହୁ

ପ୍ରଫେସର କୃଷ୍ଣଚରଣ ବେହେରା ଦେହାବସନାର ଖବର ଶୁଣିବା ପରେ ଯେଉଁ କାଳଜୟୀ ଉକ୍ତିଟି ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା, ତାହା ହେଉଛି ବିଶ୍ୱସାହିତ୍ୟର ମହାନ କଥାକାର ଓ ନୋବେଲ ପୁରସ୍କାର ପ୍ରାପ୍ତ ଆର୍ଣ୍ଣେଷ୍ଟ ହେମିଙ୍ଗ୍‌ୱେଙ୍କ ବାକ୍ୟ : ଜଣେ ହୁଏତ ଧ୍ୱଂସ ହୋଇଯାଇପାରେ ମାତ୍ର ପରାଜିତ ହୁଏ ନାହିଁ । 'One may be destroyed, but not defeated' । ପ୍ରଫେସର କୃଷ୍ଣଚରଣ ବେହେରା ଜଣେ ଏହି ଧରଣର ମନୁଷ୍ୟ । ଷାଠିଏ ବର୍ଷରୁ ଅଧିକ ସମୟ ସାହିତ୍ୟ ରଚନା, ସଂପାଦନା ଓ ସାଂଗଠନିକ ସାଫଲ୍ୟର ବିଜୟ ପତାକା ଧରି ସେ ଯେପରି ଅଗ୍ରନେତୃତ୍ୱ ନେଇଛନ୍ତି ତାହା ଗୋଷ୍ଠୀ ଚେତନାର ଏକ ସୁନ୍ଦର ଅଂଶବିଶେଷ ହୋଇ ଦୀର୍ଘଦିନ ଅମଳିନ ରହିବ । ଏ ଯାତ୍ରା ପଥରେ ବାଧକ ଆସିଛି, ବିରୋଧ ଆସିଛି । କିନ୍ତୁ ପରାଜୟର ମନୋଭାବ ତାଙ୍କୁ ସ୍ପର୍ଶ କରିନାହିଁ । ତାଙ୍କ ମର ଶରୀରର ଅବସାନ ପରେ ମଧ୍ୟ ତାଙ୍କର ପ୍ରେରଣାର ତରଙ୍ଗ ଅନେକ ସାହିତ୍ୟ ସାଧକଙ୍କୁ ସକ୍ରିୟ ରଖିବ ।

ଯଶସ୍ୱୀ ସର୍ଜନଶୀଳ ପ୍ରତିଭା ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ସାହିତ୍ୟ-ସାଧନାରେ ମୌଳିକତା ଯେପରି ସ୍ୱୀକୃତି ଲାଭ କରିଛି, ତାଙ୍କ ରଚନାର ବିସ୍ତୃତ ସେପରି ଜନାଦୃତି ପାଇଛି । ପ୍ରତିଭା ଓ ସୃଜନଶୀଳତା ସଂପର୍କରେ ବାଦବିସମ୍ବାଦ ପରିପ୍ରେକ୍ଷୀର ଗୁଣାତ୍ମକ ଦିଗ ଓ ପରିମାଣାତ୍ମକ ଦିଗ ଉପରେ ବିଶେଷ ଚର୍ଚ୍ଚା ଲାଗିରହେ । କେଉଁଟି ମୁଖ୍ୟ ଏବଂ କେଉଁଟି ଗୌଣ, ତାହାର ତର୍କବିତର୍କ ଚାଲେ । କିନ୍ତୁ ପ୍ରଫେସର ବେହେରାଙ୍କ ସାହିତ୍ୟ ସୃଷ୍ଟି ଉଭୟ ଦିଗରୁ ଅଭିନନ୍ଦିତ । ସେ ବହୁ ପ୍ରାଚୀନ ମୋଗଲ ତାମସାକୁ ଉଦ୍ଧାର କରି ସୁସଂପାଦନା କରି ଦର୍ଶକ ଓ ପାଠକର ଶ୍ରଦ୍ଧାବଳୟ ମଧ୍ୟକୁ ଆଣିଛନ୍ତି । କବି ବଂଶୀବଲ୍ଲଭଙ୍କ ଏହି ରଚନାର ପୁନର୍ବିଚରଣ ଓଡ଼ିଶାବାସୀଙ୍କ ଗୋଷ୍ଠୀ ଚେତନାକୁ କ୍ରିୟାଶୀଳ କରିଛି । ଦୂର ଅତୀତର ନମସ୍ୟ ଆର୍ତ୍ତବଲ୍ଲଭ ମହାନ୍ତି 'ପ୍ରାଚୀ-ସାହିତ୍ୟ' ମାଧ୍ୟମରେ ଯେଉଁ ଶୁଭ ସଂକଳ୍ପର ଆହ୍ୱାନ ଦେଇଥିଲେ ତାହାର ପ୍ରତିଧ୍ୱନି ମୋଗଲ ତାମସା ରଚନାରେ ଶବ୍ଦାୟିତ ।

କେବଳ ମୌଳିକତା ନୁହେଁ ରଚନାର ବିଶାଳତା ସାହିତ୍ୟରେ ବହୁ ବିଭବକୁ ସ୍ପର୍ଶ କରିଛି । ତାଙ୍କର ସୃଷ୍ଟିସମ୍ଭାର ମଧ୍ୟରେ ୧୨ଟି ଗଳ୍ପଗ୍ରନ୍ଥ, ୨୧ଟି ସମାଲୋଚନାଧର୍ମୀ ପ୍ରବନ୍ଧ ଓ ୨୦ଟି ସଂପାଦିତ ଗ୍ରନ୍ଥ ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଚାରୋଟି କାବ୍ୟକବିତା ଚାରୋଟି ଶିଶୁ କିଶୋର ରଚନା ଏ ଦୁଇଟି ନାଟ୍ୟକୃତ ମଧ୍ୟ ଅନ୍ତର୍ଭୁକ୍ତ । ଉଚ୍ଚତର ଓ ବୃହତ୍ତର ପରିସର ତାଙ୍କୁ କେତେକ ସମ୍ଭ୍ରାନ୍ତ ସମ୍ବର୍ଦ୍ଧନା ଓ ପୁରସ୍କାରର ଅଧିକାରୀ କରିନାହିଁ । ପ୍ରତିଭାର ଓ ସାଧାରଣ ମାନଦଣ୍ଡର ଊର୍ଦ୍ଧ୍ୱକୁ ଚାଲିଯିବାର ପରିବେଶ ସୃଷ୍ଟି ହୋଇଛି । ତାଙ୍କର 'ବେଦୀ' ଗଳ୍ପକୁ କେନ୍ଦ୍ରକରି ସାହିତ୍ୟ ଓ ସାମାଜିକ ତର୍କବିତର୍କ ସଂପର୍କରେ ବହୁଲୋକ ସଚେତନ ହେଲେ ମଧ୍ୟ ଏପରି ଚର୍ଚ୍ଚା କେବଳ ଏହି ଗୋଟିଏ ଗଳ୍ପକୁ କେନ୍ଦ୍ରକରି ସଂପର୍କିତ ହୋଇନାହିଁ । ଅନ୍ୟ କେତେକ ରଚନା ମଧ୍ୟ ବୌଦ୍ଧିକ ସ୍ତରରେ ଆଲୋଡ଼ନ ସୃଷ୍ଟି କରିଛି । ତାଙ୍କର ଉଚ୍ଚତର ବୁଦ୍ଧିଦୀପ୍ତ ପରିକଳ୍ପନା ବହୁଲୋକଙ୍କର ବୌଦ୍ଧିକ ଜଡ଼ତାକୁ କୁଠାରଘାତ କରି କ୍ରିୟାଶୀଳ କରିଛି । ଜଣେ ସାଧକର ପ୍ରଭାବଶୀଳତାର ମୂଲ୍ୟାୟନ ସମୟରେ ବାକ୍‌ଯୁଦ୍ଧ ଏକ ଅଭିନନ୍ଦନୀୟ ବର୍ତ୍ତିକା କରିଛି । ଜଣେ ସାଧକର ପ୍ରଭାବଶୀଳତାର ମୂଲ୍ୟାୟନ ସମୟରେ ବାକ୍‌ଯୁଦ୍ଧ ଏକ ଅଭିନନ୍ଦନୀୟ ବର୍ତ୍ତିକା ।

ଜଣେ ସାଧକ ସର୍ଜନଶୀଳ ବ୍ୟକ୍ତିତ୍ୱରେ ଯାହା ରହିବାର କଥା ତାହା ଭରପୂର ମାତ୍ରାରେ ପ୍ରଫେସର ବେହେରାଙ୍କ ବ୍ୟକ୍ତିତ୍ୱରେ ରହିଥିଲା । ସେଠାରେ ମୌଳିକତା ଥିଲା, ଉତ୍ପାଦନଶୀଳତା ଓ ପ୍ରଭାବଶୀଳତା ମଧ୍ୟ ଥିଲା । ମାତ୍ର ଏସବୁ ବ୍ୟତୀତ ତାଙ୍କ ବ୍ୟକ୍ତିତ୍ୱରେ ଆଉ ଦୁଇ ତିନୋଟି ବୈଭବ ଏପରି ଭାବରେ ସମନ୍ୱିତ ହୋଇଥିଲା ଯେ ସେ ମାନସିକ ସମ୍ବଳ ଅନ୍ୟମାନଙ୍କ ହୃଦୟକୁ ଗଭୀର ଭାବେ ସ୍ପର୍ଶ କରିଥିଲା । ସେ ସାହିତ୍ୟ-ସାଧକ ହିସାବରେ ଅନ୍ୟର ବୁଦ୍ଧି ଓ ମସ୍ତିଷ୍କକୁ ଯେତିକି ଛୁଇଁ ପାରିଥିଲେ, ଜଣେ ଦରଦୀ ମଣିଷ ହିସାବରେ ଅନ୍ୟର ହୃଦୟ ମଧ୍ୟରେ ଅଧିକ ସ୍ଥାନ ନେଇପାରିଥିଲେ ।

ଏହା ସତ ଯେ ପ୍ରତ୍ୟେକ ସାହିତ୍ୟିକ କିଛି ମାତ୍ରାରେ ମନସ୍ତତ୍ତ୍ୱବିତ୍ । ଏ ଦୃଷ୍ଟିରୁ କୃଷ୍ଣ ବାବୁ ବ୍ୟତିକ୍ରମ ନୁହଁନ୍ତି । ମାତ୍ର ତାଙ୍କର ମନୋବୈଜ୍ଞାନିକ ସତ୍ତାଟି ସାଧାରଣ ସାହିତ୍ୟିକଙ୍କ ପରି 'ସାଧାରଣ' ନୁହେଁ । ଏହା ଅନନ୍ୟ ମାର୍ମିକତାରେ ପରିପୂର୍ଣ୍ଣ । ବିଭିନ୍ନ ପରିପ୍ରେକ୍ଷୀରେ ଏହା ପରିସ୍ଫୁଟ ହୋଇଉଠେ ।

ଓଡ଼ିଆ ଗବେଷଣା ପରିଷଦର ପ୍ରବନ୍ଧ ପାଠଚକ୍ର କାର୍ଯ୍ୟକ୍ରମରେ ପରକୁ ଆପଣାଇ ନେବାର ତାଙ୍କର ନିଆରା ଶୈଳୀଟି ସହଜରେ ଆଖିରେ ପଡ଼େ । ପାଠଚକ୍ର ଆରମ୍ଭରେ ସେ ପ୍ରାୟ ସମସ୍ତ ସଦସ୍ୟମାନଙ୍କର ପରିଚୟ ପ୍ରଦାନ କରନ୍ତି । ଏହା କେବଳ ନାମ ଓ ଗବେଷଣାର ଘୋଷଣା ନୁହେଁ । ଏଥିରେ ସ୍ଥାନ ପାଇଥାଏ ସଂକ୍ଷିପ୍ତ କାର୍ଯ୍ୟାବଳୀ, ଅତୀତର କୃତି, ବର୍ତ୍ତମାନରେ ଗତି ଓ ସଂପର୍କଶୀଳତାର ନକ୍‌ସା । ଗବେଷଣା ପରିଷଦର ସଭ୍ୟମାନଙ୍କୁ ପରିସର ସହିତ ଯୋଡ଼ିବା ପାଇଁ ଏପରି ସୁନ୍ଦର ପ୍ରୟାସ କେବଳ କୃଷ୍ଣ ବାବୁ ହିଁ କରିପାରନ୍ତି ।

ଅନ୍ତରଙ୍ଗତାର କଥା କହିବା ସମୟରେ ଆଉ ଗୋଟିଏ ଦୃଶ୍ୟ ସ୍ୱତଃ ମନକୁ ଆସେ । ପ୍ରବନ୍ଧ ପାଠଚକ୍ର ଓ ଠିକ୍ ସାମୂହିକ ସାରସ୍ୱତ ଏକତ୍ରୀକରଣର ପର୍ବ । ମାତ୍ର ଅନ୍ୟ କେତେକ ସମାବେଶରେ ଯୁକ୍ତିତର୍କ ବାଦବିବାଦର ସମ୍ଭାବନା ମଧ୍ୟ ରହିଛି । କେତେକ ପରିସ୍ଥିତିରେ ସେ ଦୋଷାରୋପ ଓ ଭର୍ତ୍ସନାର ଶରବ୍ୟ ଯେ ହୋଇନାହାନ୍ତି ଏ କଥା ମଧ୍ୟ ନୁହେଁ । ପ୍ରାୟ ସବୁ ସଂଗଠନରେ ଅଳ୍ପ ବହୁତେ ଏପରି ଘଟିଥାଏ । ମାତ୍ର ଏପରି ନକାରାତ୍ମକ ପରିବେଶ ମଧ୍ୟରେ ପ୍ରଫେସର ବେହେରାଙ୍କ ସ୍ମିତହସର କାର୍ପଣ୍ୟ କେହି କେବେ ଦେଖି ନଥିବେ । ସମାଲୋଚନା କଠୋର ଓ ଯୁକ୍ତିହୀନ ହୋଇପାରେ, ସମାଲୋଚନାର ଭାଷା ଅଶାଳୀନ ହୋଇପାରେ । କିନ୍ତୁ କୃଷ୍ଣ ବାବୁଙ୍କ ମୁଖର ହସ ଏବଂ କଥାବାର୍ତ୍ତାର ଅନ୍ତରଙ୍ଗତା ସେମିତି ଅପରିବର୍ତ୍ତିତ ଥାଏ । ସେ ନିରବରେ ଅନ୍ୟମାନଙ୍କ ଅଲକ୍ଷ୍ୟରେ ଏବଂ ନିଜ ଘରର ନିଭୃତ କୋଣରେ ବସି ଜେନ୍-ପ୍ରେରିତ ଧ୍ୟାନ ଅଭ୍ୟାସ କରୁଥିଲେ କି ନାହିଁ, ତାହା କହିପାରିବି ନାହିଁ । କିନ୍ତୁ ବ୍ୟକ୍ତିଗତ ଜୀବନରେ ସ୍ଥିତପ୍ରଜ୍ଞର ଅଭିବ୍ୟକ୍ତି ତାଙ୍କ ବ୍ୟକ୍ତିତ୍ୱରେ ସଦା ପ୍ରକଟିତ ହୋଇଉଠୁଥିଲା । ନିନ୍ଦା ଓ ସମାଲୋଚନାର ପର ମୁହୂର୍ତ୍ତରେ ନିନ୍ଦୁକ ଓ ସମାଲୋଚକମାନଙ୍କ ସହିତ ସହାସ୍ୟ ବଦନରେ କଥାବାର୍ତ୍ତା କରିବା ଏବଂ କରମର୍ଦ୍ଦନ କରିବାର ବାରୋଚିତ ଅଙ୍ଗଭଙ୍ଗୀ କେତେଜଣ ପ୍ରଦର୍ଶନ କରିପାରିବେ ?

କହିବା ଅନାବଶ୍ୟକ ଯେ ତାଙ୍କ ହୃଦୟର ଏପରି ବିଶାଳତା ହିଁ ତାଙ୍କୁ ଏପରି ସଂଗଠନ ସାମର୍ଥ୍ୟ ପ୍ରଦାନ କରିଥିଲା । ଅବିସ୍ମରଣୀୟ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରାଚୀ ସମିତି (୧୯୨୬) ପରେ ଓଡ଼ିଆ ଗବେଷଣା ପରିଷଦ ଏକମାତ୍ର ଗବେଷଣାଭିତ୍ତିକ ପ୍ରତିଷ୍ଠାନ । ପ୍ରଫେସର ବେହେରାଙ୍କ ନେତୃତ୍ୱରେ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥ ସଂପାଦନା ଓ ପ୍ରକାଶନ କେବଳ ସମ୍ଭବ ହୋଇନାହିଁ, ଏକ ଗତିଶୀଳ ପ୍ରକ୍ରିୟାରେ ନିୟମିତ ଭାବରେ ସମ୍ମାନ ଓ ବୌଦ୍ଧିକ ଆଲୋଚନା ସମ୍ଭବପର ହୋଇପାରିଛି । ଏସବୁ ମୂଳରେ ପ୍ରଫେସର ବେହେରାଙ୍କ ବୌଦ୍ଧିକ ନେତୃତ୍ୱରେ ଯେତିକି ଭୂମିକା ରହିଛି, ତାଙ୍କର ହୃଦୟବତ୍ତାର ଅଧିକ ଅବଦାନ ରହିଛି ବୋଲି ଉପଲବ୍ଧି ହୁଏ ।

ପ୍ରଫେସର ବେହେରାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଏକ ସମ୍ମାନିତ ଦିଗ ହେଉଛି ପ୍ରତିଭା ପରିଚାଳନା ଦକ୍ଷତା । ପ୍ରଫେସର ବେହେରା କେବଳ ନିଜେ ଜଣେ କୁଶଳୀ ସ୍ରଷ୍ଟା ନୁହଁନ୍ତି, ସେ ନିର୍ଭର ଦୀର୍ଘ କର୍ମମୟ ଜୀବନ ମଧ୍ୟରେ ଅସଂଖ୍ୟ କୁଶଳୀ କଳାକାର ଓ ସାହିତ୍ୟିକ ନିର୍ମାଣ କରିଛନ୍ତି । କେଉଁ ପ୍ରକାର ମୃତ୍ତିକା ଓ କି ପ୍ରକାର ଜଳବାୟୁ କି ଧରଣର ବୃକ୍ଷଲତା ପ୍ରତି ଉପଯୋଗୀ ତାହା କେବଳ ଜଣେ କୃଶଳୀ ଉଦ୍ୟାନ ରକ୍ଷକ ହିଁ ଜାଣିଥାଏ । ଠିକ୍ ସେହିପରି କୃଷ୍ଣବାବୁ ଅଳ୍ପ ବୟସରୁ ଏହି ପ୍ରତିଭା ପଲ୍ଲବନର ପ୍ରକ୍ରିୟାଟିକୁ ଉପଯୋଗ କରିଛନ୍ତି ।

ଶିକ୍ଷକ ଜୀବନରେ ଆଦ୍ୟ ଭାଗରୁ ସେ ବହୁ ଛାତ୍ରଛାତ୍ରୀଙ୍କୁ ପ୍ରେରଣା ଦେଇଛନ୍ତି । ବହୁ ସହକର୍ମୀ ଅଭିପ୍ରେରିତ ହୋଇଛନ୍ତି । ସାହିତ୍ୟର ମହୁ ଚାଖିବା ପାଇଁ ଯେଉଁ ତରୁଣ ତରୁଣୀ ପ୍ରାରମ୍ଭିକ ପର୍ଯ୍ୟାୟରେ ଗୋଡ଼ କାଢ଼ିଥିଲେ ସେମାନଙ୍କ ମଧ୍ୟରୁ କୃଷ୍ଣବାବୁଙ୍କ ସଂସର୍ଗରେ ଆସିଥିବା ଯୁବପ୍ରାଣସବୁ ତାଙ୍କର ସ୍ନେହସିକ୍ତ ପରାମର୍ଶରେ କର୍ମଚଞ୍ଚଳ ହୋଇଛନ୍ତି । କୃଷ୍ଣବାବୁଙ୍କ ଦେହାବସାନ ପରେ ସ୍ୱତଃସ୍ଫୂର୍ତ୍ତ ଭାବରେ କୃତଜ୍ଞତାର ଭାଷା ଯେପରି ପ୍ରକାଶଲାଭ କରିଛି, ସେଥିରୁ କୃଷ୍ଣବାବୁଙ୍କ ପରି ମହାଦ୍ରୁମର ବିସ୍ତାରିତ ଚେର ଓ ଶାଖା ପ୍ରଶାଖା ସହଜରେ ଅନୁମେୟ । ସେ କେବଳ ଏକ ପ୍ରତିଭା ନୁହଁନ୍ତି, ପ୍ରତିଭାର ସୂତ୍ରଧର ।

ପରିଶେଷରେ ପ୍ରଫେସର କୃଷ୍ଣଚରଣ ବେହେରାଙ୍କ ଭୌତିକ ସ୍ଥିତିର ଅନ୍ତରାଳରେ ସକ୍ରିୟ ଥିବା ସୂକ୍ଷ୍ମ ସ୍ଥିତିଟିକୁ ପ୍ରଣତି ଜଣାଇବା ସମୟରେ ତାହାର ସ୍ୱରୂପକୁ ଅନୁଭବ କରିବାକୁ ହେବ । କେଉଁ ଉପାଦାନଟି ତାଙ୍କ ଏଯାବତ୍ ସକ୍ରିୟ ରଖିଥିଲା ? କି ପ୍ରକାର ଶକ୍ତି ତାଙ୍କ ଜୀବନର ସବୁ ବାଧାବନ୍ଧନକୁ ଅତିକ୍ରମ କରିବାର ସାମର୍ଥ୍ୟ ଦେଇଥିଲା ? କି ପ୍ରକାର ପ୍ରେରଣା ତାଙ୍କର ସୃଜନଶୀଳତାକୁ ଚିରସ୍ରୋତା ରଖିଥିଲା ? କେଉଁ ମନ୍ତ୍ର ତାଙ୍କର ଗତିଶୀଳତାକୁ ବେଗଗାମୀ କରିଥିଲା ?

ସମ୍ଭବତଃ ନିଜ ପାଖରେ ହାରି ନଯିବାର ମାନସିକତା ହିଁ ତାଙ୍କର ପ୍ରାଣଶକ୍ତି । ଏହାର ଅଧିକାରୀ ହୋଇ ସେ ଦୀର୍ଘକାଳର ଶ୍ୱାସଜନିତ ପୀଡ଼ନକୁ ଜୟ କରିଛନ୍ତି । ସାମୟିକ ଭାବରେ ସାମାଜିକ ସମାଲୋଚନା ଅତିକ୍ରମ କରି ଆଗକୁ ଚାଲିଯାଇଛନ୍ତି । ଜୀବନର ସାୟାହ୍ନରେ ପୁତ୍ରଶୋକର ଅଧୀରତାରୁ ବାହାରି ଆସିଛନ୍ତି । ସାଂସାରିକ ଜୀବନର ଜଟିଳତା ଏଡ଼ାଇ ଯାଇଛନ୍ତି । ଅନ୍ତର୍ନିହିତ ସମ୍ଭାବନାକୁ ପୂର୍ଣ୍ଣାଙ୍ଗ ଓ ସୌନ୍ଦର୍ଯ୍ୟମୟ ରୂପ ଦେବାପାଇଁ ତାଙ୍କ ପ୍ରଗାଢ଼ ପ୍ରୟାସ ଓ ଲକ୍ଷ୍ୟବଦ୍ଧତା ସମସାମୟିକ ଜୀବନ ପାଇଁ ଧୃତିସ୍ତମ୍ଭ ହୋଇ ବହୁକାଳ ରହିଯିବ । ❖

ଜାଭିୟର ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର-୧୩

# ଆଚାର୍ଯ୍ୟ ଦେବୋ ଭବ

ଡ. ଅଜୟ କୁମାର ପଟ୍ଟନାୟକ

ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ହିନ୍ଦୀ ସାହିତ୍ୟରେ ଏମ୍.ଏ. ପାସ୍ କରିବା ପରେ ମୋର ପ୍ରବଳ ଇଚ୍ଛା ହେଲା ଆଉ କିଛି ପଢ଼ିବାକୁ, ଜାଣିବାକୁ । ସେତେବେଳେ ରିସର୍ଚ୍ଚକୁ ଆବଶ୍ୟକୀୟ ଯୋଗ୍ୟତା ଭାବରେ ଗଣାଯାଉ ନ ଥିଲା । କିନ୍ତୁ ମୁଁ ରିସର୍ଚ୍ଚ ଆଳରେ କିଛି ଅଧିକ ପଢ଼ିବା ପାଇଁ ଉପନ୍ୟାସକୁ ବାଛିଲି । ହେଲେ ମୋ ଛାତ୍ର ଜୀବନରେ ମୁଁ ଓଡ଼ିଆକୁ କେବେ ଛାଡ଼ିନି । ହିନ୍ଦୀ ଅଫ୍‌ସନାଲ ହେଲେ ହେଁ ଓଡ଼ିଆକୁ ଏମ୍.ଆଇ.ଏଲ୍. ଭାବରେ ରଖିଛି । ଓଡ଼ିଆ ମାଆ ହେଲେ ହିନ୍ଦୀ ମୋ ମାଉସୀ । ଏଣୁ ହିନ୍ଦୀ ଏବଂ ଓଡ଼ିଆ ଉପନ୍ୟାସର ତୁଳନାତ୍ମକ ଅଧ୍ୟୟନ କରିବାକୁ ସ୍ଥିର କଲି । ହିନ୍ଦୀରେ ଓଡ଼ିଶାରୁ ପ୍ରଥମ କରି ପିଏଚ୍.ଡ଼ି. କରୁଥିବାରୁ ଡର ବି ମାଡୁଥାଏ । ହିନ୍ଦୀ ପାଇଁ ତ ମୋ ଗାଇଡ୍ ଅଛନ୍ତି । ଓଡ଼ିଆ ଉପନ୍ୟାସ ପାଇଁ ମୋତେ ବାଟ କିଏ ଦେଖାଇବ ? ବହୁ ବୁଝାବୁଝି ପରେ ଖବର ପାଇଲି ଯେ ଜଣେ ମାତ୍ର ଗବେଷକ ଏ ବିଷୟରେ କାମ କରିଛନ୍ତି ଆଉ ସେ ହେଉଛନ୍ତି ଡ. କୃଷ୍ଣଚରଣ ବେହେରା । ଉତ୍ସାହିତ ହୋଇ ଭଦ୍ରକ କଲେଜ ଠିକଣାରେ ଚିଠିଟିଏ ଲେଖିଲି । କିଛି ତ ସନ୍ଧାନ ମିଳିବ, ଏଇ ଆଶାରେ । ମାତ୍ର କିଛି ଦିନର ବ୍ୟବଧାନରେ ଉତ୍ତର ଆସି ପହଞ୍ଚିଲା । ବହୁବାର ତାକୁ ପଢ଼ିଲି । ହେଲେ ଗୋଟିଏ ଧାଡ଼ିରେ ମୋ ଦୃଷ୍ଟି ଅଟକିଲା- 'ଓଡ଼ିଆ ସାହିତ୍ୟରେ କିଛି କାମ କରିବାକୁ ହେଲେ ନିଜ ଶିଙ୍ଗରେ ମାଟି ନିଜେ ତାଡ଼ିବାକୁ ହେବ ।" ଡ. ବେହେରାଙ୍କର ଏଇ ଧାଡ଼ିଟିକୁ ମୁଁ ଗୁରୁମନ୍ତ୍ର ମନେକରି ନିଜ ଶିଙ୍ଗରେ ମାଟି ତାଡ଼ିବାକୁ ଅଣ୍ଟା ଭିଡ଼ିଲି । ୟୁଜିସି ତରଫରୁ ଦୁଇହଜାର ଟଙ୍କାର ଅନୁଦାନ ପାଇ ଅଭିଯାନ ଆରମ୍ଭ କଲି । ବିଷୟ ସମ୍ପର୍କିତ କିଛି ବହି ଓଡ଼ିଶାରୁ କିଣିଲି । ଉତ୍କଳ ବିଶ୍ୱବିଦ୍ୟାଳୟରୁ ନିରାଶ ହୋଇ ଫେରିବା ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ବରଗଡ଼ ପାଠାଗାରରୁ କିଛି ସାମଗ୍ରୀ ପାଇଲି । ସେତେବେଳେ ଦୂରଭାଷର ସେତେ ପ୍ରଚଳନ ନ ଥିଲା । ଏଣୁ ମୁଁ ଚିଠି ମାଧ୍ୟମରେ ଡ. ବେହେରାଙ୍କ ସହ ଯୋଗାଯୋଗ ଜାରି ରଖିଥାଏ । ତାଙ୍କରି ପରାମର୍ଶରେ ବିଭିନ୍ନ ସଂସ୍ଥା ଓ ବ୍ୟକ୍ତି ବିଶେଷଙ୍କୁ ଭେଟୁଥାଏ । ଶେଷରେ

କଲିକତାର ନ୍ୟାସନାଲ ଲାଇବ୍ରେରୀରେ ଯାଇ ଅଠରଦିନ ରହିବା ପରେ ଯାଇ ଓଡ଼ିଆ ଉପନ୍ୟାସର ବିଧିବଦ୍ଧ ସୂଚୀଟିଏ ପ୍ରସ୍ତୁତ କରିପାରିଲି । ଏଥିପାଇଁ ଅବଶ୍ୟ ସାରଙ୍କ 'ଗୁରୁମନ୍ତ୍ର' ଅମୋଘ ଅସ୍ତ୍ର ସାବ୍ୟସ୍ତ ହେଲା ।

୧୯୭୧ରେ ଏମ୍.ଏ. ପାସ୍ କରି 'ଓଡ଼ିଶା ଲୋକସେବା ଆୟୋଗ'କୁ ଅଧ୍ୟାପକ ଚାକିରି ପାଇଁ ଆବେଦନ କରି ସାରିଥାଏ । କୌଣସି କାରଣରୁ ଇଣ୍ଟରଭ୍ୟୁ ଦୁଇବର୍ଷ ବିଳମ୍ବିତ ହେଲା । ତା' ଭିତରେ ମୁଁ ଥିସିସ୍ ଜମା କରି ପିଏଚ୍.ଡ଼ି. ପାଇଯାଇଥାଏ । ଜୁନ୍‌ରେ ଇଣ୍ଟରଭ୍ୟୁ ହୋଇ ଜୁଲାଇରେ ଏମ୍.ପି.ସି. କଲେଜ, ବାରିପଦାରେ ନିଯୁକ୍ତି ପାଇଲି । ଅପୂର୍ବ ସଂଯୋଗ ହେଲା ଯେ ଡ. ବେହେରା ବି ସେଇ କଲେଜରେ ନିଯୁକ୍ତି ଆଦେଶ ପାଇବା ମାତ୍ରେ ମୁଁ ସାରଙ୍କୁ ଚିଠିଟିଏ ଲେଖି ଜଣାଇଦେଲି ଯେ ମୁଁ ଯଥାଶୀଘ୍ର ଏମ୍.ପି.ସି.ରେ ଜଏନ୍ କରିବା ପାଇଁ ଆସି ଆପଣଙ୍କୁ ଭେଟିବି ।

ଭୋର ସମୟରେ ବାରିପଦାରେ ପହଞ୍ଚି ଗଣେଶ ହୋଟେଲ୍‌ରେ ରୁମ୍‌ଟିଏ ନେଇ ରହିଲି । କଲେଜରେ ଜଏନ୍ କରିବା ପରେ ସନ୍ଧ୍ୟାରେ ଜଣେ ବନ୍ଧୁଙ୍କ ସହାୟତାରେ ଘର ଖୋଜା ଅଭିଯାନରେ ବାହାରିଲି । ତା' ପରଦିନ ସନ୍ଧ୍ୟାରେ ଡ. ବେହେରାଙ୍କ କ୍ୱାର୍ଟସ୍ ଠାବ କରି ଯାଇ ପହଞ୍ଚିଲି । ଉଭୟେ ଉଭୟଙ୍କୁ କେବେ ଦେଖି ନ ଥିଲୁ । ଏଣୁ ସାରଙ୍କୁ ସମ୍ମୁଖରେ ଦେଖି ମୁଁ ପଚାରିଲି, 'ମୁଁ ଡ. କୃଷ୍ଣଚରଣ ବେହେରାଙ୍କୁ ଦେଖା କରିବାକୁ ଆସିଛି ।' ସେ ସାଙ୍ଗେ ସାଙ୍ଗେ ହସି ହସି ପଚାରିଲେ, 'ଆପଣ କୋଉଠୁ ଆସିଲେ ? ଭିତରକୁ ଆସନ୍ତୁ ।' ମୁଁ ପ୍ରଣାମ କରି କହିଲି- 'ଆପଣ ମୋ ଚିଠି ପାଇଥିବେ । ମୁଁ ଗତକାଲି ଏମ.ପି.ସି. କଲେଜରେ ଜଏନ୍ କରିଛି । ମୋ ନାଁ ଅଜୟ କୁମାର ପଟ୍ଟନାୟକ ।' ସେ ଖୁବ୍ ଆତ୍ମୀୟତାର ସହ କହିଲେ, 'ଅଜୟ ? ତୁମେ ସେ କଥା କହୁନ ! କାହିଁ, ତମ ଜିନିଷପତ୍ର କାହିଁ ? ତୁମ ପାଇଁ (ପାଖ ରୁମ୍‌କୁ ଦେଖାଇ କହିଲେ) ଏଇ ରୁମ୍‌ଟି ପରିଷ୍କାର କରି ରଖାଯାଇଛି । ଘର ପାଇଲା ଯାଏ ତୁମେ ଏଇଠି ରୁହ, ହୋଟେଲ୍‌ରେ କାହିଁକି ରହିବ ?' 'ମୁଁ କହିଲି, 'ନାଁ ସାର୍' ଜଣେ ସହପାଠୀ ଷ୍ଟେଟ୍ ବ୍ୟାଙ୍କରେ ଅଛନ୍ତି । ତାଙ୍କ ମେସ୍‌ରେ ଏଡ଼ଜଷ୍ଟ କରିବାକୁ କହିଛନ୍ତି ।' ତା'ପରେ ମାଉସୀଙ୍କୁ ଡାକି ପରିଚୟ କରେଇଲେ ଓ ଚା' ଜଳଖିଆ ବରାଦ କଲେ । ଏତେ ଆନ୍ତରିକତା ପାଇବି ବୋଲି ମୁଁ କଳ୍ପନା ସୁଦ୍ଧା କରି ନ ଥିଲି ।

ତା'ପରେ ଷ୍ଟାଫ୍ କମନ୍ ରୁମ୍‌ରେ ପ୍ରାୟ ଦେଖାହୁଏ । ଏତେ ବରିଷ୍ଠ ରିଡ଼ର ହୋଇଥିଲେ ସୁଦ୍ଧା ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଯୁବସୁଲଭ ଉତ୍ସାହ ଓ ଉଦ୍ଦୀପନା ହେତୁ ତରୁଣ ଅଧ୍ୟାପକମାନେ ପ୍ରାୟ ତାଙ୍କ ପାଖରେ ଭିଡ଼ ଜମାଇଥାନ୍ତି । ଅନ୍ୟ ବରିଷ୍ଠ ବେହେରାମାନେ ପ୍ରାୟ ଏକା ଏକା ବସିଥାନ୍ତି । ମୁଁ କମନ୍ ରୁମ୍‌ରେ ପହଞ୍ଚିଲା ମାତ୍ରେ ସାରଙ୍କୁ ଖୋଜେ । କାରଣ ତାଙ୍କ ପାଖରେ ବସିଲେ ଅନେକ କଥା ଜାଣିବାକୁ, ଶିଖିବାକୁ

ମିଳେ । କ୍ଲାସ୍ ନ ଥିଲେ ସେ ପ୍ରାୟ କମନ ରୁମ୍‌ରେ ଥାଆନ୍ତି ଅଥବା ଲାଇବ୍ରେରୀରେ । ଏମ୍.ପି.ସି. କଲେଜ ବିଲଡ଼ିଂଟା ଯେହେତୁ ପୂର୍ବେ ରାଜାନଅର ଥିଲା, ରାଣୀ ହଂସପୁର ଥିବା ସ୍ଥାନଟି ଏବେ ଲାଇବ୍ରେରୀ ପାଲଟିଛି । ସାର୍‌ଙ୍କୁ ଖୋଜି ଖୋଜି ସେଠି ଯାଇ ପହଞ୍ଚିଲେ, ସେ ତାଙ୍କ କାମ ଅଧା ରଖି ପ୍ରଥମେ କିଛି ନୂଆ ବହି କିମ୍ୱା ମାଗାଜିନ ପଢ଼ିବାକୁ ମୋତେ କୁହନ୍ତି । ବେଳେବେଳେ ଅଧ୍ୟାପକ ରାଧାମୋହନ ମିଶ୍ର ଆମ ସହ ଯୋଗଦିଅନ୍ତି । ସେଇଠୁ ସିଧା ଚାହାଖଟିକୁ ସମସ୍ତେ ସାଙ୍ଗ ହୋଇ ଯାଉ । ବାଟସାରା ଓ ଦୋକାନରେ ବସି ଗପିବା ବେଳେ କେତେବେଳେ ଲୀଳା, ସୁଆଙ୍ଗ, ମୋଗଲ ତାମସା ସମ୍ପର୍କରେ ତ ଆଉ କେତେବେଳେ ମୟୂରଭଂଜ ପ୍ରାଚୀନ ଐତିହ୍ୟ ସମ୍ପର୍କରେ ଚର୍ଚ୍ଚା ହୁଏ । ସଂସ୍କୃତ ପଣ୍ଡିତ ରାମଚନ୍ଦ୍ର ତ୍ରିପାଠୀ ସାର୍‌ଙ୍କର ଆଉ ଜଣେ ଶ୍ରୋତା ଭାବରେ ବେଳେବେଳେ ଖଟିରେ ଆସି ପହଞ୍ଚନ୍ତି ।

ଦିନକର କଥା । କମନ୍ ରୁମ୍‌ରେ ଦେଖାହେବାରୁ ସାର୍ କହିଲେ, ତମ କ୍ଲାସ୍ ସରିଗଲେ ଚାଲିଯିବନି । ମୋତେ ଏଇଠି ଦେଖା କରିବ, କାମ ଅଛି । ଚାରିଟା ପରେ ଦେଖାହେଲା କହିଲେ, "ଚାଲ, ଆମର ଜଣେ ଅନର୍ସ ଛାତ୍ରୀଙ୍କ ଘରକୁ ଯିବା । ତା'ମାଆଙ୍କର ମଥା ଖରାପ ହୋଇ ଘରୁ କୁଆଡ଼େ ଚାଲିଯାଇଛନ୍ତି । ବିଚାରୀ ଖବର ପାଇ କାନ୍ଦି କାନ୍ଦି ଘରକୁ ଗଲା ।" ଆମେ ଯାଇ ଘର ପଚାରି ପହଞ୍ଚିଲୁ । ସେତେବେଳକୁ ସାଇ ଲୋକେ ଖୋଜାଖୋଜି କରି ତାଙ୍କୁ ଘରକୁ ନେଇ ଆସିଥାନ୍ତି । ଆମେ ସେଇ ଭଦ୍ରମହିଳାଙ୍କୁ ଭେଟିଲୁ । ସେ ମୂକପ୍ରାୟ । ଛାତ୍ରୀଟିକୁ ପ୍ରବୋଧନା ଦେଇ ଆମେ ଫେରିଲୁ । ଦିନ ନଅଟାବେଳୁ ଘର ଛାଡ଼ିଥିବା ଡ. ବେହେରା ସେ ଦିନ ରାତି ଆଠଟାରେ ଘରେ ଯାଇ ପହଞ୍ଚିଲେ । ଏଭଳି ଛାତ୍ରଛାତ୍ରୀଙ୍କ ସମସ୍ୟା ସାଙ୍ଗକୁ ତାଙ୍କ ପରିବାର ପ୍ରତି ସମ୍ବେଦନଶୀଳ ହୋଇ ଉଠିବା ମୋ ପାଇଁ ଏକ ଅଭୂତ ପୂର୍ବ ଅନୁଭୂତି ।

ଓଡ଼ିଆ ବିଭାଗର ସେମିନାର ହେଉ କିମ୍ୱା ପିକନିକ, ମୋତେ ସବୁଠିକୁ ନିମନ୍ତ୍ରଣ କରନ୍ତି ଡ. ବେହେରା । ବାହାରକୁ ଯେଉଁଆଡ଼େ ଗଲେ ବି ମୋତେ ପ୍ରାୟ ସାଙ୍ଗରେ ଯିବା ପାଇଁ ଆଗ୍ରହ କରନ୍ତି । ଝିଅପିଲାଙ୍କୁ ନେଇ ଓଡ଼ିଶାରେ ପ୍ରଥମଥର ପାଇଁ ଗଢ଼ିଉଠିଥିବା ନିଆରା ନାଟ୍ୟସଂସ୍ଥା ଆସି ପହଞ୍ଚିଲା ବାରିପଦାରେ । ସଂସ୍ଥା ମାଲିକ, ନିର୍ଦ୍ଦେଶକ, ପ୍ରଯୋଜକ ଶ୍ରୀଯୁକ୍ତ ବିଜୟ କେତନ ମଙ୍ଗରାଜ କଲେଜରେ ପହଞ୍ଚି ଉଦ୍‌ଘାଟକ ଭାବରେ ଯୋଗଦେବା ପାଇଁ ଡ. ବେହେରାଙ୍କୁ ନିମନ୍ତ୍ରଣ କଲେ । ସାର୍ ମୋତେ ବି ସାଙ୍ଗରେ ଯିବାକୁ କହିଲେ । ଆମେ ଗଲୁ । ଉଦ୍‌ଘାଟନୀ ଭାଷଣରେ ସାର୍ କମ୍ ସମୟରେ ବହୁ ତଥ୍ୟ ଉପସ୍ଥାପିତ କଲେ । ନାଟକ ଦେଖି ଫେରିଲା ବେଳେ ମଙ୍ଗରାଜ ଦମ୍ପତି ଆସି ତାଙ୍କର ଦୁଃଖ ଜଣାଇଲେ ଯେ ଆର୍ଥିକ ଅନଟନ ଭିତରେ ବେଳେବେଳେ ଝିଅଙ୍କ ପାଇଁ ନଡ଼ିଆ ତେଲ ଯୋଗାଡ଼ କରିବା ବି କଷ୍ଟକର ହୋଇପଡୁଛି । ସାର୍‌ଙ୍କ ଯିବା ଆସିବା

ରିକ୍ସା ଖର୍ଚ୍ଚ ପାଇଁ ଲଫାପାଟିଏ ଦେଲାବେଳକୁ ସାର୍ ଖୁବ୍ ସହୃଦୟତାର ସହ ପ୍ରତ୍ୟାଖ୍ୟାନ କଲେ । ଓଲଟି ଝିଅପିଲାଙ୍କ ପାଇଁ ନଡ଼ିଆ ତେଲ କିଣିବାକୁ ଶହେ ଟଙ୍କିଆ ନୋଟଟିଏ ତାଙ୍କ ପକେଟରେ ଗୁଞ୍ଜିଦେଇ ଆସିଲେ ।

ବାରିପଦା ସାହିତ୍ୟ ସଂସଦ ବହୁବର୍ଷ ହେଲା ସ୍ଥାଣୁ ଅବସ୍ଥାରେ ଥିଲା । ଡ. ବେହେରାଙ୍କ ନେତୃତ୍ୱରେ ପୁଣି ସରଗରମ ହୋଇଉଠିଲା । ସେ ବ୍ୟକ୍ତିଗତ ଭାବେ ଅଧ୍ୟାପକମାନଙ୍କୁ ଭେଟି ସଭାରେ ଯୋଗ ଦେବା ପାଇଁ ଅନୁରୋଧ କରୁଥିଲେ । ପୂର୍ବତନ ସ୍କୁଲ ଡିପି.ଆ.ଇ. ଶ୍ରୀ ଗୋକୁଳ ଚନ୍ଦ୍ର ଶତପଥୀ ଆମର ଏକପ୍ରକାର ସ୍ଥାୟୀ ଅତିଥି ଥିଲେ କହିଲେ ଚଳେ । ସାର୍‌ଙ୍କ ଅନୁରୋଧ ସେ ଆଦୌ ଏଡ଼ାଇ ପାରନ୍ତି ନାହିଁ । ଛାତ୍ରଛାତ୍ରୀଙ୍କ ମଧ୍ୟରେ ସାହିତ୍ୟ ସୃଜନକୁ ତୀବ୍ରତର କରିବା ପାଇଁ ଡ. ବେହେରା ଗୋଟିଏ ଅନୁଷ୍ଠାନ ଗଠନ କରିଥିଲେ- 'ସାହିତ୍ୟିକା' । ଆମ ସାଙ୍ଗରେ ଇଂରେଜୀ ଅଧ୍ୟାପକ ସନତଦାସ ପଟ୍ଟନାୟକ, ଓଡ଼ିଆ ଅଧ୍ୟାପକ ମୋହନଲାଲ ସାହୁଙ୍କ ଭଳି ସ୍ଥାନୀୟ ବ୍ୟକ୍ତି ମଧ୍ୟ ଯୋଗଦେଉଥିଲେ । କଲେଜର ଚାରିକାନ୍ଥ ଭିତରୁ ବାହାରି ଆମେ କେବେ ବାଣିଆ ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣରେ ଗଳ୍ପ, କବିତା ଆସର କରୁଥିଲୁ ତ କେତେବେଳେ କେଉଁ ଉଦ୍ୟାନ ଭିତରେ । ନବମ ଶ୍ରେଣୀର ଛାତ୍ର ଶୁଭକାନ୍ତ ବେହେରା ବି ସେଥିରେ ଯୋଗଦେଇ କବିତା ପାଠ କରୁଥିଲେ । ପୁଣି ସେ ସବୁ ଉପରେ ଚର୍ଚ୍ଚା ହେବା ଦ୍ୱାରା ଛାତ୍ରଛାତ୍ରୀ ଉତ୍ସାହିତ ହୋଇ ଅଧିକ ସଂଖ୍ୟାରେ ଯୋଗ ଦେଉଥିଲେ । ବାରିପଦାରୁ ବଦଳି ହୋଇ ଆସିଲାବେଳେ ସାର୍ ମୋତେ ତା'ର ଦାୟିତ୍ୱ ଦେଇ ଆସିଥିଲେ ।

ପାଖାପାଖି ଦଶବର୍ଷ ପରେ ପୁଣି ଡ. ବେହେରାଙ୍କ ସହ ଭେଟ ହେଲା ରେଭେନ୍ସା କଲେଜରେ । ସେତେବେଳେ ଡ. କ୍ଷେତ୍ରବାସୀ ନାୟକ ମଧ୍ୟ ରେଭେନ୍ସାରେ ଥାଆନ୍ତି । ଉଭୟଙ୍କ ଆଗ୍ରହରେ ଡ. ମନୀନ୍ଦ୍ର ମହାନ୍ତିଙ୍କ ସ୍ଥାନରେ ମୋତେ ସହଯୋଗୀ ସମ୍ପାଦକ ଭାବରେ 'ଓଡ଼ିଆ ଗବେଷଣା ପରିଷଦ'ରେ ଯୋଗ ଦେବାକୁ ହେଲା । ଏଣିକି ନିକଟତା ଆହୁରି ଆହୁରି ବଢ଼ିଲା । ପାଠଚକ୍ରରେ ତ ଯୋଗଦେଉ । ତା' ବାଦେ କେବେ 'ଏଷଣା' ନେବା ପାଇଁ, କେବେ ରିଭ୍ୟୁ ନିମନ୍ତେ ବହି ନେବା ପାଇଁ କିମ୍ବା ସାଂଗଠନିକ ଆଲୋଚନା ପାଇଁ ଡ. ବେହେରା ଡାକିଥାନ୍ତି । ଆସି ପହଞ୍ଚିଲେ ପ୍ରଥମେ ପଚାରନ୍ତି, ଘରୁ ଆସିଲ ନା କଲେଜରୁ ? ଯଦି କଲେଜରୁ ଆସିଥାଏ, ତେବେ ସାଙ୍ଗେ ସାଙ୍ଗେ ଡାକ ପକାନ୍ତି ଘରୁ କିଛି ଖାଇବାକୁ ଆଣିବା ପାଇଁ । ପରିବାର ଲୋକେ ବି କେବେ ଡ. ବେହେରାଙ୍କ କଥାକୁ ତଳେ ପକାନ୍ତିନି । ବେଳେବେଳେ ସାର୍‌ଙ୍କ ପାଖରେ ଏତେ ଭିଡ଼ ହୁଏ ଯେ ସମସ୍ତଙ୍କୁ ଚର୍ଚ୍ଚା କରିବା ତଥା କିଛି ଲୋକଙ୍କୁ ଖୁଆଇ ପିଆଇ ଘରେ ରଖିବାରେ ବି ପରିବାର ତରଫରୁ କେବେ ଅନାଗ୍ରହର ଆଭାସ ମୁଁ ପାଇନି । ବରଂ ସମସ୍ତେ ସାର୍‌ଙ୍କ ଇଚ୍ଛାକୁ ସମ୍ମାନ ଦେଇଥାନ୍ତି । ଆମ ପୂର୍ବାଚାର୍ଯ୍ୟମାନେ କହିଥିବା 'ଉଦାର ଚରିତାନାମ୍

ବସୁଧୈବ କୁଟୁମ୍ବକମ୍' ଭଳି ଉକ୍ତିକୁ ବାସ୍ତବରେ ସାର୍ଥକ କରନ୍ତି ଡ. କୃଷ୍ଣଚରଣ ବେହେରା । 'ଓଡ଼ିଆ ଗବେଷଣା ପରିଷଦ' ତାଙ୍କ ପାଇଁ ସଂସ୍ଥା ନୁହେଁ, ପରିବାର ସଦୃଶ । ସେଥିରେ ସମସ୍ତ ସଦସ୍ୟ-ସଦସ୍ୟାଙ୍କ ପରିବାରକୁ ନିଜ ପରିବାରର ଅଭିନ୍ନ ଅଂଗ ମନେକରନ୍ତି ସେ । ପ୍ରତ୍ୟେକ ପରିବାରର ହାନିଲାଭରେ ସାମିଲ ହୋଇ ସମ୍ବେଦନା ଜଣାନ୍ତି । ଆଉ ଏଇ 'ପରିଷଦ' ମାଧ୍ୟମରେ ଓଡ଼ିଆ ସାହିତ୍ୟ ଜଗତ ସହ ମଧ୍ୟ ସେଇଭଳି ଅନ୍ତରଂଗତା ସ୍ଥାପନ କରନ୍ତି ।

ସୁଦୂର ଏଲାହାବାଦରୁ ମୋ ଭଳି ଜଣେ ଅଜଣା, ଅନାମଧେୟ ବ୍ୟକ୍ତି ଯେତେବେଳେ ଡ. ବେହେରାଙ୍କୁ ଚିଠିଟିଏ ଲେଖିଲା, ସେ ଅବିଳମ୍ବେ ତା'ର ଉତ୍ତର ଦେଲେ । ଦୂର ଦୂରାନ୍ତରରୁ, ପୁରପଲ୍ଲୀରୁ ଏଭଳି ଅନେକ ପତ୍ର ଆସେ । ବିନା ଦ୍ୱିଧାରେ ସେସବୁର ଉତ୍ତର ଦିଅନ୍ତି ସେ । ଏତେ ବ୍ୟସ୍ତତା ଭିତରେ ଆପଣ କେମିତି ସମସ୍ତଙ୍କ ଚିଠିର ଉତ୍ତର ଦେଇପାରୁଛନ୍ତି ବୋଲି ଦିନେ ମୁଁ ତାଙ୍କୁ ପଚାରିଥିଲି ଓ ସେ କହିଥିଲେ ଯେ ଏଇ କଥାଟା ମୁଁ ଡ. ହରେକୃଷ୍ଣ ମହତାବଙ୍କ ଠାରୁ ଶିଖିଛି । ସେ ତ ମୋଠାରୁ ବେଶି କାର୍ଯ୍ୟବ୍ୟସ୍ତ । ସେ ଯଦି ଏ କାମ କରି ପାରୁଛନ୍ତି, ତେବେ ମୁଁ ବା କାହିଁକି ପାରିବିନି ? ଅନେକ ସମୟରେ ଆଜ୍‌ମାରେ ପୀଡ଼ିତ ହୋଇ ଅଣନିଃଶ୍ୱାସୀ ହୋଇ ପଡୁଥିଲାବେଳେ ବି ପିଲାଙ୍କର ଥେସିସ୍ ସଂଶୋଧନ କରୁଥାନ୍ତି ଅଥବା କେହି ପ୍ରବନ୍ଧଟିଏ ଦେଖାଇ ମାର୍ଗଦର୍ଶନ ଚାହୁଁଥିଲେ, ତା' କଥା ବୁଝନ୍ତି । ଏସବୁ ସତ୍ତ୍ୱେ ସମୟ ସଚେତନତାକୁ ସବୁବେଳେ ସେ ଗୁରୁତ୍ୱ ଦିଅନ୍ତି । ନିଜ କୃତିତ୍ୱରେ ସେ ଯେତେ ଖୁସି ହୁଅନ୍ତି, ଅନ୍ୟର କୃତିତ୍ୱ ଦେଖିଲେ ତା'ଠାରୁ କମ୍ ଖୁସି ହୁଅନ୍ତି ନାହିଁ । ଯେତେ ପ୍ରତିକୂଳ ପରିସ୍ଥିତିରେ ବି ଧୈର୍ଯ୍ୟ-ଚ୍ୟୁତି ଘଟିବା କିମ୍ବା କାହା ଉପରେ ଦୋଷାରୋପ କରି ରାଗିବା ମୁଁ କେବେ ଦେଖିନାହିଁ । ତେବେ ସ୍ଥିତପ୍ରଜ୍ଞ ଆଉ କାହାକୁ କହିବା ?

ଆମ ଶାସ୍ତ୍ରରେ 'ପଞ୍ଚପିତା' କଥା କୁହାଯାଇଛି, ଯେଉଁଥିରେ ଜନ୍ମଦାତା ପିତା, ଶ୍ୱଶୁର ଓ ଗୁରୁ ଇତ୍ୟାଦିଙ୍କୁ ପିତାର ଗୌରବ ପ୍ରଦାନ କରାଯାଇଛି । ଏ ଦେଶର ମହାନ୍ ଗୁରୁ ପରମ୍ପରାର ଦାୟାଦ ଭାବେ ମୁଁ ଡ. କୃଷ୍ଣଚରଣ ବେହେରାଙ୍କୁ ମୋ ପାଇଁ ସେଇ ପଞ୍ଚପିତାର ଆସନରେ ଦେଖି ଆସିଛି । ମହାନ ଦାର୍ଶନିକ ଡ. ସର୍ବପଲ୍ଲୀ ରାଧାକୃଷ୍ଣନ ଥରେ କହିଥିଲେ- 'A lamp cannot light another unless it continues to burn its own flame. Similarly a teacher can not teach unless he continues to learn. ଡ. ବେହେରା ମର୍ମେ ମର୍ମେ ତାକୁ ଅନୁଭବ କରିଥିଲେ ଓ ଅନ୍ୟମାନଙ୍କୁ ଯାହା କରିବାକୁ କହୁଥିଲେ, ତାକୁ ଆଚରଣରେ ନିଜେ କରି ଦେଖାଉଥିଲେ । ସେଇଥିପାଇଁ ସେ ଆଚାର୍ଯ୍ୟ 'ଗୁରୁ' । ❖

# ପରମାର୍ଥୀ କୃଷ୍ଣଚରଣ

ଡ. ମହେନ୍ଦ୍ର କୁମାର ମିଶ୍ର

ବିଗତ ୪୦ବର୍ଷ ଧରି ଓଡ଼ିଆ ସାହିତ୍ୟ ଗବେଷଣା କ୍ଷେତ୍ରରେ ଓଡ଼ିଆ ଗବେଷଣା ପରିଷଦ ତରଫରୁ ଯେଉଁ ଗୁଣାତ୍ମକ ବିକାଶ ହୋଇଛି ତା'ର କର୍ଣ୍ଣଧାର ଥିଲେ ପ୍ରଫେସର କୃଷ୍ଣଚରଣ ବେହେରା । ଓଡ଼ିଆ ସାହିତ୍ୟ ସାଧନାର ସର୍ଜନା ଓ ସମୀକ୍ଷା ଉଭୟ କ୍ଷେତ୍ରରେ ସେ ଥିଲେ ଜଣେ ଚର୍ଚ୍ଚିତ ଓ ସମ୍ମାନିତ ବ୍ୟକ୍ତି । ଏହା ଛଡ଼ା ଅଧାପନା ଓ ତାଙ୍କର ମୁଖ୍ୟ ସାଧନା ପୀଠ ଥିଲା । ହେଲେ ଥରେ ଅଧାପକ ହେଲେ ଲେଖା ପଢ଼ା ଛାଡ଼ି ବିଷୟ ବିକାରରେ ମାତିବା ପରି ପ୍ରବଣତା ଏବେ ଆମ ସମୟରେ ଯିମିତି ଦେଖାଯାଉଛି, ତାହା ପ୍ରଫେସର ବେହେରାଙ୍କ ସମୟରେ ନଥିଲା ।

ଓଡ଼ିଆ ଗବେଷଣା ପରିଷଦର ସୃଷ୍ଟି ୮୦ ଦଶକରେ । କ୍ଷେତ୍ରବାସୀ ନାୟକ, ଚିତ୍ତରଞ୍ଜନ ଦାସ, ଗଗନେନ୍ଦ୍ର ନାଥ ଦାଶ, ଶୈଳଜରବି, ସୁଧୀର ଚନ୍ଦ୍ର ବେହୁରା, ହରେକୃଷ୍ଣ ପାତ୍ର ପ୍ରମୁଖଙ୍କ ନିଃସ୍ୱାର୍ଥ ଓ ପରମାର୍ଥିକ ଚିନ୍ତନ ଓ ଆଚରଣ ଏହି ପରିଷଦର ମହିମାକୁ ଓଡ଼ିଆ ଗବେଷଣା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇଥିଲା ।

୧୯୮୨ରେ ମୁଁ ଖଡ଼ିଆଳ ସାହିତ୍ୟ ସମିତିରେ ଡ. କ୍ଷେତ୍ରବାସୀ ନାୟକ, ଡ. ବୈରାଗୀ ଚରଣ ଜେନା ଓ ପ୍ରଫେସର ବେହେରାଙ୍କୁ ଶୁଣିଥିଲି । ପରେ ମୁଁ ଓଡ଼ିଆରେ ଏମ୍.ଏ. କଲି ଓ ଗବେଷଣା କରି ପି.ଏଚ୍.ଡ଼ି ପାଇଲି । ହେଲେ ମୋ ସାଧନା ଥିଲା ଏକାନ୍ତ ଭାବେ ତୃଣମୂଳ ସ୍ତରର । ମୋ ଲେଖାସବୁ ଆଦିବାସୀ ଓ ଲୋକ ସଂସ୍କୃତିକୁ ନେଇ । ପ୍ରଫେସର ବେହେରା ମୋ ଲେଖାଗୁଡ଼ିକୁ ଏଷଣାରେ ସ୍ଥାନ ଦେବା ଆରମ୍ଭ କଲେ ୧୯୮୭ ପରେ ପରେ । ସେହି ଦିନରୁ ଅନେକ ଚିନ୍ତା ଓ ଯୁକ୍ତିନିଷ୍ଠ ତଥା ଆବିଷ୍କାରାତ୍ମକ ଲେଖା ସବୁ ଲେଖିଛି । ମୋତେ ସେ ପ୍ରବନ୍ଧ ରଚନାରେ ପରାମର୍ଶ ଦେଉଥିଲେ । ବିଶେଷତଃ ଓଡ଼ିଆ ସାହିତ୍ୟର ଆନ୍ତଃ-ଶୃଙ୍ଖଳିତ ଅଧ୍ୟୟନ ପାଇଁ ପ୍ରେରଣା ଦେଉଥିଲେ । ଚିତ୍ତରଂଜନ ଦାସଙ୍କ ଲେଖା, ତଥା ଏଷଣାର ଆରମ୍ଭକାଳୀନ ଲେଖାସବୁ ମୋତେ ଜଣେ ପ୍ରାବନ୍ଧିକ ଓ ସମାଲୋଚକଟିଏ ହେବା ପାଇଁ ପ୍ରେରିତ କରିଛି ।

୧୯୯୨ରେ ମୋ ପ୍ରବନ୍ଧ ସଂକଳନ ପଶ୍ଚିମ ଓଡ଼ିଶାର ଲୋକସଂସ୍କୃତିର ବିଶ୍ଳେଷଣାତ୍ମକ ସମୀକ୍ଷା କରିଥିଲେ ଶୈଳଜରବି ଏଷଣା ମୁଖପତ୍ରରେ । ଏହି ବିଶ୍ଳେଷଣ ମୋ ଜାଣିବାରେ ମୋ ଲେଖାକୁ ନେଇ ଚର୍ଚ୍ଚା କରିବା ପ୍ରଥମ ଓ ଶେଷ । ସମ୍ଭବତଃ ସଂସ୍କୃତିର ବହୁ ଆୟାମକୁ ଅବଗାହନ କରି ନ ଥିଲେ, ଲୋକସଂସ୍କୃତିପରି ଏକ ବହୁଦିଗସ୍ପର୍ଶୀ ଅଧ୍ୟୟନ ସହଜ ନୁହେଁ । ଓଡ଼ିଆ ଗବେଷଣା ପରିଷଦ ତରଫରୁ ମୋତେ ୧୯୯୨ରେ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ମିଳିଲା । ପ୍ରଫେସର ବେହେରା ପୁରସ୍କାର ନେଲା ବେଳେ ଗୋଟିଏ କଥା କହିଥିଲେ, ଏ ପୁରସ୍କାର ଅର୍ଥ ମୂଲ୍ୟ ଅଳ୍ପ କିନ୍ତୁ ଏହାର ପରମାର୍ଥିକ ମୂଲ୍ୟ ଅଧିକ । ସାହିତ୍ୟରେ ଏବେତ ଅର୍ଥ ସ୍ଥାନରେ ଅନର୍ଥ ବହୁଭାବରେ ପଶୁଛି । ହେଲେ ସାହିତ୍ୟର ପରମାର୍ଥକୁ ଅଳପ ଲୋକଙ୍କ ସାଧନାହିଁ ବଂଚାଇ ରଖେ । ପ୍ରଫେସର ବେହେରା, ଓଡ଼ିଆ ଗବେଷଣା ପରିଷଦର ସାଧନା ପରମାର୍ଥକୁ ନେଇ ହିଁ କରୁଥିଲେ । ଜୀବନବ୍ୟାପୀ ସମସ୍ତଙ୍କୁ ବ୍ୟକ୍ତିଗତ ଚିଠି ଲେଖିବା, ପାରିବାରିକ କୁଶଳ-ମଂଗଳ ପଚାରିବା ଓ ଲେଖା ପାଇଁ ତାଗିଦ କରିବା ତାଙ୍କ ସ୍ନେହସିକ୍ତ ବ୍ୟକ୍ତିତ୍ୱର ଅଂଗ ଥିଲା ।

ଓଡ଼ିଆ ଗବେଷଣା ପରିଷଦରେ ବାର୍ଷିକ ଉତ୍ସବ ଓ ସାଂଗଠନିକ ସଭା ହେଲେ ନାନା ତର୍କବିତର୍କ ହେବ, ହେଲେ ସବାଶେଷରେ ପ୍ରଫେସର ବେହେରା ଯୋଉ ଦୁଇପଦ କହିବେ, ତହିଁରେ ସବୁ ସମାଧାନ ହେବ । ବ୍ୟକ୍ତିଗତ ଜୀବନ ଓ ରୁଚି ଅପେକ୍ଷା ପରିଷଦର ଜୀବନ ଓ ଶୁଚି ତାଙ୍କ ପାଇଁ ମହତ୍ତ୍ୱପୂର୍ଣ୍ଣ ଥିଲା ।

ସିନାପାଲିରୁ ମୁଁ ଯେବେବି କଟକ ଆସେ, ଡ. ବେହେରା ମୋତେ ନିଶ୍ଚିତ ଘରେ ଖାଇବାକୁ ଡାକିବେ । ଶ୍ରୀମତୀ ବେହେରା ମୋତେ ଆଦର କରି ଖୁଆଇବେ । ଏମିତି ଅନେକଥର ତାଙ୍କ ଘରେ ମୁଁ ଖାଇଛି । ତାଙ୍କ ଆତିଥ୍ୟରେ ମୁଁ ଋଣୀ । ଏହା ତାଙ୍କ ବ୍ୟାପକ ଦୃଷ୍ଟି ଓ ମାନବୀୟ ସ୍ନେହର ପରିଚୟ ।

ଓଡ଼ିଶାର ସବୁ ଅଂଚଳରୁ ଲେଖକମାନେ ସମାନ ଭାବେ ସ୍ଥାନ ପାଇବେ, ଶ୍ରଦ୍ଧା ଓ ପ୍ରେରଣା ପାଇବେ ତଥା ଓଡ଼ିଶାରେ ପ୍ରତିନିଧିତ୍ୱ ସାରା ଓଡ଼ିଶା କରିବ, ଏହା ତାଙ୍କ ଆଦର୍ଶ ଥିଲା । ସେ କେନ୍ଦ୍ରରେ ଥିଲେ କିନ୍ତୁ ତାଙ୍କ ସାମଗ୍ରିକ ଦୃଷ୍ଟି ପରିଧି ଉପରେ ନିବଦ୍ଧ ଥିଲା ।

ମୋ ଶ୍ୱଶୁର ଶ୍ରୀ ମୋହିତ ମୋହନ ମହାପାତ୍ରଙ୍କ ସେ ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କ ପାଖକୁ ବରାବର ସେ ଏଷଣା ପଠାଉଥିଲେ । ଏଷଣା ଠିକ ଲୋକଙ୍କ ପାଖକୁ ପହଞ୍ଚିବା ଦରକାର । ପଇସା ତ ପରେ ମିଳିଯିବ । ଶ୍ରୀମତୀ ଲାବଣ୍ୟ ନାୟକ ଓଡ଼ିଆ ଗବେଷଣା ପରିଷଦର ସଂପାଦିକା । ସେ ଗତ ୪୦ବର୍ଷର ପରିଷଦର ଇତିହାସକୁ ଅଙ୍ଗେ ନିଭେଇଛନ୍ତି । ମୁଁ ଶ୍ରଦ୍ଧାର ସହିତ ପରିଷଦ ସଂଗେ ସଂପୃକ୍ତ । ସୁଧୀର ବାବୁଙ୍କ ତ୍ୟାଗବି

କମ୍ ନୁହେଁ । ଡ. ବେହେରାଙ୍କ ପୁତ୍ର ଡ. ଶୁଭକାନ୍ତ ଓ ପୁଣ୍ୟଶ୍ଳୋକଙ୍କ ସହିତ ମୋର ଅନେକ ଦିନରୁ ପରିଚୟ ରହିଛି । ଏତେ ଲୋକମଂଗଳକାରୀ ବ୍ୟକ୍ତିତ୍ୱର ଅଧିକାରୀ, ପରିଶୁଦ୍ଧ ଜୀବନ ନେଇ ତ୍ୟାଗପୂତ ଅଥଚ ଡ. ବେହେରାଙ୍କ ପାରିବାରିକ ଦୁଃଖର ସୀମା ନ ଥିଲା । ସ୍ଥିର ଓ ଅବିଚଳିତ ଭାବେ ସେ ସବୁ ସହିଗଲେ । ତାଙ୍କ ଅନ୍ତିମ ସମୟରେ ମାସେ ପୂର୍ବରୁ ତାଙ୍କୁ ଭେଟିବାକୁ ଗଲି । ସେ ଖାଲି କହିଲେ ବଡ଼ କଷ୍ଟ ଭୋଗୁଛି, ମୋତେ ଦେଖିଲ ତ, ଏବେ ଯାଅ । ପରେ କେବେ କଥା ହେବା । ରାୟପୁରରୁ ଭୁବନେଶ୍ୱର ଆସି ତାଙ୍କୁ ଭେଟିବାକୁ ଯାଇଥିଲି ସମ୍ବେଦନାର ସହିତ । ହେଲେ ତାଙ୍କ ଶରୀର ପ୍ରସ୍ତୁତ ନଥିଲା । ସେ ଚାଲିଯିବାର ଶୁଣି ମୁଁ ମର୍ମାହତ ହେଲି । ୧୯୮୭ ରୁ ୨୦୧୭ ଦୀର୍ଘ ତିରିଶ ବର୍ଷ କାଳର ଭାବଗତ ସଂପର୍କର ପୂର୍ଣ୍ଣଚ୍ଛେଦ ପଡ଼ିଲା । ତାଙ୍କ ଜୀବନ ଓ ସାହିତ୍ୟ ସାଧନାର ଯେତେବି ପ୍ରଶଂସା କରିବି ତାହା ଯଥେଷ୍ଟ ନୁହେଁ । ସେ ଯେ ଜଣେ ପରମାର୍ଥିକ ସାହିତ୍ୟବିତ୍ ଥିଲେ, ତାହାର ପ୍ରମାଣ ଓଡ଼ିଆ ଗବେଷଣା ପରିଷଦ । ମୁଁ ମୋ ଜୀବନରେ ଡ. ବେହେରାଙ୍କ ପରି ଏକ ଅମ୍ଳାନ ବ୍ୟକ୍ତିତ୍ୱଙ୍କ ସଂସ୍ପର୍ଶରେ ଆସି ନିଜକୁ ଧନ୍ୟ ମନେକରୁଛି । ତାଙ୍କ ଆଶୀର୍ବାଦ ରହିଥାଉ । ❖

# କୃଷ୍ଣଙ୍କ ଚରଣ କମଳେ

ଡ. ଅଜୟ କୁମାର ମିଶ୍ର

ଓଡ଼ିଆ ଭାଷା-ସାହିତ୍ୟ-ସଂସ୍କୃତି ଚର୍ଚ୍ଚା ଓ ଗବେଷଣା କ୍ଷେତ୍ରରେ, ଜଣେ ନିଷ୍ଠାପର ଓ ନିରଳସ ସାଧକ ଡକ୍‌ଟର କୃଷ୍ଣଚରଣ ବେହେରାଙ୍କ ବହୁମୁଖୀ ବ୍ୟକ୍ତିତ୍ୱ ସହିତ ମୋର ପରିଚୟ ହାତଗଣନ୍ତାରେ ମାତ୍ର କେତୋଟି ବର୍ଷର । ସେ ମୋର ଗୁରୁ ନ ଥିଲେ, ମାତ୍ର ଏବେ ବି ମୁଁ ତାଙ୍କ ଶିଷ୍ୟତ୍ୱକୁ ତାଙ୍କ ଆବର୍ତ୍ତମାନରେ ବି ସ୍ୱୀକାର କରୁଛି । ଏଇଥିପାଇଁ ଯେ, ସେ ସାହିତ୍ୟାଲୋଚନା ଓ ଚର୍ଚ୍ଚା ଓ ଗବେଷଣା ପ୍ରତିଟି କ୍ଷେତ୍ରରେ ମୋତେ ଉତ୍ସାହିତ, ପ୍ରରୋଚିତ ଓ ପ୍ରଚୋଦିତ କରି ଆସିଛନ୍ତି ।

ଥରେ ଓଡ଼ିଆ ଗବେଷଣା ପରିଷଦର ଏକ ସଂପାନ ଜଗତସିଂହପୁର ସଦର ମହକୁମାସ୍ଥ ଶ୍ରୀକୃଷ୍ଣ ଏକାଡ଼େମୀ ପରିସରରେ ଅନୁଷ୍ଠିତ ହେଉଥାଏ । ଆୟୋଜକ ଥିଲେ ପ୍ରଖ୍ୟାତ କଥାଶିଳ୍ପୀ ଆର୍ଯ୍ୟ ଯଜ୍ଞଦତ୍ତ । ଯଜ୍ଞଦତ୍ତ ବାବୁ ଓ ମୁଁ ପ୍ରାୟ ପଡ଼ୋଶୀ, ତେଣୁ ତାଙ୍କ ନିମନ୍ତ୍ରଣରେ ଗବେଷଣା ପରିଷଦର ସେଇ ସଂପାନରେ ଯୋଗ ଦେଲି । ପରିଷଦର କାର୍ଯ୍ୟକ୍ରମ ଆରମ୍ଭ ହେଲା, ସମସ୍ତେ ମନସ୍କ ହୋଇ ଶୁଣୁଥାଉ, ସଭାପତିତ୍ୱ କରୁଥାନ୍ତି ଡକ୍ଟର ବେହେରା । ପ୍ରବନ୍ଧ ପାଠ ଶେଷ ହେଲା, ଉପସ୍ଥାପିକା ଥିଲେ କବି ମନୋରମା ମହାପାତ୍ର । ପରିଷଦର ନିୟମାନୁଯାୟୀ ଆରମ୍ଭ ହେଲା ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ । ପ୍ରବନ୍ଧ ଉପସ୍ଥାପିକା ଶ୍ରୀମତୀ ମହାପାତ୍ରଙ୍କୁ ଅବଶ୍ୟ କେତୋଟି ପ୍ରଶ୍ନ ଆତଙ୍କିତ କରିଥିଲା । ମାତ୍ର ଏପରି ସ୍ଥଳେ ସଭାପତି ଡକ୍ଟର ବେହେରା ହସ୍ତକ୍ଷେପ କଲେ, ଅତି ଶାନ୍ତ ସରଳ ଭାବରେ ଆଲୋଚନା କଲେ ପ୍ରଶ୍ନଜନିତ ସମସ୍ୟାର ମୂଳ ଆଧାରକୁ । ଉପସ୍ଥିତ ସଦସ୍ୟ ଓ ଅଂଶଗ୍ରହୀତାମାନଙ୍କ ଭିତରେ ସନ୍ତୋଷ ଦେଖାଦେଲା । ସେଇଦିନ ଡକ୍ଟର ବେହେରାଙ୍କ ସହିତ ମୋର ପ୍ରଥମ ପ୍ରତ୍ୟକ୍ଷ ସାକ୍ଷାତ, ବିମୋହିତ କଲା, ବିମୁଗ୍ଧ କଲା ମତେ ।

ଟିଟିଲାଗଡ଼ର ଡି.ଏ.ଭି. କଲେଜରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଆନୁକୂଲ୍ୟରେ ଆୟୋଜିତ ସଂପାନ ତଥା ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ପାଇଁ ଚିଠିଟିଏ ପାଇଲି । ପ୍ରସଙ୍ଗ ଥିଲା 'ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟରେ ସାମାଜିକ ପ୍ରତିବଦ୍ଧତା' ।

ଚିଠିଟି ପାଇବା ପରେ ଏଇ ଶୀର୍ଷକରେ ପ୍ରବନ୍ଧଟିଏ ଲେଖି ଆୟୋଜକ ତଥା ଟିଟିଲାଗଡ଼ କଲେଜର ତତ୍‌କାଳୀନ ଅଧ୍ୟକ୍ଷ ଶ୍ରୀଯୁକ୍ତ ଉପେନ୍ଦ୍ର କୁମାର ମହାନ୍ତିଙ୍କ ଠିକଣାରେ ପଠାଇଦେଲି । ପରେ ଅବଶ୍ୟ ଶୁଣିଲି ଯେ, ଏ ସବୁ ପ୍ରବନ୍ଧ ମୁଦ୍ରିତ ହେବା ପୂର୍ବରୁ ଏହାର ସଂପାଦନା କରିବେ ଡକ୍ଟର ବେହେରା । ବହୁ ଭାବରେ ଆନନ୍ଦିତ ହେଲି, ଡକ୍ଟର ବେହେରାଙ୍କ ଭଳି ଜଣେ କୃତବିଦ୍ୟ ଗବେଷକଙ୍କ କଲମଗାର ବାଜିବା ପରେ ମୋ ପ୍ରବନ୍ଧର ଅବସ୍ଥା କ'ଣ ହେଉଛି ଜାଣିବାକୁ ଅବଶ୍ୟ ମାନସିକ ଉତ୍ସୁକତା ଥିଲା । ତାହା ସମ୍ଭବ ହେଲା ପ୍ରବନ୍ଧଟି ୟୁ.ଜି.ସି. ସଂପାନର ମୁଖପତ୍ରରେ ପ୍ରକାଶ ପାଇବା ପରେ । କୌଣସି ପରିବର୍ତ୍ତନ ନ କରି ଅବିକୃତ ଭାବରେ ପ୍ରବନ୍ଧଟି ପ୍ରକାଶ ପାଇଥିଲା । ଏଇ ଘଟଣାଟି ମୋ ଭିତରେ ଥିବା ଲେଖକୀୟ ସାମର୍ଥ୍ୟକୁ ଆତ୍ମନିର୍ଭରଶୀଳ କରାଇଥିଲା । ପ୍ରବନ୍ଧଟି ପ୍ରକାଶ ପାଇବା ପୂର୍ବରୁ ଏକ ବାଜେ ପ୍ରବନ୍ଧ ବୋଲି କହି ମୋର ସେ ସମୟର ବିଭାଗମୁଖ୍ୟ ଭୋଳାନାଥ ରାଉତ ନିରୁତ୍ସାହିତ କରିଥିଲେ । ଡକ୍ଟର ବେହେରାଙ୍କ ଦ୍ୱାରା ସ୍ୱୀକୃତ ଓ ପ୍ରକାଶିତ ହୋଇସାରିବା ପରେ ମୁଁ ସର୍ଜନାତ୍ମକ ଲିଖନ ଛାଡ଼ି ପ୍ରାୟ ପ୍ରବନ୍ଧ-ମନସ୍କ ହୋଇଉଠିଲି ।

ଓଡ଼ିଆ ଗବେଷଣା ପରିଷଦ ଦ୍ୱାରା ଅନୁଷ୍ଠିତ ଅନେକ ସଂପାନରେ ମୁଁ ଅଂଶଗ୍ରହଣ କରିବାର ସୁଯୋଗ ପ୍ରାପ୍ତ ହୋଇଛି କେବଳ ଡକ୍ଟର ବେହେରାଙ୍କର ମୋ ପ୍ରତି ରହିଥିବା ଆନ୍ତରିକତାରୁ । ମୁଁ କଟକ ଆସିବା ପରେ ନିୟମିତ ଭାବରେ ତାଙ୍କ ସହିତ ଯୋଗସୂତ୍ର ସ୍ଥାପିତ ହେଲା । କେବେ କେମିତି ବ୍ୟବଧାନ ବଢ଼ିଗଲେ ସେ ନ ଆସିବାର କାରଣ ପଚାରନ୍ତି । ଏବେ କେଉଁ କାମ ଚାଲିଛି ବୋଲି ପ୍ରଶ୍ନ କରି, ମୋ ଭିତରର ଅଥର୍ବତାକୁ ଦୂର କରିବାକୁ ପ୍ରୋତ୍ସାହିତ କରାନ୍ତି । ମୁଁ ଗବେଷଣା ପରିଷଦର ସଦସ୍ୟ ନୁହେଁ, ତଥାପି ମୋ ପ୍ରତି ତାଙ୍କର ଶ୍ରଦ୍ଧା-ସହାନୁଭୂତି ଓ ଆନ୍ତରିକତା କେବେ ଊଣା ହେବାର ମୁଁ ଅନୁଭବ କରିନାହିଁ ।

ତାଙ୍କ କଲ୍ୟାଣୀ ନଗରସ୍ଥ ଉତ୍କଳ ଆପାର୍ଟମେଣ୍ଟ ଓ ମୋ ଘର ମଧ୍ୟରେ ମାତ୍ର ସାତ ଆଠ ମିନିଟ୍‌ର ବାଟ । ବେଳେବେଳେ ସେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ଥିବା ବେଳେ ମୋତେ ପରେ ଆସିବାକୁ କହି ଫେରାଇ ଦିଅନ୍ତି । ପରେ କେବେ ଗଲେ ପୁନଶ୍ଚ ମୋର ସାରସ୍ୱତ କର୍ମର ବିକାଶ ସମ୍ପର୍କରେ ପ୍ରଶ୍ନ କରନ୍ତି । ମୁଁ ଓଡ଼ିଆ ଯାତ୍ରା ଗବେଷଣା କରିଥିବା ପ୍ରସଙ୍ଗ ଜାଣିବା ପରେ ସେ ଅଧିକ ଉତ୍ସାହିତ ହୋଇଥିଲେ । ମୋର ଡି.ଲିଟ୍. ସନ୍ଦର୍ଭର ଛାପା ରୂପ 'ଓଡ଼ିଆ ଯାତ୍ରା ଉନ୍ମେଷ ଉତ୍ତରଣ' ଗ୍ରନ୍ଥଟି 'କାହାଣୀ ପ୍ରକାଶନୀ'ଠାରୁ କେବେ ମଗାଇ ଆଣିଥିଲେ ଓ 'ଏଷଣା'ରେ ଏହାର ସମୀକ୍ଷା କରାଇ ମୋତେ 'ଏଷଣା'ର ସେଇ ସଂଖ୍ୟାଟି ଧରାଇ ଦେଇଥିଲେ ଅତି ଆକସ୍ମିକ ଭାବରେ । ଚକିତ ହେଲି, ଗଭୀର ଭାବରେ କୃତଜ୍ଞ ରହିଲି ତାଙ୍କ ଉଦାର ବ୍ୟକ୍ତିତ୍ୱ ନିକଟରେ ।

ମୁଁ ବ୍ୟଙ୍ଗ ଲେଖିବା ଜାଣି ସେ ଖୁସି ହୁଅନ୍ତି । ଅଧିକରୁ ଅଧିକ ଲେଖିବାକୁ ପରାମର୍ଶ ଓ ଉତ୍ସାହ ଦିଅନ୍ତି । ସେମିତି ଅଗତ୍ୟା ମୋର ବ୍ୟଙ୍ଗ ଗଳ୍ପ ସଂକଳନ 'ଗେଣ୍ଡୁ ଆଉ ଗେଣ୍ଡୁମାଳ'ଟିକୁ ମୋ ଅଜ୍ଞାତସାରରେ ମଗାଇ 'ଏଷଣା'ର ଅନ୍ୟ ଏକ ସଂଖ୍ୟାରେ ସମୀକ୍ଷା କରାଇ ସଂପୃକ୍ତ ସଂଖ୍ୟାଟି ମୋତେ ଧରାଇଦିଅନ୍ତି । ସେ ପର୍ଯ୍ୟନ୍ତ ମୋର କୌଣସି କୃତିର ସମୀକ୍ଷା କୌଣସି ପତ୍ର-ପତ୍ରିକାରେ ପ୍ରକାଶ ପାଇନ ଥିଲା । ପ୍ରଥମ କରି ଏଷଣା ପୃଷ୍ଠାରେ ମୋ ଲେଖାର ସମୀକ୍ଷା ପ୍ରକାଶ କରାଇ ଡକ୍ଟର ବେହେରା ମତେ ଆଜୀବନ କୃତଜ୍ଞ କରିଯାଇଛନ୍ତି ।

ବିଭିନ୍ନ ସାହିତ୍ୟ ସଭାରେ ଡକ୍ଟର ବେହେରାଙ୍କ ସହିତ ବକ୍ତା ଭାବରେ ମୁଁ ଏକତ୍ର ବସିଚି । ସେ ମୋତେ ଶୁଣିଚନ୍ତି, ଶେଷରେ ମୋ ବକ୍ତବ୍ୟ ତାଙ୍କୁ କେମିତି ଲାଗିଲା, ସେ ସମ୍ପର୍କରେ ସେ ନିଜ ମତାମତ ଦେଇଛନ୍ତି । ଥରେ ତାଙ୍କର ନିର୍ଦ୍ଦେଶ ଆସିଲା, ଭଦ୍ରକରେ ଟାଉନ୍‌ହଲ୍ ଠାରେ ଏକ ସଭାରେ ମୋତେ ବକ୍ତା ଭାବରେ ଯୋଗଦେବାକୁ ହେବ । ତାଙ୍କ ସହିତ ଭଦ୍ରକ ଗଲି । ସେଠାରେ ଦେଖିଲି ତାଙ୍କୁ ଅପେକ୍ଷା କରିଛନ୍ତି ଅନେକ ସାହିତ୍ୟିକ, କବି, ଲେଖକ ଓ ସଂପାଦକ । ସେଇଠି ଅନୁଭବ କଲି ନିଜ ମାଟିରେ ଡକ୍ଟର ବେହେରାଙ୍କ ଲୋକପ୍ରିୟତା । ଓଡ଼ିଶାରେ ଅନେକ ପ୍ରଖ୍ୟାତ ବ୍ୟକ୍ତି ବିଭିନ୍ନ କ୍ଷେତ୍ରରେ ସୁନାମ ଅର୍ଜନ କରିଥିଲେ ମଧ୍ୟ ନିଜ ଅଞ୍ଚଳରେ ପ୍ରାୟ ଅଖୋଜା ଅଲୋଡ଼ା ହୋଇ ରହିଯାଆନ୍ତି । ମାତ୍ର ଡକ୍ଟର ବେହେରା ଥିଲେ ଏହାର ସ୍ୱତନ୍ତ୍ର ବ୍ୟତିକ୍ରମ । ସେ ଆପେ ସମସ୍ତଙ୍କ ସହିତ ନିଜ ଆପଣାପଣ ବାଣ୍ଟୁଥାନ୍ତି । ତାଙ୍କୁ ଅନେକ ଦିନ ପରେ ଦେଖା କରି ସେଠାକାର ବହୁ ବ୍ୟକ୍ତି ଯେମିତି କୃତାର୍ଥ ହେଉଥାନ୍ତି ।

ଭଦ୍ରକର ସେଇ ସଭାରେ ସଭାପତିତ୍ୱ କଲେ ଡକ୍ଟର ବେହେରା । ମଞ୍ଚରେ ତାଙ୍କ ପାଖରେ ବକ୍ତା ଭାବରେ ବସି ମୁଁ ନିଜକୁ କୃତାର୍ଥ ମନେ କରୁଥିଲି । ଅନ୍ୟ ଦୁଇଜଣ ସହବକ୍ତା ବି ଥିଲେ । ସଭା ଆରମ୍ଭ ହେଲା । ଜଣେ ବକ୍ତାଙ୍କ ପରେ ମୋ ପାଳି ପଡ଼ିଲା । ମୁଁ ବକ୍ତବ୍ୟ ଆରମ୍ଭ କରିବାର ପ୍ରାୟ ତିନି ଚାରି ମିନିଟ୍ ପରେ ଜଣେ ଆଗନ୍ତୁକ ହଠାତ୍ ମଞ୍ଚ ଉପରକୁ ଉଠି ଆସି ମତେ ଚିଠାଟିଏ ଧରାଇ ଦେଲେ । ଦୃଷ୍ଟି ପକେଇଲି ଲେଖାଥିଲା- 'ମନ୍ତ୍ରୀ ଆସୁଛନ୍ତି, ଭାଷଣ ଚଞ୍ଚଳ ସାରନ୍ତୁ ।' ତତ୍‌କ୍ଷଣାତ୍ ମୁଁ ସୌଜନ୍ୟ ଦୃଷ୍ଟିରୁ ମାଇକ୍ରୋଫୋନ୍ ପାଖରୁ ଓହରି ଆସିବା ପୂର୍ବରୁ ଘୋଷଣା କଲି- 'ମନ୍ତ୍ରୀ ଆସୁଚନ୍ତି; ଭାଷଣ ଏଇଠି ଶେଷ ହେଲା ।' ମୋ ଚୌକିକୁ ଆସିଲି । ଦେଖିଲି ଡକ୍ଟର ବେହେରାଙ୍କ ପ୍ରତିକ୍ରିୟା । ଯେ କୌଣସି ସଭାରେ ସଭାପତିତ୍ୱ କରିବା ସମୟରେ ସେ ନିଜ ସୌଜନ୍ୟ ରକ୍ଷା କରନ୍ତି । ମାତ୍ର ସେଦିନ ସେ ସାମାନ୍ୟ ବିରକ୍ତ ହୋଇ କହିଲେ- 'ଡକ୍ଟର ମିଶ୍ର ଜଣେ ସ୍ୱଭାବିମୁଖ ଲୋକ, ତାଙ୍କୁ ମୁଁ ମୋ ଅଞ୍ଚଳକୁ ଆଣିଥିଲି । ଏ ବ୍ୟକ୍ତି

କିଏ, ସେ କାହିଁକି ଏମିତି ଅସୌଜନ୍ୟ ପ୍ରକାଶ କଲେ ମୁଁ ବୁଝିପାରୁନାହିଁ । ପରେ ପରେ ସଭା ଚାଲିଲା, ଦୀର୍ଘ ସମୟ ପରେ ମନ୍ତ୍ରୀ ଅବଶ୍ୟ ଆସିଲେ, ଡକ୍ଟର ବେହେରା ସେମିତି ଅବିଚଳିତ, ମନ୍ତ୍ରୀ ଆସି ତାଙ୍କୁ ପ୍ରଣାମ କଲେ ଯଥା ସମ୍ମାନ ପ୍ରଦର୍ଶନ କରି ମଞ୍ଚାସୀନ ହେଲେ । କିଛି ସମୟ ପରେ ଡକ୍ଟର ବେହେରା ଓ ମନ୍ତ୍ରୀ କ'ଣ କଥା ହେଲେ କେଜାଣି, ସେଇ ଚିଠା ଦେଇଥିବା ବ୍ୟକ୍ତି ଆସି ସମସ୍ତଙ୍କ ସାମନାରେ ମୋ ନିକଟରେ ଉପସ୍ଥିତି ହୋଇ ନିଜ ତ୍ରୁଟି ପାଇଁ କ୍ଷମା ପ୍ରାର୍ଥନା କଲେ । ଏଇଟା ଡକ୍ଟର ବେହେରାଙ୍କ ଅନନ୍ୟ ପ୍ରଭାବଶାଳୀ ବ୍ୟକ୍ତିତ୍ୱର ଏକ ଭିନ୍ନ ଦିଗ ।

ଓଡ଼ିଆ ଗବେଷଣା ପରିଷଦର ବାର୍ଷିକୋତ୍ସବରେ ମତେ ଗୋଟାଏ ସମ୍ମାନର ସଭାମୁଖ୍ୟ ଭାବରେ ସମ୍ମାନ ପରିଚାଳନା କରିବା ଓ ଅନ୍ୟ ଏକ ବାର୍ଷିକୋତ୍ସବରେ ମତେ ପ୍ରବନ୍ଧ ଉପସ୍ଥାପନ କରିବାର ସୁଯୋଗ ଦେଇ ଆଜୀବନ ତାଙ୍କ ନିକଟରେ କୃତଜ୍ଞ କରାଇଛନ୍ତି । ମୋର 'ସଂଖ୍ୟା ଶବ୍ଦାଭିଧାନ' ବହିଟି ମୁଁ ତାଙ୍କ ନାମରେ ଉତ୍ସର୍ଗ କରି ତାଙ୍କ ହାତରେ ଅର୍ପଣ କଲାବେଳେ ସେ ଆନନ୍ଦରେ ଏଇ ଧରଣର ଆଉ ଅଧିକ କିଛି କାମ କରିବାକୁ ଉତ୍ସାହ ଦେଇଛନ୍ତି ।

ଡକ୍ଟର ବେହେରାଙ୍କ ବିଚାରଧାରା, ବିଦ୍ୱତ୍ତା ଓ ବହୁମୁଖୀ ସାଧନା ବିସ୍ମୟକର । ସେ ପିଲାଦିନେ ନାଟୁଆ ଥିଲେ । ଯାତ୍ରା ପ୍ରତି ତାଙ୍କ ଭିତରେ ଅସାଧାରଣ ଦୁର୍ବଳତା ମୋତେ ଏକଥା କହଛନ୍ତି ଓ ଉତ୍ତୀର୍ଣ୍ଣ ବୟସ ତଥା ଅସୁସ୍ଥତା ସତ୍ତ୍ୱେ କୌଣସି ଯାତ୍ରା ଦେଖାଇ ନେବାକୁ କହିଛନ୍ତି । ସେତେବେଳକୁ କଟକ ସହରରେ ଯାତ୍ରା ପ୍ରଦର୍ଶନ ବନ୍ଦ ହୋଇଗଲାଣି । ସହର ଉପକଣ୍ଠରେ ପ୍ରାୟ ଦଶପନ୍ଦର କି.ମି. ପରିସରରେ ଯାତ୍ରା ପ୍ରଦର୍ଶିତ ହୁଏ । ମାତ୍ର ରାତି ବାରଟା ବେଳେ ଏମିତି ଦୂରଜାଗାକୁ ତାଙ୍କ ଭଳି ଜଣେ ଅସୁସ୍ଥ ବ୍ୟକ୍ତିଙ୍କୁ ଯାତ୍ରା ଦେଖାଇ ଦେବାକୁ ମୋର ସାହସ ନ ଥାଏ । ପୁଣି ରାତିରେ ଫେରିବାର ଭୟ ମତେ ଆଶଙ୍କିତ କରୁଥାଏ । ତଥାପି ଚେଷ୍ଟା କରିଚି । ମାତ୍ର ସେଇ ସମୟକୁ ସେ ଅତି ଅସୁସ୍ଥ । ଅବସୋସ ରହିଗଲା ମୋର, ତାଙ୍କ ଭଳି ଜଣେ ସଂସ୍କୃତି ପ୍ରେମୀ ବ୍ୟକ୍ତିଙ୍କୁ ମୁଁ ଯାତ୍ରା ଦେଖାଇ ପାରିଲି ନାହିଁ, ଏହା ଭିତରେ ସେ ହୋଇଗଲେ ମହାଯାତ୍ରାର ଯାତ୍ରୀ ।

ଡକ୍ଟର ବେହେରାଙ୍କୁ ଥରେ ମୋ ବିଷୟରେ କିଏ କ'ଣ କହିଚି କେଜାଣି, ମୋର ପାୱାର ପଏଣ୍ଟ ପ୍ରେଜେଣ୍ଟେସନ୍ ଦେଖିବାକୁ ଇଚ୍ଛା ପ୍ରକଟ କଲେ । ସାଙ୍ଗେ ସାଙ୍ଗେ ତାଙ୍କ ଘରୁ ତାଙ୍କୁ ମୋ ଘରକୁ ଆଣିଲି, ମୋର କମ୍ପ୍ୟୁଟର ଖୋଲି କେତେକ ଦୃଶ୍ୟ ଦେଖାଇଲି । ସେଥିରେ ଥିଲା 'ମୋଗଲ ତାମସା', 'କଲଚରାଲ୍ ହେରିଟେଜ୍ ଅଫ୍ ଓଡ଼ିଶା' । 'ଓଡ଼ିଆ ଯାତ୍ରା ମଞ୍ଚର ବିବର୍ତ୍ତନ', 'ଶବ୍ଦ ନିଧି' ଇତ୍ୟାଦି ଅନେକ । ଚମତ୍କୃତ ହୋଇ ମୋତେ ଆଶୀର୍ବାଦ କଲେ, ଏଇ ଧରଣର କାର୍ଯ୍ୟ ଜାରି ରଖିବାକୁ ଉପଦେଶ

ଦେଲେ; ପୁଣି ନୂଆ ନୂଆ ଦିଗ ସମ୍ପର୍କରେ ଆଲୋଚନା କଲେ ।

ଡକ୍ଟର ବେହେରା ଜଣେ ନିରବଚ୍ଛିନ୍ନ ସାଧକ । ମୁଁ ତାଙ୍କ ଛାତ୍ର ନୁହେଁ, ତାଙ୍କ ହାତଗଢ଼ା 'ଓଡ଼ିଆ ଗବେଷଣା ପରିଷଦ'ର ସାଧାରଣ ସଦସ୍ୟ ମଧ ନୁହେଁ । ଅଥଚ ମୋ ଭଳି ଜଣେ ଅକିଞ୍ଚନ ପ୍ରତି ତାଙ୍କର ଆନ୍ତରିକତା କେବେ ନ୍ୟୂନ ହୋଇ ନାହିଁ, ବରଂ ତାଙ୍କ ସ୍ନେହଶୀଳ ଆପଣାପଣରେ ସେ ସବୁଦିନ ପାଇଁ ବନ୍ଧା ପକେଇ ଯାଇଛନ୍ତି ।

ସେ ରହୁଥିବା ଉତ୍କଳ ଆପାର୍ଟମେଣ୍ଟର ଦାଣ୍ଡଘରଟି ସାହିତ୍ୟ-ସଂସ୍କୃତି ଚର୍ଚ୍ଚାର ଏକ ସ୍ୱତନ୍ତ୍ର କର୍ମଶାଳା । ଅନେକ ସମୟରେ ତାଙ୍କୁ ଭେଟିବା ବେଳେ ଓଡ଼ିଶାର ଓ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଷୟରେ ଆଲୋଚନା ଜାରି ରହେ । ସମକାଳର ବିଭିନ୍ନ ପତ୍ରପତ୍ରିକା ତାଙ୍କ ଘରେ ଥାଏ, ମୁଁ ତାଙ୍କ ବ୍ୟକ୍ତିଗତ ପାଠାଗାରରୁ ଆବଶ୍ୟକସ୍ଥଳେ ଅନେକ ବହି ଆଣି ପଢ଼ି ଶୁଣି ତାଙ୍କୁ ଫେରାଇ ଦେଇଛି । ସେ ଥିଲେ ବହୁଶାଖା ବନସ୍ପତି, ତାଙ୍କ ବୌଦ୍ଧିକତାର ଶାଖା ଥିଲା ପ୍ରଲମ୍ବିତ, ସେଇ ଛାଇରେ ମୋ ଭଳି ଅନେକ ହୁଏତ ସମୃଦ୍ଧ ହୋଇଛନ୍ତି । ତାଙ୍କ ଅବର୍ତ୍ତନମାନର ସମ୍ବାଦ ଅନେକଙ୍କୁ ବ୍ୟଥିତ କରିଚି, 'କୃଷ୍ଣ ବୈକୁଣ୍ଠ ଗମନ କଲେ'- ସବୁରି ମନରେ କେବଳ ବ୍ୟଥା ବେଦନା ।

ତାଙ୍କ ଅବର୍ତ୍ତମାନରେ ତାଙ୍କ ଘରକୁ ଯିବାକୁ କଷ୍ଟ ଲାଗେ, ତଥାପି ତାଙ୍କ ଜ୍ୟେଷ୍ଠ ପୁତ୍ର ବାପୁ ବାବୁ ମତେ ଡାକିଛନ୍ତି । ଡକ୍ଟର ବେହେରା କୃଷ୍ଣ ନୁହନ୍ତି, କୃଷ୍ଣବରଣା, କୃଷ୍ଣଚରଣ ଯାହାଙ୍କ ସହିତ କେତେ ପଦ କଥା ହେଲେ ବୌଦ୍ଧିକତା ବୃଦ୍ଧି ହୁଏ, ବିଚାର ସ୍ପଷ୍ଟ ହୁଏ, ବ୍ୟକ୍ତିତ୍ୱ ବିକଶିତ ହୁଏ । ତାଙ୍କ ଦ୍ରୋଣତ୍ୱ ନିକଟରେ ମୁଁ ଜୀବନସାରା ବିକଳ ଏକଲବ୍ୟଟିଏ, ସେଇ ଗୁରୁ-ଗୌରବଙ୍କ ଚରଣ ତଳେ ଅଜସ୍ର ନମନ । କୃଷ୍ଣଚରଣଙ୍କ ଚରଣ କମଳ ମୋର ସେବ୍ୟ ।

ସେ କୃଷ୍ଣଚରଣ କମଳେ
ସୁଧୀରେ ମୋର ଚିତ୍ତ ଚଳେ । ❖

ମିଶ୍ରଘର, ମଧୁପାଟଣା, କଟକ-୧୦
ମୋ-୯୪୩୭୯୨୦୯୬

# ସ୍ରଷ୍ଟା ମଣିଷ

ସନତ୍ ଦାସପଟ୍ଟନାୟକ

ଏମିତି ତ ସମୟ ଭୁଲାଇଦିଏ ଅନେକ କଥା, ଅନେକ ସଂପର୍କ କିନ୍ତୁ କିଛି କଥା, କିଛି ସଂପର୍କ ମନର, ସ୍ମୃତିର ଭଣ୍ଡାର ଘରେ ସାଇତି ହୋଇ ରହିଯାଏ । ମୋ ଜୀବନରେ ସେମିତି ଜଣେ ମଣିଷ ଥିଲେ ଡ. କୃଷ୍ଣଚରଣ ବେହେରା । ତା'ର ଏକମାତ୍ର କାରଣ ମୋ' କଲେଜ ପାଠ ପଢ଼ା ସମୟରୁ ତାଙ୍କର ମୋର ନୂତନ କବିତା ପ୍ରତି ଶ୍ରଦ୍ଧା, ଆଗ୍ରହ ଓ ମୋତେ କବିତା ଲେଖିବା ପ୍ରତି ପ୍ରେରଣା ଦେବା । ମୋ'ପରି ଜଣେ ଯୁବ କବିଙ୍କୁ ନିଜର ସଂକ୍ଷିପ୍ତ ଚିଠି ମାଧ୍ୟମରେ ପ୍ରୋତ୍ସାହିତ କରିବାର ଇଚ୍ଛାଶକ୍ତି ଥିଲା ତାଙ୍କର । ୧୯୬୪-୬୫ ମସିହା କଥା । ମୁଁ ସେତେବେଳେ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟର ସ୍ନାତକ ଛାତ୍ର । ନୂତନ କବିତା ପ୍ରତି ଆକୃଷ୍ଟ ଏକ ସଚେତନ ସ୍ରଷ୍ଟା । ସେତେବେଳେ ବାରିପଦାରୁ ସାହିତ୍ୟ ପତ୍ର ପ୍ରକାଶିତ ହେଉ ନ ଥିଲା । ଦିନେ ଖବରକାଗଜରୁ ଜାଣିଲି ଭଦ୍ରକ ସାହିତ୍ୟ ପରିଷଦ ବିଷୟରେ ଏବଂ 'ତୀର ଓ ତରଙ୍ଗ' ପାଇଁ ନିଜସ୍ୱ ଲେଖା ପଠାଇବା ପାଇଁ ଅନୁରୋଧ । ଜଣେ ନବୀନ ଯୁବ କବି ନିଜର ନୂତନ ସୃଷ୍ଟିର ପ୍ରକାଶନ ପାଇଁ ଉତ୍ଫୁଲ୍ଲିତ ହେବା ଅତ୍ୟନ୍ତ ସ୍ୱାଭାବିକ । ଅଗତ୍ୟା ଗୋଟିଏ କବିତା ଡାକ ଜରିଆରେ ପଠାଇଲି । ଅଳ୍ପଦିନ ପରେ ଗୋଟିଏ ପୋଷ୍ଟକାର୍ଡ଼ ଘରେ ପହଞ୍ଚିଲା । ଚିଠିଟି ଦେଖି ହତବାକ୍ ହୋଇଗଲି । ପ୍ରେରକ ଥିଲେ କୃଷ୍ଣଚରଣ ବେହେରା । ତାଙ୍କ ନାମ ସେତେବେଳେ ଭାରି ଜୋରସୋର ଆଲୋଚିତ ହେଉଥିଲା ତାଙ୍କର ବିବାଦୀୟ 'ବେଦୀ' ଗଳ୍ପ ପଢ଼ିବା ପାଇଁ ଆଗ୍ରହ ଅତି ସ୍ୱାଭାବିକ । ଏମିତି ଜଣେ ଚହଳ ସୃଷ୍ଟି କରିଥିବା ସ୍ରଷ୍ଟା ମାତ୍ର କେତୋଟି ଧାଡ଼ିରେ ମୋତେ ଜଣାଇଥିଲେ ଯେ ମୋର କବିତା ପ୍ରକାଶିତ ହେବ ଏବଂ ଶେଷରେ ଗୋଟିଏ ଅନୁରୋଧ ମୋତେ କବିତା ଲେଖିବା ପାଇଁ ଆଗେଇଯିବା ପାଇଁ । ସେଇ ସମୟରେ ଚିଠି ମାଧ୍ୟମରେ, କବିତା ମାଧ୍ୟମରେ ଚିହ୍ନିଥିଲି ଦୁଇଟି ନାଁ- କବି କମଳାକାନ୍ତ ଲେଙ୍କା ଓ କ୍ଷେତ୍ରବାସୀ ନାୟକଙ୍କୁ । ହୁଏତ ଡ. ବେହେରା ବାଲେଶ୍ୱର, ଭଦ୍ରକ, ବାରିପଦା ପରି ଅଞ୍ଚଳରେ ବଣମଲ୍ଲୀ ପରି ଫୁଟି ଝଡ଼ି ଯାଇଥିବା ସ୍ରଷ୍ଟାମାନଙ୍କୁ ପ୍ରତିଷ୍ଠିତ କରିବାକୁ

ଚାହୁଁଥିଲେ । ସେ ସମୟରେ ଭଦ୍ରକ ବା ଭଦ୍ରକ ମହାବିଦ୍ୟାଳୟର ଓଡ଼ିଆ ସାହିତ୍ୟର ଅଗ୍ରଗତି ପାଇଁ ଅନେକ ଅବଦାନ ଥିଲା । ସେଇ ସ୍ରୋତରୁ ତ ଘଷି ମାଜି ସୃଷ୍ଟି ହୋଇଥିଲେ ମୋ ସମୟର ଆଉ ଜଣେ ବିଶିଷ୍ଟ କବି ପ୍ରମୋଦ ମହାନ୍ତି ।

ମୋର କିନ୍ତୁ କୃଷ୍ଣଚରଣଙ୍କ ସହ ପ୍ରଥମ ସାକ୍ଷାତର ସୁଯୋଗ ମିଳିଥିଲା ୧୯୭୦ରେ । ତାଙ୍କର ପରମଶିଷ୍ୟ ଏବଂ ଶିଷ୍ୟା କ୍ଷେତ୍ରବାସୀ ନାୟକ ଓ ଲାବଣ୍ୟ ନାୟକଙ୍କ ବୈଠକଖାନାରେ । ମୁଁ ରାଜେନ୍ଦ୍ର ମହାବିଦ୍ୟାଳୟ, ବଲାଙ୍ଗୀରରେ ଇଂରାଜୀ ଅଧ୍ୟାପକ ଥାଏ । ସେତେବେଳେ ବଲାଙ୍ଗୀର ଓଡ଼ିଆ ସାହିତ୍ୟ ଜଗତରେ ଚହଳ ସୃଷ୍ଟି କରିଥାଏ । ଯୁବ ଲେଖକ ସମ୍ମେଳନର ଆୟୋଜନ ଏବଂ ସାଫଲ୍ୟ ତଥା ଅନେକ ସ୍ୱନାମଧନ୍ୟ ଲେଖକଙ୍କ ସମାରୋହ । ସର୍ବଶ୍ରୀ ଚିନ୍ତାମଣି ବେହେରା, ଶ୍ରୀନିବାସ ଉଦ୍‌ଗାତା, ରାଜକିଶୋର ମିଶ୍ର, ପ୍ରସନ୍ନ ମିଶ୍ର, ଚୈତନ୍ୟ ପ୍ରସାଦ ସେଠୀ, କ୍ଷେତ୍ରବାସୀ ନାୟକ, ଲାବଣ୍ୟ ନାୟକ, ରତ୍ନାକର ଚଇନି, ରାମକୁମାର ଅଗ୍ରୱାଲ ପ୍ରଭୃତି । କ୍ଷେତ୍ରବାସୀଙ୍କ ବାସଭବନର ବୈଠକଖାନାରେ ପ୍ରତି ସନ୍ଧ୍ୟାରେ ସାହିତ୍ୟ ଆସର ଜମୁଥିଲା । କିଏ କବିତା ପଢ଼େ, କେହି ଗଳ୍ପ ବା ସମାଲୋଚନା ପଢ଼େ । ଦିନେ ସନ୍ଧ୍ୟାରେ ମୁଁ ପହଞ୍ଚିଲା ବେଳକୁ ଜଣେ ସାଧାରଣ ମଣିଷପରି ମନେହେଉଥିବା ଭଦ୍ର, ଉଦାର, ଶାନ୍ତ ମଣିଷ ଚେୟାର ଉପରେ ତଳକୁ ମୁହଁକରି ବସିଥାନ୍ତି । ନିହାତି ଚୁପ୍‌ଚାପ୍ । ଆଖିରେ ଚଷମା, ଓଠରେ ମୃଦୁ ହସ ଥିଲାପରି ଲାଗୁଥିଲେ ବି ଗମ୍ଭୀର ମଣିଷ । ମୁଁ କ୍ଷେତ୍ରବାସୀଙ୍କୁ ଠାରି ପଚାରିଲି-ଇଏ କିଏ ? ମୃଦୁ ହସଟିଏ ଦେଇ ସେ' ଚିହ୍ନାଇଦେଲେ- ସାର, ମୋର ଗୁରୁ ଡ. କୃଷ୍ଣଚରଣ ବେହେରା । ମୁଁ ଧଡ଼ କରି ଠିଆ ହୋଇପଡ଼ିଲି ଓ ପ୍ରଣାମ କଲି । ଈଷତ୍ ହସଟିଏ ଦେଇ ପ୍ରତିନମସ୍କାର ଜଣାଇଲେ ସେ । କ୍ଷେତ୍ରବାସୀ କହିଲେ- ସାର୍, ଇଏ ସନତ୍ ଦାସପଟ୍ଟନାୟକ । ଚମକି ଉଠିଲେ ଡ. କୃଷ୍ଣଚରଣ । ମୋତେ ପାଦରୁ ମଥା ଯାଏଁ ଅନେଇ କହିଲେ- କି ଭାଗ୍ୟ ଆପଣଙ୍କୁ କେଉଁଠି ଦେଖିବି କେବେ ଭାବି ନଥିଲି । ଯା' ହେଉ ଆଜି ଦେଖାହୋଇଗଲା । ମୁଁ ହାତଯୋଡ଼ି କହିଲି- ମୁଁ ବି ଅନେକ ଖୋଜିଛି ଆପଣଙ୍କୁ । ବେଦୀ ଗଳ୍ପର ସେଇ ମହାନାୟକଙ୍କୁ । ଡ. ବେହେରା ଠୋ ଠୋ ହୋଇ ହସି ଉଠିଆସି ତାଙ୍କ ଶିଷ୍ୟମାନଙ୍କଠୁ ବି ଛୋଟ ବୟସର ମୋତେ ଆଲିଙ୍ଗନ କଲେ । ତାଙ୍କର ସେ ଉଦାରପଣ ମୋତେ ହତବାକ୍ କରିଦେଇଥିଲା । ମୋର ମନେଅଛି ସେଦିନ ଗୋଟିଏ କବିତା ପାଠ କରିଥିଲି ଏବଂ ଶୁଣିସାରି ଡ. ବେହେରା କହିଥିଲେ- ଅନେକ ଉଚ୍ଚକୁ ଉଠିଯାଇଚ କବି । ଏ ଉଦ୍ୟମ ଚାଲୁ ରହୁ ।

ତା'ର କିଛି ବର୍ଷ ପରେ ରାଜେନ୍ଦ୍ର ମହାବିଦ୍ୟାଳୟରୁ ମୋର ବଦଳି ହେଲା ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟକୁ । ସେଇଠି ମୋର ଦ୍ୱିତୀୟ ସାକ୍ଷାତ୍ ଡ. ବେହେରାଙ୍କ

ସହ ଜଣେ ସହକର୍ମୀ ହିସାବରେ । ମୋତେ ଅଧ୍ୟାପକମାନଙ୍କ ପ୍ରକୋଷ୍ଠରେ ଆଲିଙ୍ଗନ କରି କହିଲେ- ମୁଁ ଶୁଣିଥିଲି ଆପଣ ଆସୁଚନ୍ତି ବୋଲି । ଏଥର ଜମିବ । କିନ୍ତୁ ସେ ସମୟରେ ଡ. ବେହେରା ବେଶି ସମୟ ଦେଉଥିଲେ ନିଜର ଗବେଷଣା ପାଇଁ । ନିଜସ୍ୱ ମୌଳିକ ଗଳ୍ପସୃଷ୍ଟି କିଛିଟା କମିଯାଇଥିଲା । ତାଙ୍କର ଶିଷ୍ୟ ଗବେଷକମାନେ ଆସି ଭିଡ଼ ଜମାଉଥିଲେ । କେତେବେଳେ କେମିତି କେଉଁ ପତ୍ରିକାରେ ଗଳ୍ପଟିଏ ପ୍ରକାଶିତ ହେଉଥିଲା । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଉପରେ ଗବେଷଣା ହେବାର ଆବଶ୍ୟକତାର ନିଶା ତାଙ୍କୁ ଜୋର ଧରିଥିଲା । ଅଧ୍ୟାପକ ପ୍ରକୋଷ୍ଠ ଭିତରେ ଅନ୍ୟ ଅଧ୍ୟାପକ ଅଧ୍ୟାପିକାମାନେ ଜୋରସୋର କଥୋପକଥନ ହେଲାବେଳେ ନିଜ ଚେୟାର ଉପରେ ସେମିତି ତଳକୁ ମୁହଁ କରି ସେ ବସୁଥିଲେ । ସ୍ୱଳ୍ପ କଥାବାର୍ତ୍ତା, ଗମ୍ଭୀର ମୁହଁ । କେତେବେଳେ କେମିତି ସ୍ମିତହସ କେତୋଟି । ମୋତେ ଲାଗେ ହୁଏତ ସହକର୍ମୀମାନେ ଭାବୁଥିବେ ଇଏ କାହରି ନୁହନ୍ତି । କିନ୍ତୁ ମୁଁ ଜାଣେ ସେ ସମସ୍ତଙ୍କୁ ଶୁଣନ୍ତି, ବୁଝନ୍ତି । ନିଜସ୍ୱ ଉଦାରପଣରେ ଡୋରିରେ ସମସ୍ତଙ୍କୁ ବାନ୍ଧିପକାନ୍ତି ।

ସେ ଥିଲେ ଜଣେ ବଳିଷ୍ଠ ସାହିତ୍ୟ ସଂଗଠକ । ସେତେବେଳେ ବାରିପଦା ସହରରେ ଛୋଟ ଛୋଟ ସାହିତ୍ୟ ପରିଷଦମାନ ଆୟୋଜିତ ସଭାମାନଙ୍କରେ ନିର୍ବିକାର ହୋଇ ଯୋଗଦାନ କରୁଥିଲେ । ଆଶ୍ଚର୍ଯ୍ୟର କଥା ବାରିପଦାର କେଉଁ କବି, ଲେଖକଙ୍କୁ ସେ' ଜାଣି ନଥିଲେ । ତାହା କହିହେବ ନାହିଁ । ନିଜେ ଯାଇ ସେମାନଙ୍କ ଘରେ ପହଞ୍ଚି ଯାଉଥିଲେ । ଲେଖିବା ପାଇଁ ଆଗ୍ରହ ସୃଷ୍ଟି କରାଉଥିଲେ । ମୋ' ଜାଣତରେ ସେ ସମୟର କିଛି ସୁପ୍ତ ନାରୀ ପ୍ରତିଭାମାନଙ୍କୁ ସେ ଜାଗ୍ରତ କରିପାରିଥିଲେ । ଏମିତି ଅମାୟିକ ମଣିଷପଣିଆ ଅତି ନିଆରା । ମୋର ମନେଅଛି, ଦିନେ କ୍ଷେତ୍ରବାସୀ ଆସି ମୋ' ଘରେ ପହଞ୍ଚିଲେ । ଆମ ଘରେ ଦୁଃଖର ଛାଇ । ବାପା ଚାଲିଯାଇଥାନ୍ତି ଆମକୁ ଛାଡ଼ି ଏ ପୃଥିବୀରୁ । ଅଚାନକ କ୍ଷେତ୍ରବାସୀଙ୍କୁ ବାରିପଦାରେ ଦେଖି ଶୋକ ସମ୍ବରଣ କରିପାରି ନଥିଲି ସେଦିନ । ମୋତେ ଆଉଁସି ଦେଇଥିଲେ କ୍ଷେତ୍ରବାସୀ । କହିଲେ-ମୁଁ ମୋ' ଗବେଷଣା କାର୍ଯ୍ୟର ମୁଣ୍ଡି ମାରିବା ପାଇଁ ସାର୍‌ଙ୍କ ପାଖକୁ ଆସିଚି । ଆଜି କିଛି ସମୟ ପୂର୍ବରୁ ତାଙ୍କ ଘରେ ପହଞ୍ଚିବା ମାତ୍ରେ ସାର୍ କହିଲେ ପ୍ରଥମେ ଯାଇ ସନତ୍‌କୁ ଦେଖା କରି ଆସ । ସେ ବାପାଙ୍କୁ ହରାଇଛି । ମୋତେ ବସେଇ ଉଠେଇ ଦେଲେନି । ମୁଁ ଆଜି ଫେରିଯିବି । କିଛି ସମୟ ଚୁପ୍‌ଚାପ୍ ଗଳ୍ପ କରି କ୍ଷେତ୍ରବାସୀ ଚାଲିଗଲେ । ମୁଁ ମନେ ମନେ ସାର୍‌ଙ୍କୁ ସ୍ମରଣ କଲି । ଭାବିଲି କେତେ ଉଦାର ମାନବିକତାର ପୂଜାରୀ ଆପଣ । ଗବେଷଣା କାର୍ଯ୍ୟ ପରେ, ପ୍ରଥମେ ସନତ୍‌କୁ ଦେଖା କରିଆସ । ହୁଏତ ଆଉ କେହି ଏ ପଦକ କହିପାରି ନ ଥାନ୍ତେ !

ପୁନଶ୍ଚ ରେଭେନ୍ସା ମହାବିଦ୍ୟାଳୟ, ୧୯୮୦ । ରେଭେନ୍ସା ବାରଣ୍ଡାରେ ମୋତେ ଦେଖି କେତେ ନା କେତେ ଖୁସି ହୋଇଗଲେ । କ୍ଷେତ୍ରବାସୀଙ୍କ ଛତ୍ରବଜାର ସନ୍ନିକଟ ବାସଭବନର ବୈଠକଖାନା । କ୍ଷେତ୍ରବାସୀଙ୍କ ଅନେକ ସ୍ୱପ୍ନଥିଲା ଓଡ଼ିଆ ଭାଷା ସାହିତ୍ୟ ଉପରେ ଗବେଷଣାକୁ ବିସ୍ତାରିତ କରିବା ପାଇଁ । ମନେପଡୁଛି-ଦିନେ ମୋତେ କ୍ଷେତ୍ରବାସୀ ପଚାରିଲେ ସେମିନାରର ଓଡ଼ିଆ 'ସଂପାନ' କଲେ କେମିତି ହେବ । ସାର୍ ନିରବରେ ମୁଣ୍ଡବାଳ ସାଉଁଳି କହିଲେ- ଠିକ୍ ହେବ । ବ୍ୟବହାର କଲେ ସମସ୍ତେ କରିବେ । ସେଇ ବୈଠକଖାନାରୁ ରୂପ ନେଇଥିଲା ଆଜିକାର ଡ. ବେହେରାଙ୍କ ଅନେକ ସ୍ୱପ୍ନ ଓ ସାଧନାର ଅନୁଷ୍ଠାନ- ଓଡ଼ିଆ ଗବେଷଣା ପରିଷଦ । ପ୍ରସ୍ତାବ ରହିଲା ପରିଷଦ ତରଫରୁ ଏକ ପତ୍ରିକା ପ୍ରକାଶିତ ହେବ ଯେଉଁଠାରେ ଓଡ଼ିଆ ଭାଷା ସାହିତ୍ୟ ଉପରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିବା ଗବେଷକମାନଙ୍କ ଗବେଷଣାତ୍ମକ ଲେଖା ସନ୍ନିବେଶିତ ହେବ । ପାଠକମାନଙ୍କୁ ଆକୃଷ୍ଟ କରିବା ପାଇଁ କତିପୟ କବିତା ଅଥବା ଗଳ୍ପ ସ୍ଥାନିତ କରିବାକୁ ଦାବି ଉଠାଇଥିଲେ । ମାତ୍ର ଏହା ସର୍ବସମ୍ମତକ୍ରମେ କାଟ୍ ପାଇଥିଲା । ପତ୍ରିକାର ନାମ 'ଏଷଣା' । ସେ ରାଜି ହେଲେ କାରଣ ପତ୍ରିକାଟିକୁ ବଞ୍ଚାଇ ରଖିବାକୁ ହେଲେ ଅର୍ଥ ଆବଶ୍ୟକ । 'ଏଷଣା' ତାଙ୍କ ସଂପାଦନାରେ, ଡ. କ୍ଷେତ୍ରବାସୀ ନାୟକ ଓ ତାଙ୍କର ପତ୍ନୀ ଡ. ଲାବଣ୍ୟ ନାୟକଙ୍କ ସୁତତ୍ତ୍ୱାବଧାନରେ ପ୍ରକାଶିତ ହେଲା ।

କର୍ମମୟ ଅଧ୍ୟାପନା ଜୀବନରୁ ଅବସର ପରେ ବି ସେ ଚୁପ୍ ହୋଇ ବସି ନଥିଲେ । କ୍ଷେତ୍ରବାସୀଙ୍କ ଅକାଳ ବିୟୋଗ ପରେ ଗବେଷଣା ପରିଷଦ ଓ 'ଏଷଣା' ଉଭୟ କେମିତି ଧୀର ହୋଇଗଲେ । ସେ କିନ୍ତୁ ଏ ଦୁହିଁଙ୍କୁ ବଞ୍ଚାଇ ରଖିବା ପାଇଁ ସବୁ ମୁହୂର୍ତ୍ତରେ ସଂଗ୍ରାମ କରୁଥିଲେ । ମାତ୍ର ନିଜସ୍ୱ ସ୍ୱାସ୍ଥ୍ୟ, ପତ୍ନୀଙ୍କ ସ୍ୱାସ୍ଥ୍ୟ ନେଇ ଚିନ୍ତିତ ଥିଲାବେଳେ ଚଡ଼କ ପଡ଼ିଲା ତାଙ୍କ ଜୀବନରେ ନିଜ ପୁତ୍ରକୁ ହରାଇ । ପୁତ୍ରଶୋକ ହୁଏ ତ ତାଙ୍କୁ ଶଯ୍ୟାଶାୟୀ କରିଦେଲା । ତାଙ୍କ କଲ୍ୟାଣୀନଗର ବାସଗୃହକୁ ଯାଇଥିଲି । ମୋତେ ଦେଖି ଆଖି ଛଳ ଛଳ ହୋଇଗଲା ତାଙ୍କର । ବ୍ୟକ୍ତିଗତ, ସାହିତ୍ୟିକ ଭାବର କିଛି ଆଦାନ ପ୍ରଦାନ ହୋଇଥିଲା ସେଦିନ । ଯା'ଭିତରେ ଅନେକ ପ୍ରତିଷ୍ଠିତ ସାହିତ୍ୟିକଙ୍କୁ ପରିଷଦ ତରଫରୁ ପ୍ରତିବର୍ଷ ବାର୍ଷିକ ମିଳନୀ ଉତ୍ସବରେ ସମ୍ମାନିତ କରାଯାଇଥିଲା । ଗବେଷଣା ପରିଷଦର କିଛି ସଦସ୍ୟ କୃଷ୍ଣଚରଣ କାବ୍ୟପୁରୁଷ ନାମରେ ଅନ୍ୟ ଏକ ପୁରସ୍କାର ପ୍ରଦାନ କରିବାକୁ ସ୍ଥିର କଲେ; କାରଣ ଏହା ଥିଲା ଡ. ବେହେରାଙ୍କର ଅନ୍ୟ ଏକ ସ୍ୱପ୍ନ । ଶଯ୍ୟାଶାୟୀ ହୋଇ ମଧ୍ୟ ମୋତେ ସେ କେମିତି ମନେ ପକାଇ ପାରିଲେ ମୁଁ ଜାଣିନାହିଁ । ଗତବର୍ଷ ଦିନେ ସନ୍ଧ୍ୟା ପରେ ପରେ ପ୍ରଥମେ ଡ. ମନ୍ଦାକିନୀ ଦାସ ଏବଂ ପରେ ଡ. ବିଜୟାନନ୍ଦ ସିଂ ଫୋନରେ ଜଣାଇଲେ ଯେ ମୋତେ କୁଆଡ଼େ 'କୃଷ୍ଣଚରଣ କାବ୍ୟପୁରୁଷ ପୁରସ୍କାର'

ମିଳିବା ପାଇଁ ସ୍ଥିର ହୋଇଚି । ମନେ ମନେ ଭାବିଲି ମୋ' ପରି ଜଣେ ସାଧାରଣ କାବ୍ୟସ୍ରଷ୍ଟାକୁ ଡ.ବେହେରାଙ୍କ ପରି ଜଣେ ନିର୍ଭୀକ ସ୍ରଷ୍ଟା ମଣିଷଟି ହିଁ ସମ୍ମାନିତ କରିବାକୁ ଇଚ୍ଛା କରିବ । ରାମଚନ୍ଦ୍ରଭବନର ସେଇ ବାର୍ଷିକ ଅଧିବେଶନକୁ ସେ ଆସିପାରି ନଥିଲେ ନିଜର ସ୍ୱାସ୍ଥ୍ୟ ସମସ୍ୟା ପାଇଁ । ମୁଁ ବି ଏତେ ଅଭାଗା ଯେ ମୋ ନିଜର ପାରିପାର୍ଶ୍ୱିକ ଅବସ୍ଥା ପାଇଁ ଥରଟିଏ ଯାଇ ଡ. ବେହେରାଙ୍କୁ ସାକ୍ଷାତ କରି ପାରିଲି ନାହିଁ । ବାରିପଦାରେ ଥିଲାବେଳେ ଖବରକାଗଜରୁ ଜାଣିଲି ଡ. ବେହେରାଙ୍କ ଦୁଃଖଦ ମୃତ୍ୟୁ ସଂପର୍କରେ । ବାକିଥିବା ଜୀବନରେ ମୁଁ ଏଥିପାଇଁ ନିଜକୁ କ୍ଷମା କରିପାରିବି ନାହିଁ । ଓଡ଼ିଆ ଭାଷା ଓ ସାହିତ୍ୟର ପୃଥିବୀରେ ସେ ଯେଉଁ ଶୂନ୍ୟତାକୁ ସାଇତି ଦେଇଗଲେ ତାକୁ ପୂରଣ ଆଉ କେହି କରିପାରିବ ମୁଁ କହିପାରୁନି । ଏତେ ଉଦାରତା, ଏତେ ଭଲପାଇବା ଆଉ ପାଇବି କେଉଁଠୁ ? ମୋ ପାଇଁ ସେ କେବଳ ଜଣେ ଗାଳ୍ପିକ, ଗବେଷକ, ସାହିତ୍ୟ ସଂଗଠକ, ଆଦର୍ଶ ଅଧ୍ୟାପକ ନ ଥିଲେ, ସେ ଥିଲେ ଅମାୟିକ, ଶାନ୍ତ, ଭଦ୍ର, ସୁସଂପର୍କର ଡୋରିରେ ସମସ୍ତଙ୍କୁ ବାନ୍ଧି ରଖିପାରିବାର ଜଣେ ସୁଦକ୍ଷ ମଣିଷ । ଯେଉଁଥିପାଇଁ କୃଷ୍ଣଚରଣ ଆମ ସାଥିରେ ଏବେବି ଅଛନ୍ତି ଓ ଚିରକାଳ ରହିବେ । ତାଙ୍କୁ ପ୍ରଣାମ କରି ରହୁଚି । ❖

# କବିଭାବରେ କୃଷ୍ଣଚରଣ

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

କବିତାପ୍ରତି ପ୍ରଥମ ସାହିତ୍ୟିକ-ଜୀବନରୁ କୃଷ୍ଣଚରଣ ଆକୃଷ୍ଟ ହୋଇଥିଲେ ବି କବିତା ପ୍ରତି ତାଙ୍କର ମାନସିକ ମେଳ ଖୁବ୍‌ଶୀଘ୍ର ହୋଇଯାଇଛି କକ୍ଷଚ୍ୟୁତ । ୧୯୫୩ ରୁ ୧୯୫୬ ମଧ୍ୟରେ ତାଙ୍କର ଦୁଇଟି କୃଶକାୟ ସୃଷ୍ଟିରେ କବିତା ସଂଖ୍ୟା କୋଡ଼ିଏ ମ୍ନରେ ସୀମିତ । ଅଥଚ ନାମ ଦୃଷ୍ଟିରୁ ସଂକଳନ 'ଚା' କପ୍‌ରେ ଝଡ଼' ଓ '୫୪ ଭାନୁବାଇ ଲେନ' ଦେଇଥିଲା କିଛି ନୂତନ ପ୍ରତିଶ୍ରୁତି ଯାହାକୁ ରକ୍ଷା କରି ପାରିଥିଲେ ୧୯୫୦ରୁ ସଚ୍ଚିବାବୁଙ୍କ କବିତାରେ ଆସିଥିବା କ୍ରମ ବିଲୀୟମାନ ପ୍ରଗତିବାଦୀଧାରାର ଉତ୍ତରସ୍ୱରି ଭାବରେ କୃଷ୍ଣଚରଣ କାବ୍ୟ ପ୍ରତିଷ୍ଠା ଲାଭ କରିବାର ଯଥେଷ୍ଟ ସମ୍ଭାବନା ମିଳିଥିଲା । ଏଇ ଦଶନ୍ଧି ଅର୍ଥାତ୍ ଷଷ୍ଠଦଶକ(୧୯୫୦-୧୯୬୦) ଥିଲା ଓଡ଼ିଆ କବିତାରେ ପ୍ରୟୋଗବାଦୀ ଧାରାର ଆବର୍ତ୍ତ ସମୟ- ଯେଉଁ ସମୟରେ କି ସଚ୍ଚିବାବୁଙ୍କ ଉଗ୍ର ସାମ୍ୟବାଦୀ ସ୍ୱର କ୍ରମେ ନିମିଳିତ ହୋଇ ପରୀକ୍ଷା ପ୍ରବଣତା ମଧ୍ୟରେ ନୂତନରେ ରାହା ଖୋଜୁଥିଲା ଓ 'ନୂତନ କବିତା' ନାମରେ କବିଗୁରୁପ୍ରସାଦ ଓ ଭାନୁଜୀ ରାଓଙ୍କ ଯୁଗ୍ମସୃଷ୍ଟି(୧୯୫୫) କିଛି ନୂତନ ସମ୍ଭାବନା ଆଣି ଆତ୍ମ ପ୍ରକାଶ କରିଥିଲା । ଅର୍ଥାତ୍ ସଜ୍ଞାନ ସଚେତନ ଭାବେ ସଚ୍ଚିବାବୁ ଏ ସମୟରେ ପାଣ୍ଡୁଲିପି । ବା 'ବାଜିରାଉତ'(୧୯୪୧)ର ଦୁର୍ଗର କାବ୍ୟସ୍ୱରକୁ ନୂତନତା ନାମରେ ପରିହାର କରି ବସିଥିଲେ ଯଦିଓ କେତେକ ତରୁଣଙ୍କ ସେ ସ୍ଥାନ ଅଧିକାର କରିବାର ସ୍ପର୍ଦ୍ଧାରେ ଲେଖନୀ ଚାଳନା କରୁଥିଲେ । ସେଇମାନଙ୍କ ମଧ୍ୟରେ କବି ରଘୁନାଥ ଦାସ, ମନୋଜ ଦାସ, କୃଷ୍ଣଚରଣ ବେହେରା, ରବୀନ୍ଦ୍ର ନାଥ ସିଂ, ଦୁର୍ଗାଚରଣ ସାମନ୍ତ ଥିଲେ ଉଲ୍ଲେଖଯୋଗ୍ୟ କେତୋଟି ନାମ । ଏମାନଙ୍କ ମଧ୍ୟରୁ ମନୋଜ ଦାସ, କୃଷ୍ଣଚରଣ ବେହେରା, ଦୁର୍ଗାଚରଣ ସାମନ୍ତ ଥିଲେ କାବ୍ୟସାଧନାରେ କ୍ଷୀଣାୟୁ, କାରଣ ସମ୍ଭବତଃ ସାହିତ୍ୟରେ ଅନ୍ୟକୌଣସି ବିଭାବ ସେମାନଙ୍କ ପାଇଁ ଅଧିକ ଆକର୍ଷଣୀୟ ହୋଇ ଉଠିଥିଲା । ଅବିସମ୍ବାଦିତ ଭାବେ କୁହାଯାଇପାରେ ଏଇ ଦଶକରେ ହିଁ ମନୋଜ ଦାସ ଓ କୃଷ୍ଣଚରଣ କବିତାର ଆକର୍ଷଣୀୟ ଭାବ-ବସ୍ତୁକୁ ଛାଡ଼ି କ୍ଷୁଦ୍ରଗଳ୍ପରେ

ଅଧିକ ସିଦ୍ଧି ଓ ସଫଳତା ଲାଭ ପାଇଁ ସାରିଣୀ ବାଛି ନେଇଥିଲେ ସେଥିପାଇଁ କାବ୍ୟଲାଳନା ସ୍ୱତଃ ଦରିଦ୍ର ହୋଇ ପଡ଼ିଥିଲା । ଏପରିକି ଏଇ ଦୁଇ ସାହିତ୍ୟ ସ୍ରଷ୍ଟାଙ୍କ କାବ୍ୟସମ୍ଭାର (ଯାହା ଦୁଇ ତିନୋଟି ମ୍ନରେ ସୀମିତ) ଅପେକ୍ଷା ଗଦ୍ୟସମ୍ଭାର-ଯେ ବହୁଗୁଣ ଅଧିକ ଏଥିରେ ଦ୍ୱିରୁକ୍ତିର ଅବକାଶ ନାହିଁ । ସମ୍ଭବତଃ ଏ ତରୁଣ କବିଦ୍ୱୟ ନିଜେ ନିଜେ ସେମାନଙ୍କ ଆତ୍ମପରିଚୟର ରାହା ଭାବେ ମୂଳରୁ ହିଁ ଗଳ୍ପକୁ ଗ୍ରହଣ କରି ନେଇଥିଲେ ଗଳ୍ପଗୁଚ୍ଛର ସୃଷ୍ଟି ସଂଖ୍ୟା ତାହା ହିଁ ପ୍ରତିପାଦନ କରେ । କୃଷ୍ଣଚରଣଙ୍କ ଗଳ୍ପପୁସ୍ତକ ସଂଖ୍ୟା ବାର ଥିଲାବେଳେ କବିତା ପୁସ୍ତକ ସଂଖ୍ୟା ଥିଲା ମାତ୍ର ଚାରୋଟି । ତନ୍ମଧ୍ୟରୁ 'ପିପାସାର ପ୍ରାର୍ଥନା' କବିତା ସଂକଳନଟି ଅଧ୍ୟାପକ ବୈଷ୍ଣବଚରଣ ବଳଙ୍କ ସମବାୟରେ ରଚିତ ହୋଇଥିଲା ବେଳେ ୧୯୮୩ରେ ପ୍ରକାଶିତ 'ଲଘୁପଞ୍ଚକ' ଥିଲା ଲିମେରିକ୍‌ର ଆଦିସ୍ରଷ୍ଟା ପାଶ୍ଚାତ୍ୟ କବି ଏଡ୍‌ୱାର୍ଡ୍ ଲିୟରଙ୍କ ଅନୁସରଣରେ ଲିଖିତ କେତୋଟି ପାଞ୍ଚପାଦିଆ ଲଘୁ ଓ ବ୍ୟଙ୍ଗାତ୍ମକ କବିତା ଯାହା ଓଡ଼ିଆ ସାହିତ୍ୟରେ ଆଦୌ ପାଙ୍‌କ୍ତେୟ ହୋଇନାହିଁ । କେବଳ ଡକ୍ଟର ବେହେରାଙ୍କ ଏ ଲଘୁପଞ୍ଚକ ନୁହେଁ ଆଗରୁ କୁନ୍ତଳା କୁମାରୀ, କୁଂଜବିହାରୀ ଦାଶ ଓ ବିଦ୍ୟୁତ୍‌ପ୍ରଭା ଆଦି କବିମାନେ ଯେ ଏପରି କିଛି ଲଘୁକବିତା ଲେଖିଯାଇଛନ୍ତି ତାହା ମଧ୍ୟ ପାଙ୍‌କ୍ତେୟ ହୋଇନାହିଁ । ମୋର ତ ଯେପରି ମନେହୁଏ ଓଡ଼ିଆ କବିତାରେ ନିଜକୁ ଦୃଢ଼ଭାବେ ଠିଆ କରିବାର ସଂକଳ୍ପକୁ ସେ ଜାଣିଜାଣି ହାତଛଡ଼ା କରିଛନ୍ତି କାରଣ ସେଥିପାଇଁ ସେ ମାନସିକ ଦୃଢ଼ତା ଓ ଅଖଣ୍ଡ ଲାଳନାରୁ ବଂଚିତ ହୋଇଥିଲେ । ଅଥଚ ସମାଲୋଚନା ସାହିତ୍ୟରେ ସେ ଯେ ଜଣେ ଶକ୍ତିଶାଳୀ ସ୍ରଷ୍ଟା ଏହାକୁ କେହି ଅବଜ୍ଞା କରି ପାରିବେ ନାହିଁ । ପୁଣି ଗବେଷଣା ଓ ସାଂଗଠନିକ ସାରସ୍ୱତ ଭୂମିକାରେ ସେ ଯେ ଅନତିକ୍ରମଣୀୟ ଏହା ଯେ କେହି ସ୍ୱୀକାର କରିବେ । ମୋ ଜୀବନକୁ ମୁଁ ବୁଝିଛି ଯେ ଯେଉଁମାନେ ସମାଲୋଚନାକୁ ନିଜର ସାରସ୍ୱତ କ୍ଷେତ୍ରଭାବେ ବାଛି ନିଅନ୍ତି ସେମାନେ କବିତା ପରି ଏକ ଆବେଗିକ ସାହିତ୍ୟିକ ଉତ୍ସରୁ ସ୍ୱତଃ କକ୍ଷଚ୍ୟୁତ ହେବାକୁ ବାଧ୍ୟ ହୁଅନ୍ତି । ତେଣୁ କବି ଭାବେ ତାଙ୍କର ଧାରାବାହିକ ପ୍ରଯତ୍ନ ଅଭାବରୁ ଉତ୍ତର ଷାଠିଏରେ ଶ୍ରୀ ବେହେରାଙ୍କ କାବ୍ୟଉତ୍ସ ସଂପୂର୍ଣ୍ଣ ଶୁଷ୍କ ହୋଇ ଯାଇଥିଲେ ବି ଉତ୍ତର-ପଚାଶରେ ତରୁଣସୁଲଭ ଉଦ୍ଦୀପନାରେ ସେ ତାଙ୍କୁ କବିତାରେ ସମାଜର ଅପାଙ୍‌କ୍ତେୟ ଓ ଅଧଃପତିତ ମଣିଷ ପ୍ରତି ଯେଉଁ ସମମର୍ମିତା ପ୍ରକାଶ କରିଥିଲେ ତାହା କଦାପି ଉପେକ୍ଷଣୀୟ ହୋଇ ନପାରେ । ଏହି 'ଚା' କପ୍‌ରେ ଝଡ଼' କବିତା ସଂକଳନର ମୁଖବନ୍ଧରେ ଅଧ୍ୟାପକ ଚିନ୍ତାମଣି ବେହେରା ମନ୍ତବ୍ୟ ଦେଇଥିଲେ- 'ଅଧିକାଂଶ କବିତାରେ ପ୍ରଗତିଶୀଳତାର ସ୍ୱାକ୍ଷର ସ୍ପଷ୍ଟ । କେତେକ କବିତାରେ ଆଜିର ଅଶାନ୍ତ, ଅନିଶ୍ଚିତ, ବ୍ୟର୍ଥ ଓ ବିପର୍ଯ୍ୟସ୍ତ ଜୀବନକୁ ଶାନ୍ତ, ଶ୍ୟାମଳ ଓ ଶୃଙ୍ଖଳିତ କରିବା ପାଇଁ କବି ଯେଉଁ ସଂଗ୍ରାମର ସ୍ୱର ଉଠାଇଛନ୍ତି ତାହା ଏକା ଧାରରେ

ଯେପରି ଆଗ୍ନେୟ, ଅନ୍ୟଦିଗରେ ସେହିପରି ଆଗାମୀ ଅଙ୍କୁରର ସ୍ୱପ୍ନରେ ବୀଜକଂପ୍ର ଓ ସୂର୍ଯ୍ୟୋଦୟର ସୂଚକ(୧) ଏଇ ବୈପ୍ଳବିକ ଚେତନା ସଂକଳନର 'ଘୂର୍ଣ୍ଣିବାୟୁର ପତ୍ର', ବିଦ୍ରୋହୀ, ଭୂତଭୟ, ଇଙ୍ଗିତ, ମାନସଭୂମି, ମଶାଲ ବଢ଼ାଇଦିଅ ଆଦି କବିତାରେ ବେଶ୍ ପରିଲକ୍ଷିତ ହୁଏ । 'ଆଦାମ୍‌ର ଆତ୍ମହତ୍ୟା କବିତାରେ ଏଇ ଭାବଧାରା କିପରି ପ୍ରକଟିତ ହୋଇଛି ଲକ୍ଷ୍ୟ କରନ୍ତୁ ପାଠକେ !

"ମାନବର ଶିକାର ମାନବ; ମୈତ୍ରୀ ପ୍ରୀତି ମିଥ୍ୟା ଅଭିନୟ
ମୋ ବଂଶର କି ଅଧଃପତନ ଦେଖ ପ୍ରିୟେ ଅତୀବ ଦୁଃସହ ।"

ପୁଣି 'ଭୂତଭୟ' କବିତାରେ ସେ ଲେଖନ୍ତି-

"ଶାନ୍ତିର ମହାମନ୍ତ୍ର ମୁଖରେ, ହାତରେ କମାଣ ଅସ୍ତ୍ର
ଉଆସର ଚାରୁ ମୈତ୍ରୀ ମହଲେ, ସଭିଏଁ ଆଶଙ୍କାତ୍ରସ୍ତ ।"

ଏସବୁ କବିତା ପଙ୍‌କ୍ତିରେ ଯେଉଁ ଭାବଚେତନା ସଂପ୍ରସାରିତ ହୋଇଛି, ତାହା ଶ୍ରୀ ବେହେରାଙ୍କ କବିତାର ଏକମାତ୍ର ବା ମୁଖ୍ୟ ପରିଚୟ ନ ହେଲେ ବି ତାଙ୍କ କବିତାରେ ଏଇ ଆଭିମୁଖ୍ୟ ବେଶ୍ ଲୋଭନୀୟ ଭାବେ ପ୍ରକାଶିତ ହୋଇଛି । ଆଜିର ବିପର୍ଯ୍ୟସ୍ତ ଓ ବିଶୃଙ୍ଖଳ ପରିବେଶକୁ ସୁଧାରିବାକୁ ସେ ନୀଳକଣ୍ଠଙ୍କ ପରି ସମାଜର ସମସ୍ତ ଗରଳ ପାନ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ତେଣୁ ରାଜପଥରେ ଠିଆ ହୋଇ ସେ ଶୁଣାଇଛନ୍ତି ତାଙ୍କ ବିଦ୍ରୋହର କଣ୍ଠସର-

"ସୁନ୍ଦର ପୂଜା ଆଉକ୍ଷଣ ପାଇଁ, ଦାରୁଣଭୀଷଣ ସହ
ସଂଗ୍ରାମ କରି ଦେଖେ ମୁଁ ଜୀବନେ ମନ୍ଦର କେତେ ମୋହ ।"

ଏ ସ୍ୱର ଅତିବାସ୍ତବବାଦୀ କବିର ସ୍ୱର ପରି ଅବଚେତନର ଉଦ୍‌ବୋଧନ ମାତ୍ର । କବି ଦୃପ୍ତ କଣ୍ଠରେ ଆର୍ତ୍ତ ଓ ପୀଡ଼ିତର କଣ୍ଠ ସହିତ କଣ୍ଠ ମିଳେଇ ଯେପରି ନୂତନ ଆଲୋକର ଉତ୍ସ ପାଇଁ ଅପେକ୍ଷା କରନ୍ତି । ସୂର୍ଯ୍ୟ ଏଠାରେ ସେଇ ଶୁଭଙ୍କର ସାମାଜିକ ଦର୍ଶନର ପ୍ରତୀକ ବ୍ୟତୀତ ଆଉ ଅନ୍ୟ କିଛି ନୁହେଁ । 'ଇଂଗିତ' କବିତାର ନିମ୍ନ ପଙ୍‌କ୍ତିମାନଙ୍କର ବେଶ୍ ଅର୍ଥପୂର୍ଣ୍ଣ ଭାବେ ସୂଚୀତ ହୋଇଛି-

ଉଦୟ ପାଇଁ ତୁ କଂଠ 'ଟାଇ ଆହ୍ୱାନ ଦିଅ ଆଜି
ଦଳିତ ପୀଡ଼ିତ ଅବହେଳିତ ନିଦ୍ରା ଯାଉରେ ଭାଜି ।
ଅନ୍ଧାର ଯେତେ ହେଉଛି ଗଭୀର ରାତ୍ରି ହେଇଚି ଶେଷ
ପୂର୍ବ ଦିଗରୁ ଇଂଗିତ ମିଳେ ହେବ ଆଲୋକର ଉତ୍ସ ।"

ଶେଷରେ କବି ମାନବ ଜାତିର ମହାସିନ୍ଧୁ ମଧ୍ୟରେ ହଜିଯିବାକୁ ଚାହିଁଛନ୍ତି । କାରଣ ସେ ଏକ ବୃହତ୍ତର ସମାଜଚେତନାରେ ଅଂଶୀଭୂତ ହେବାକୁ ଆଗ୍ରହଶୀଳ ।

ତେଣୁ ଏକ ନୂତନ ସମାଜର ବୈତାଳିକ ଭାବେ ସେ ମୁକ୍ତ କଣ୍ଠରେ ଗାନ କରିଛନ୍ତି-

"କାଚପାତ୍ରରେ ମଉଳି ଆସୁଚି ଡଟକା ବଉଳ କଢ଼
ସତେ କ'ଣ ଆଜି ଶାନ୍ତ ହେବ ମୋ ଚା' କପ୍‌ରେ ଝଡ଼ ।"

'ଚା' କପ୍‌ରେ ଝଡ଼' ସମାଜରେ ଏକ ବ୍ୟାପକ ବାତ୍ୟାର ବିକ୍ଷୋଭ ହୋଇ ନ ପାରେ କିନ୍ତୁ କ୍ଷଣିକ, ନିରର୍ଥକ ଓ ଉଦ୍ଦେଶ୍ୟ ବିରହିତ ହୋଇ ନ ପାରେ । ଡକ୍ଟର ନରେନ୍ଦ୍ର ନାଥ ମିଶ୍ର ଏ ବହି ସଂପର୍କରେ ଲେଖିଛନ୍ତି- 'ବାସ୍ତବ ସନ୍ଧାନୀ ସ୍ରଷ୍ଟା ଆମକୁ ସୂଚେଇ ଦେଇ ପାରନ୍ତି ଆଜି ଆମ ଶୋଷଣର ଗଳିତ କୁଷ୍ଠକ୍ଷତ ସାମାଜିକ ଆଧାର ଏକ ଝଲମଲ କାଚ ପାତ୍ରରୁ ଅଧିକ ନୁହେଁ; ଯେ କୌଣସି ଏକ ଶୁଭ ମୁହୂର୍ତ୍ତରେ ଚେତନାର ଆଘାତରେ ତାହା ଭାଙ୍ଗିଯାଇ ନୂତନ ରୂପ ଗ୍ରହଣ କରିପାରେ ଏବଂ ଆଜିର ଆଶ୍ୱସ୍ତି ଚା'କପ୍‌ରେ ଝଡ଼ ପରି ବିଲୟ ଭଜିପାରେ ।"

ଶ୍ରୀ ବେହେରାଙ୍କ ପରବର୍ତ୍ତୀ ସୃଷ୍ଟି '୫୪ ଭାନୁବାଈ ଲେନ୍'ରେ ସମାଜର ଏହି ଆର୍ଥନୈତିକ ବୈଷମ୍ୟଜନିତ ଅଧୋଗତିକୁ କେନ୍ଦ୍ରକରି ଭାନୁମତୀଙ୍କ ଜୀବନରେ କରୁଣ ପରିସ୍ଥିତି ବର୍ଣ୍ଣିତ ହୋଇଛି । ସେ ହୋଇ ପାରିଥାନ୍ତେ ଜଣେ କଲ୍ୟାଣମୟୀ ଭାରତୀୟ ଗୃହିଣୀ, ସ୍ୱାମୀର ପତ୍ନୀ, ସନ୍ତାନର ଜନନୀ; କିନ୍ତୁ ଦୁର୍ଯୋଗର ଶିକାର ହୋଇ ତାଙ୍କୁ କଲିକତାର କୁଖ୍ୟାତ ଗଳିରେ 'red light area' ଏପରି ଏକ ଘୃଣ୍ୟ ଜୀବନ ଯାପନ କରିବାକୁ ବାଧ ହୁଏ- ତାହାହିଁ ଆମ ସାମାଜିକ ଜୀବନର ଅସହାୟତାର ସାକ୍ଷ୍ୟ ଜୀବନର ଅସହାୟତାର ସାକ୍ଷ୍ୟ ବହନ କରେ । ଭାନୁମତୀ ପରିସ୍ଥିତିର ଚାପରେ ପଡ଼ି ଭାନୁବାଈ ହେବାରେ ତେଣୁ କୌଣସି ବୈଚିତ୍ର୍ୟ ନାହିଁ । ଏହି କାହାଣୀମୁଖୀ ପ୍ରଭାବବାଦୀ କବିତାଟିରେ ଅତି ନିରାଭରଣ ଶୈଳୀରେ କବି ଗୋଟିଏ ଜୀବନର ଯେଉଁ ବିପର୍ଯ୍ୟସ୍ତ ଚିତ୍ର ଅଙ୍କନ କରିଛନ୍ତି ତାହା ଆମ ସମାଜର ତଥାକଥିତ ଆବରଣକୁ ଖୋଲିଦେବାରେ ଖୁବ୍ ଲକ୍ଷ୍ୟନିଷ୍ଠ ମନେହୁଏ । ଏଇ ଭାବନାର ପରବର୍ତ୍ତୀ ଚିତ୍ର ମିଳେ ତାଙ୍କର ଆଉ ଏକ ବାସ୍ତବବାଦୀ କବିତା 'ଏଇ ଝିଅଟିକି ଜାଣ କି ?' ୧୯୫୬ ମସିହାରେ ରଚିତ ଏ କବିତାଟିରେ ସେ ଯେଉଁ ରିଫ୍ୟୁଜି ଝିଅଟିର ଚିତ୍ର ପରିବେଷଣ କରିଛନ୍ତି ସେ କେବଳ ଦୁର୍ଭାଗ୍ୟର ଶିକାର ନୁହେଁ, ମଣିଷର ହୀନ ଅବିଚାରର ଶରବ୍ୟ ହୋଇ ବାସଚ୍ୟୁତ ଭାବେ ଭ୍ରାମ୍ୟମାଣ ମଧ । ରାଜରାସ୍ତାରୁ ରେସ୍ତୋରାଁ ଯାଏ ତା'ର ଅଧିବାସ ସର୍ବତ୍ର । ଅର୍ଥନୀତିର କ୍ରୂର ନିଷ୍ପେଷଣରେ ଏଇ ନାରୀ ତାର୍ ରୁଗ୍‌ଣ ସ୍ୱାମୀ ମୁହଁରେ ପଥ୍ୟ ଓ ସନ୍ତାନ ମୁହଁରେ ଆହାର ଦେବାପାଇଁ ଯେକୌଣସି ନୀଚ ବୃତ୍ତିକୁ ବାଛି ନେବାକୁ ବାଧ୍ୟ ହୁଏ । ଶେଷରେ କବି ତାକୁ ରିଫ୍ୟୁଜି କଲୋନୀରେ ସନ୍ଧାନ କରନ୍ତି ।।୨। ଦେଖନ୍ତୁ କବି ବେହେରାଙ୍କ ଲେଖନୀରେ ତା' ପ୍ରତି ପ୍ରକାଶ ପାଇଥିବା ମାନବବାଦୀ ଆକୁଳତାର ସ୍ୱର କେତେ ମର୍ମଦାହୀ-

ତିନିବରଷର କୁନା ପୁଅ ମୁଖେ ଆଧାର ଦିଅଇ ଆଦରରେ
ମାଆ ଡାକ ଶୁଣି ପରାଣ ତାହାର ଉଛୁଳେ ପୁଲକ ଜୁଆରରେ,
ରୁଗ୍‌ଣ ସ୍ୱାମୀ ତା' କତରା ଧରିଚି, ଭୋଗୁଚି ହେଲାଣି କେତେ ଦିନ,
'ଆଜି କେତେ ହେଲା ?' ପଚାରର ହୋଇ ଖୁସିମନ
ପାଞ୍ଚୋଟି ନୋଟ୍ ଝିଅଟି ହାତରେ ଉପରକୁ ଟେକି ଦେଖାଇଲା
ସ୍ୱାମୀପାଦ ଧାରେ ଆଉଁଶୁ ଆଉଁଶୁ ନୟନ ଲୋତିକେ ଭରିଗଲା ।'

୧୯୫୬ ଲିଖିତ୍ ଓ 'ଧରିତ୍ରୀ' ନାମକ ଏକ କବିତା ସଂକଳନରେ ପ୍ରକାଶିତ ଏହି କବିତାଟିର କାରୁଣ୍ୟ ଯେ କୌଣସି ପାଠକକୁ ନିଶ୍ଚୟ ଅଶ୍ରୁସ୍ନାତ କରିଦେବ । ମୋର ତ ଯେପରି ମନେହୁଏ ଏଇ କବିତାଟିରୁ ପ୍ରେରଣା ନେଇ କବି ରମାକାନ୍ତ ରଥ ଅନେକ ବର୍ଷର ବ୍ୟବଧାନରେ 'ଚନ୍ଦ୍ରମାର ଚୂଡ଼ି' କବିତାଟିକୁ ଲେଖିପାରିଥାନ୍ତି ଅବଶ୍ୟ କେତେକ ପାରିବେଶିକ ପରିବର୍ତ୍ତନ ସହ । ମଣିଷର ଜୀବନରେ ଏହିପରି ଅନେକ ଦୁର୍ଗତି ଓ ଦୁଃସ୍ଥିତି ତଥା ସାମାଜିକ ବିରୋଧାଭାସ ଉପରେ ଶ୍ରୀ ବେହେରାଙ୍କ କାବ୍ୟଚେତନା ଗଢ଼ିଉଠିଥିଲେ ବି ଉତ୍ତର ଷାଠିଏରେ କବି ଅତି ଅସ୍ୱାଭାବିକ ଭାବେ ନିରବ ହୋଇ ଗଳ୍ପ ଜଗତରେ ହଜି ଗଲେ । ତାଙ୍କ କବିତାରେ ପ୍ରକାଶିତ ବାମପନ୍ଥୀ ଚେତନା କ୍ରମେ ପ୍ରଗତିବାଦୀ ଗଳ୍ପ ଚେତନାରେ ପ୍ରେମ, ଘୃଣା, ଆନନ୍ଦ, ଦୁଃଖ, ଦ୍ୱେଷ, ହାସ ଓ ଅଶ୍ରୁ ଆଦିକୁ କେନ୍ଦ୍ରକରି ଏକ ବୃହତ୍ତର ମାନଚିତ୍ରକୁ ଆବୋରି ବସିଛି । ସେ ନିଜେ କହିଛନ୍ତି- 'ଜୀବନ-ବିଶ୍ୱାସ, ସମାଜ-ସଚେତନତା ଓ ଭବିଷ୍ୟତ ପ୍ରତି ହେଉଛି ପ୍ରଗତି ସାହିତ୍ୟର କଞ୍ଚାମାଲ, ପ୍ରଗତିଶୀଳ ଲେଖକ ସାହିତ୍ୟର କଞ୍ଚାମାଲକୁ ଯୁଗୋପଯୋଗୀ, ଜନପ୍ରିୟ ଓ ଶିଳ୍ପ ସୁଲଭ ଆଙ୍ଗିକ ପ୍ରକାଶ କରେ; କିନ୍ତୁ ଆଙ୍ଗିକକୁ ଭାବଧାରାଠାରୁ କଦାପି ଉଚ୍ଚତର ସ୍ଥାନ ଦିଏନା । ତେଣୁ ପ୍ରଗତିସାହିତ୍ୟର ଆଙ୍ଗିକ ଗୌଣ, ବିଷୟ ବସ୍ତୁ ମୁଖ୍ୟ ।୩। ତାଙ୍କ ପରବର୍ତ୍ତୀ କାବ୍ୟ ରଚନାରେ ଏହି ପ୍ରତିଶ୍ରୁତି ମିଳି ନଥିଲେ ମଧ୍ୟ କବିତାରୁ ଗଳ୍ପରାଜ୍ୟକୁ ନିଷ୍କ୍ରମଣରେ ତାଙ୍କ କାବ୍ୟ ଭାବନା ଶୋଚନୀୟ ଭାବେ ଆହତ ହୋଇଥିବା ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ । ❖

# ଏକ ସ୍ଥିତପ୍ରଜ୍ଞ ବ୍ୟକ୍ତିତ୍ୱ

ଡକ୍ଟର ବୀରେନ୍ଦ୍ର କୁମାର ନାୟକ

ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପନା ଓ ଗବେଷଣା ଜଗତରେ ଡକ୍ଟର କୃଷ୍ଣଚରଣ ବେହେରା ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ ଏହା କହିବା ବାହୁଲ୍ୟ ମାତ୍ର । ହୁଏତ ଅନେକେ ଏହି ଭଳି ପରିଚିତିର ଅଧିକାରୀ ହୋଇଥିବେ । କିନ୍ତୁ ଯେଉଁ ବ୍ୟକ୍ତିତ୍ୱଟି ତାଙ୍କର ଅନନ୍ୟ ଥିଲା ତାହା ହେଉଛି ଓଡ଼ିଆ ଭାଷା ସାହିତ୍ୟରେ ଆଗ୍ରହୀ ପ୍ରତ୍ୟେକ ତରୁଣର ଆଗ୍ରହକୁ ବହୁଗୁଣିତ କରିବା ପାଇଁ ଉତ୍ସାହିତ କରିବା । ମନେପଡ଼ୁଛି ୪୭ ବର୍ଷ ତଳର କଥା । ଏ ଲେଖକ ସେତେବେଳେ ବନାରସ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଗଣିତ ଛାତ୍ର । ମୋର ମାଉସୀ ଝିଅ ଭଉଣୀଙ୍କର ସାଂଗ କବୟିତ୍ରୀ କମଳ କୁମାରୀ ରାଉତ ମୋତେ କୃଷ୍ଣଚରଣ ସାର୍‌ଙ୍କ ସହ ପରିଚିତ କରାଇଦେଲେ ଓ ତାଙ୍କୁ କହିଲେ ଯେ ମୋର ଲେଖା ଲେଖିରେ ରୁଚି ଅଛି । ଏତିକି ଯଥେଷ୍ଟ ଥିଲା ସାର୍‌ଙ୍କ ପାଇଁ । ସେ ମୋତେ ଉତ୍ସାହିତ କଲେ ଯୋଗ ଦେବା ପାଇଁ ଫୁଲବାଣୀରେ ଅନୁଷ୍ଠିତ ହେବାକୁ ଥିବା ଓଡ଼ିଆ ଯୁବକ ଲେଖକ ସମ୍ମେଳନର ସପ୍ତମ ବାର୍ଷିକ ଉତ୍ସବରେ । ଏହା ଥିଲା ୧୯୭୧ ମସିହାର ଫେବ୍ରୁଆରି ମାସ । ଏଇଠି ଦେଖିଲି ପ୍ରତିଷ୍ଠିତ କବି ସଚ୍ଚି ରାଉତରାୟଙ୍କୁ, ଅନନ୍ତ ପଟ୍ଟନାୟକଙ୍କୁ, ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କୁ । ଏଇଠି ଦେଖିଲି ସମ୍ମାନସ୍ପଦା ଗାଳ୍ପିକା ବୀଣାପାଣି ମହାନ୍ତିଙ୍କୁ, ସମ୍ପାଦିକା, ଲେଖିକା ବୀଣା ମହାପାତ୍ରଙ୍କୁ । ଏଇଠି ମୋର ଭେଟ ହେଲା ଅଗ୍ରଜ ପ୍ରତିମ ଗୁରୁ ମହାନ୍ତିଙ୍କ ସହ । ଏଇଠି ଦେଖା ହେଲେ ତରୁଣ ବାମପନ୍ଥୀ ସାହିତ୍ୟ ସାଧକ ପ୍ରସନ୍ନ ପାଟଶାଣୀ, ସଦାଶିବ ଦାସ, ଗୋବର୍ଦ୍ଧନ ପୂଜାରୀ । ଏଇଠି ଦେଖା ହେଲା ବ୍ରହ୍ମପୁରରୁ ଆସିଥିବା ଶିବରାମ ପାତ୍ରଙ୍କ ସହ, ବାଲେଶ୍ୱରରୁ ଆସିଥିବା କମଳାକାନ୍ତ ପଣ୍ଡାଙ୍କ ସହ । ଦେଖା ହେଲେ ସମ୍ମେଳନର ସର୍ବକନିଷ୍ଠ ଅଂଶ ଗ୍ରହଣକାରୀ ବ୍ରହ୍ମପୁରରୁ ଆସିଥିବା ହାଇସ୍କୁଲ ଛାତ୍ର ପ୍ରଦୀପ ମହାପାତ୍ର । ଏହି ସମ୍ମେଳନରେ ମୂଳଦୁଆ ପଡ଼ିଥିବା ସମ୍ପର୍କଗଡ଼ିକରୁ କେତେକ ତ ଆଜି ମଧ୍ୟ କାଏମ ରହିଛି । କମଳ କୁମାରୀ ରାଉତଙ୍କର ସବା ସାନ ଭଉଣୀ ସରଳା ମୋର ଧର୍ମପତ୍ନୀ ହୋଇଛନ୍ତି । ଗୁରୁ ମହାନ୍ତିଙ୍କ ସହ ମୋର ବଡ଼ ଭାଇ ସାନ ଭାଇର ସମ୍ପର୍କ । ପରବର୍ତ୍ତୀ ସମୟରେ ସଚ୍ଚି ବାବୁଙ୍କ ସହ ବିଭିନ୍ନ ମଂଚରେ କାର୍ଯ୍ୟ କରିବାର ସୁଯୋଗ

ଆସିଲା । ଶିବରାମ ବାବୁଙ୍କ ସହ ଅଶୀ ଦଶକରେ ଦେଖା ହେଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ । ମୁଁ ଅଧ୍ୟାପକ ଗଣିତ ବିଭାଗରେ ଓ ସେ ଅଧ୍ୟାପନାରୁ ଛୁଟି ନେଇ ଆସିଥାନ୍ତି ଏମ୍ ଫିଲ୍ କରିବା ପାଇଁ ଓଡିଆ ବିଭାଗରେ । ସେତିକି ବେଳେ ପ୍ରଦୀପ ମହାପାତ୍ର ସାମ୍ବାଦିକତା ବିଭାଗରେ ଅଧ୍ୟାପକ ହୋଇ ସାରିଥାନ୍ତି । ଏମାନଙ୍କ ସହ ଯେତେବେଳେ ଦେଖା ହୋଇଛି, ସ୍ମରଣ କରିଛୁ ଫୁଲବାଣୀ ସମ୍ମେଳନର ଅଭିଜ୍ଞତା । ଶିବରାମ ବାବୁ ସ୍ୱର୍ଗତ ହେଲେଣି । କିନ୍ତୁ ଶେଷ ଯାଏ ତାଙ୍କ ସହ ସମ୍ପର୍କ ଅବ୍ୟାହତ ଥିଲା । ନିକଟ ଅତୀତରେ ଗୋବର୍ଦ୍ଧନ ପୂଜାରୀଙ୍କ ସହ ଦେଖା ହେଲା । ସ୍ମରଣ କଲୁ ଫୁଲବାଣୀ ସମ୍ମେଳନର ଅଭିଜ୍ଞତା । ଫୁଲବାଣୀ ଯୁବ ଲେଖକ ସମ୍ମେଳନ ମୋ ଜୀବନରେ ଏକ ସ୍ମରଣୀୟ ଅଧ୍ୟାୟ ହୋଇ ରହିଛି ଯାହା ସମ୍ଭବ ହୋଇଥିଲା ସାର୍‌ଙ୍କ ଯୋଗୁଁ ।

ସେହି ଦିନଠାରୁ ପାରିବାରିକ ସମ୍ପର୍କ ହୋଇଗଲା ସାର୍‌ଙ୍କ ପରିବାର ସହ । ତାଙ୍କ ଝିଅ ଚୁନି, ପୁଅ ବାପୁ ଓ ଟୁଟୁର ମୁଁ ହୋଇଗଲି ନାଲୁ ଭାଇ ଓ ମୋ ସ୍ତ୍ରୀ ହୋଇଗଲେ ସରଳା ଅପା । ସାରଙ୍କ ପତ୍ନୀ ହେଲେ ଆମର ସ୍ନେହଶୀଳା ମାଉସୀ । ତାଙ୍କ ବାସଭବନରେ ପହଂଚିଲେ ସେ ଯେପରି ଖୁସି ହୋଇ ଯାଉଥିଲେ ତାହା ନ ଦେଖିଲେ ଜଣେ ଅନୁଭବ କରିପାରିବ ନାହିଁ । ଅନାବିଳ ଅତ୍ମୀୟତାର ଏକ ଅପୂର୍ବ ପରିବେଶ ସୃଷ୍ଟି ହେଉଥିଲା ।

ଭଦ୍ରକକୁ ସେ ଅନ୍ତରର ସହ ଭଲ ପାଉଥିଲେ । 'ଆମ ଭଦ୍ରକର' ବୋଲି ପରିଚୟ କରାଇବାରେ ସେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ଏହି ଆନନ୍ଦ ଦେଖିବାର ସୌଭାଗ୍ୟ ମୋତେ ପ୍ରାପ୍ତ ହୋଇଛି କାରଣ ମୋ ପତ୍ନୀ ଥିଲେ ଭଦ୍ରକ କଲେଜର ଛାତ୍ରୀ, ତାଙ୍କ ବାପ ଘର ଥିଲା ଭଦ୍ରକ ଜିଲ୍ଲାରେ, ଭଦ୍ରକ ସହରଠାରୁ ଦଶ ମାଇଲ ଦୂରରେ । ଭଦ୍ରକ କଲେଜ ହିଁ ସାର୍‌ଙ୍କ ପାଇଁ ଥିଲା ପ୍ରଥମ ପସନ୍ଦ । ସରକାର ଭଦ୍ରକ କଲେଜକୁ ନେଲା ପରେ ସେ ଗଲେ ବାରିପଦା, ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ । ତା'ପରେ ରେଭେନ୍ସା କଲେଜ, ରେଭେନ୍ସାରୁ ସରକାରୀ କଲେଜ, ଫୁଲବାଣୀ ଓ ପୁଣି ଫେରିଲେ ରେଭେନ୍ସା କଲେଜକୁ । ବୃତ୍ତିଗତ ଜୀବନରେ ଏପରି ବଦଳିକୁ କୌଣସି ଠାରେ ଅଟକାଇବାର ପ୍ରଚେଷ୍ଟା ସେ କରି ନାହାନ୍ତି । ଯଦିଓ କ୍ଷମତାରେ ଥିବା ମନ୍ତ୍ରୀ ଅଧିକାରୀଙ୍କର ପ୍ରଭାବକୁ ବ୍ୟବହାର କରି ଏହା କରିପାରିଥାନ୍ତେ । ଅନ୍ତତଃ ଫୁଲବାଣୀ କଲେଜ ବଦଳିକୁ ବଦଳାଇ ପାରିଥାନ୍ତେ । ସେତେବେଳେ ତାଙ୍କର ଜଣେ ପ୍ରିୟ ଛାତ୍ର ଥିଲେ ମନ୍ତ୍ରୀମଣ୍ଡଳରେ ପ୍ରଭାବଶାଳୀ ମନ୍ତ୍ରୀ । କିନ୍ତୁ ସେ ତ ଥିଲେ ଅତ୍ୟନ୍ତ ସ୍ୱାଭିମାନୀ । କିପରି ଅନୁରୋଧ କରନ୍ତେ ? ସେ ଗଲେ ଓ ମୁଁ ଯେତେ ଦୂର ଜାଣିଛି ସେ ବେଶ ଉପଭୋଗ କରିଥିଲେ ତାଙ୍କର ଫୁଲବାଣୀ ରହଣିକୁ ଯଦିଓ ଶ୍ୱାସ ରୋଗ ତାଙ୍କୁ ବେଳେ ବେଳେ ହଇରାଣ କରୁଥିଲା ।

ଓଡିଆ ଭାଷା ଓ ସାହିତ୍ୟରେ ଗବେଷଣାର ଏକ ମଞ୍ଚ ଭାବେ ସେ ଗଢ଼ିଥିଲେ

'ଓଡିଆ ଗବେଷଣା ପରିଷଦ', ଆଦ୍ୟ ୮୦ ଦଶକରେ । ଏହି ମଂଚରେ ସେ ଏକାଠି କରିପାରିଥିଲେ ଓଡିଆ ଭାଷା ଓ ସାହିତ୍ୟର ପ୍ରଖର ଗବେଷକମାନଙ୍କୁ ଓ ଏହି ମଂଚ ତରଫରୁ ପ୍ରକାଶ କଲେ ଏକ ନିରୋଳା ଗବେଷଣା ପତ୍ରିକା 'ଏଷଣା । ଏହା ଏକ ଉଚ୍ଚକୋଟିର ପତ୍ରିକା ଭାବେ ଖୁବ ଶୀଘ୍ର ପ୍ରତିଷ୍ଠା ଲାଭ କଲା । ଏହି ମଂଚ ଓ ପତ୍ରିକାର ସଫଳତା ସାବ୍ୟସ୍ତ କରିଥିଲା ତାଙ୍କର ସଂଗଠନ ବ୍ୟକ୍ତିତ୍ୱକୁ । ଏହା ପୂର୍ବରୁ ସେ ଯୁବଲେଖକ ସମ୍ମେଳନର ସଭାପତି ହୋଇଥିଲେ । ତାଙ୍କର ବ୍ୟକ୍ତିତ୍ୱରେ ଦୃଢ଼ତା ଥିଲା । କିନ୍ତୁ ସେ ସମ୍ମାନଶୀଳ ଥିଲେ ବିରୋଧୀ ବିଚାର ପ୍ରତି ଯାହା ଫଳରେ ଭିନ୍ନ ମତ ରଖୁଥିବା ବ୍ୟକ୍ତିମାନେ ମଧ୍ୟ ତାଙ୍କ ସହ କାର୍ଯ୍ୟ କରିବାରେ ଆଦୌ ଅସହଜ ମଣୁ ନଥିଲେ । ମୁକ୍ତ ବିଚାରର ମଣିଷ ଥିଲେ ସେ ।

ସେ ଥିଲେ ସ୍ଥିତପ୍ରଜ୍ଞ । ବିଚଳିତ ହେଉ ନଥିଲେ । 'ବେଦୀ' ଗଳ୍ପକୁ ନେଇ ଉଠିଥିବା ବିବାଦ ହେଉ ବା ଭଦ୍ରକ କଲେଜ ପରିଚାଳନାକୁ ନେଇ ଘମାଘୋଟ ବିଶୃଙ୍ଖଳା ହେଉ ତାଙ୍କୁ ବିଚଳିତ କରିପାରି ନ ଥିଲା । ପରବର୍ତ୍ତୀ କାଳରେ ତାଙ୍କର ଅତି ପ୍ରିୟ ଛାତ୍ର ଓ ଓଡ଼ିଆ ଗବେଷଣା ପରିଷଦର ପ୍ରତିଷ୍ଠାତା ସମ୍ପାଦକ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କର ଅକାଳ ମୃତ୍ୟୁ, ପରେ ପତ୍ନୀଙ୍କର ମୃତ୍ୟୁ ଓ ତା'ପରେ ତାଙ୍କର ଅତି ସ୍ନେହର କନିଷ୍ଠ ପୁତ୍ର ଟୁଟୁ (ଶୁଭକାନ୍ତ)ର ମୃତ୍ୟୁକୁ ସେ ଯେପରି ବରଦାସ୍ତ କରିଥିଲେ ତାହା ସେ ସମୟଗୁଡ଼ିକରେ ତାଙ୍କ ସହ ମିଶି ନ ଥିବା ବ୍ୟକ୍ତି ହୃଦୟଙ୍ଗମ କରି ପାରିବ ନାହିଁ ।

ଡକ୍ଟର କୃଷ୍ଣଚରଣ ବେହେରା ଜଣେ ମୌଳିକ ଗବେଷକ ଥିଲେ । ଓଡ଼ିଆ ଭାଷା ସାହିତ୍ୟର ସେ ଥିଲେ ଜଣେ ଉଚ୍ଚାଂଗ ବ୍ୟକ୍ତିତ୍ୱ । ସେ ପ୍ରକୃତରେ ଏକ ଅନୁଷ୍ଠାନ ହୋଇ ଯାଇଥିଲେ । କିନ୍ତୁ ସେ ଥିଲେ ମୂଳତଃ ଜଣେ ଉତ୍ତମ ମଣିଷ । ଆଜିର ସମୟରେ ଯେତେବେଳେ ଉତ୍ତମ ମଣିଷଙ୍କର ସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଛି, ସେତେବେଳେ କୃଷ୍ଣଚରଣ ସାରଙ୍କର ଅବର୍ତ୍ତମାନ ଆମ ସମାଜ ପାଇଁ ଏକ ବିରାଟ କ୍ଷତି ।

ତାଙ୍କର ସ୍ମୃତି ପ୍ରତି ମୋର ଭକ୍ତିପୂତ ପ୍ରଣାମ । ❖

ଅବସରପ୍ରାପ୍ତ ପ୍ରଫେସର, ଗଣିତ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ

# ମନେପଡ଼ନ୍ତି ପୂଜ୍ୟ ଅଧ୍ୟାପକ

ଡକ୍ଟର ବାବାଜୀଚରଣ ପଟ୍ଟନାୟକ

ସେ ସମୟର ରେଭେନ୍ସା ମହାବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ଛାତ୍ର ଥିବା କାଳରେ ପୁଣ୍ୟ ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଶିକ୍ଷୟିତୃତ୍ୱ ସଂପର୍କରେ ଆସିଛି । ସେଦିନର କଥା ସ୍ମରଣ କଲେ, ଆଜି ଏ ଗଡ଼ାଣି ବୟସର ଆପେ କେଉଁଠି ଲାଖି ଯାଇ ସାମାନ୍ୟ ଉତ୍‌ଫୁଲ୍ଲ ହେଇ ଆସୁଥିବା ମୁହୂର୍ତ୍ତ ବେଦନା ଦଗ୍ଧତାରେ ବିଷଣ୍ଣ କରେ । ଅସ୍ମିତା ବିସ୍ମୟର ଭାବାକ୍ରାନ୍ତତା କେମିତି କେଜାଣି ବୋଝବୋହିବାର ଅନୁଭବ ଦିଏ । କିଏ ଜଣେ କହିଥିଲେ- ସେହି ଜୀବନ ଆମୋଦର ଯେଉଁ ଜୀବନ- ରେଳରେ ସ୍ମୃତି-ଡବା ଖଞ୍ଜାଯାଇନାହିଁ । ମୋର ପୂଜ୍ୟ ଶିକ୍ଷାଦାତା ଡକ୍ଟର ବେହେରା, ଶ୍ରେଣୀଗୃହ, ସେମିନାର, ମହାବିଦ୍ୟାଳୟ ବାରଣ୍ଡାଠାରୁ ଆରମ୍ଭ କରି ସେ ରହୁଥିବା ଭଡ଼ାଘର(ପ୍ରଫେସର ପଡ଼ା କଡ଼ ସହରୀ ଆବର୍ଜନା ପ୍ରବହଣ ନାଳ ସେପଟେ) ଯାକେ ଅନେକ କଥା ଶିଖାଇଥିଲେ, ୧୯୭୪ରୁ ୧୯୭୬ ମଧ୍ୟରେ । ତା'ପରେ ଯେତେବେଳେ ଯେଉଁଠି ଦେଖାହୋଇଛନ୍ତି, ସେହି ଏକା କଥା, ସେଦିନର ଅଧ୍ୟାପକୀୟ ଢାଞ୍ଚାରେ ଗୁରୁଗମ୍ଭୀର ପରାମର୍ଶ । ଛାତ୍ରଜୀବନରେ ଯେଉଁ କେତେଜଣ ଅଧ୍ୟାପକଙ୍କ ଅଧ୍ୟାପନା, ବାଣୀ ଓ ଠାଣି ଏ ଲେଖକଦ୍ୱାରା ଅନୁସୃତ ହୋଇଛି ସେମାନଙ୍କ ମଧ୍ୟରେ ଡକ୍ଟର ବେହେରା ଅନ୍ୟତମ ।

ଗହଣା ଭିତରେ ନିମକାଠି ଭଳି, ବେଶି ସଂଖ୍ୟକ ଅଡକ୍ଟର ଓଡ଼ିଆ ଅଧ୍ୟାପକମାନଙ୍କ ମଧ୍ୟରେ ସେ ଥିଲେ ଆମ ଦୃଷ୍ଟିରେ ପିଏଚ.ଡ଼ି. କରିଥିବା ସାର୍ । ପୂର୍ବରୁ ସୂଚିତ ବର୍ଷରେ ଡକ୍ଟର ନଟବର ସାମନ୍ତରାୟ ୟୁଜିସିର ପରିଦର୍ଶୀ ଅଧ୍ୟାପକ ଭାବରେ ଆମକୁ ପଢ଼ାଉଥିଲେ । କରୁଣାକର କର, କୁଞ୍ଜବିହାରୀ ଦାଶ, ନରେନ୍ଦ୍ର ନାଥ ମିଶ୍ର, ନଟବର ସାମନ୍ତରାୟଙ୍କ ଥେସିସ୍ ସାଙ୍ଗକୁ ଆମେ ଡକ୍ଟର ବେହେରାଙ୍କ 'ଓଡ଼ିଆ ଉପନ୍ୟାସ' ପଢ଼ି ବିସ୍ମିତ ହେଉଥାଉ । କାହିଁକି ନା ଏତେ ଏତେ ମୋଟା ମୋଟା ଥେସିସ୍ ଆଗରେ ଏଭଳି କ୍ଷୀଣାଙ୍ଗ ପୁସ୍ତକ ପିଏଚ.ଡ଼ି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାରେ ଯୋଗ୍ୟ ହେଲା କିପରି ? କିନ୍ତୁ ତାହାକୁ ପଢ଼ିବା ପରେ ତହିଁରୁ ଯେଉଁ ପଦ୍ଧତିଗତ ଗୁରୁଜ୍ଞାନ ଲାଭ କରିଥିଲି ତାହାକୁ

ଆଜିଯାକେ ଭୁଲିପାରିନାହିଁ । ଧରନ୍ତୁ 'ଉପନ୍ୟାସ' । ଏ ଶବ୍ଦଟି ଆଗରୁ ଥିଲା ନା 'ନଭେଲ' ପାଇଁ ଏମିତି ଶବ୍ଦ ଗଢ଼ାଗଲା । ସାର୍‌ଙ୍କ ଥେସିସ୍‌ରୁ ଏହାର ବିବର୍ତ୍ତନ ଓ ନଭେଲର ଏହା କାହିଁକି ଓଡ଼ିଆ ପରିଭାଷା ହୋଇଛି ତାହା ଜାଣି ସେଦିନ ମୁଗ୍ଧ ହୋଇଥିଲି- ପଢ଼େଇବା ରୀତିରେ ତାହା ଅନୁସରଣ କରିଥିଲି । ସେ କାଳରେ ସାରଙ୍କ ରଚିତ 'ବେଦୀ' ଗଳ୍ପ ବହୁଭାବେ ଚର୍ଚ୍ଚିତ ହେଉଥିଲା । ସେଦିନ ଓ ଆଜି ଉଭୟ କାଳକୁ ସାହିତ୍ୟ ଅଧ୍ୟାପନା ଓ ସର୍ଜନା ପରିପ୍ରେକ୍ଷୀରେ ତୁଳନାତ୍ମକ ଅନୁଶୀଳନ କରିବସିଲେ- ମୋହମୁକ୍ତିର ମାୟା ଅଚିରେ ତୁଟେ । ଏ ସମ୍ବନ୍ଧରେ ମନ୍ତବ୍ୟ ପ୍ରଦାନ ବି ଅନୁଚିତ ପ୍ରସଙ୍ଗ ହୋଇଯାଇପାରେ ।

ମୋର ଜୀବନଦୃଷ୍ଟି ଓ ଅଧ୍ୟାପକୀ ଢାଞ୍ଚା ଯାହାଙ୍କ ଜୀବନ ଶୈଳୀ ଦ୍ୱାରା କିଛି ପରିମାଣରେ ପ୍ରଭାବିତ, ସେ ସଶରୀରେ ନାହାନ୍ତି । ସେହି ପ୍ରଣମ୍ୟ ପୁରୁଷ, ମୋର ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରା ଆମୃତ୍ୟୁ ନିଜ ଭିତରେ ସଶରୀରେ ଓ ସଶବ୍ଦେ ଉପଲବ୍ଧ ହେଉଥିବେ । ❖

ବି/୪୯, ସେକ୍ଟର-୮,
ସିଡ଼ିଏ, କଟକ-୧୪

# କବି ଓ ଗୁରୁ : କୃତବିଦ୍ୟ କୃଷ୍ଣଚରଣ

ଡ. ପ୍ରକାଶ କୁମାର ପରିଡ଼ା

ବିଂଶଶତାବ୍ଦୀର ଓଡ଼ିଆ ସାହିତ୍ୟକୁ ୧୯୫୦ ପରବର୍ତ୍ତୀ କାଳରେ ସମୃଦ୍ଧି କରିଥିବା କତିପୟ କୃତବଦ୍ୟ ସ୍ରଷ୍ଟାଙ୍କ ମଧ୍ୟରେ ସମ୍ମାନର ସହିତ ସ୍ମରଣ କରାଯାଏ- ଡକ୍ଟର କୃଷ୍ଣଚରଣ ବେହେରା ମହୋଦୟଙ୍କୁ ।

ମୌଳିକ ସର୍ଜନାରେ କବିତା, କ୍ଷୁଦ୍ରଗଳ୍ପ, ଏକାଙ୍କିକା ଓ ପ୍ରବନ୍ଧ ସହିତ ସାହିତ୍ୟ ସମୀକ୍ଷା ଓ ଗବେଷଣା ଏବଂ ସଂପାଦନା କ୍ଷେତ୍ରରେ ଡକ୍ଟର ବେହେରା ଥିଲେ ନିଜେ ନିଜର ପରିଚୟ ଏବଂ ସଂପୃକ୍ତ ବିଭାଗ ଗୁଡ଼ିକରେ ଉଦାହରଣ ସୃଷ୍ଟିକାରୀ ।

୧୯୩୨ ମସିହାରେ ମାତା ଶ୍ରୀମତୀ ପବିତ୍ରା ଦେବୀ ଓ ପିତା ଶ୍ରୀଯୁକ୍ତ ପୀତାମ୍ବର ବେହେରାଙ୍କ ଦାମ୍ପତ୍ୟରୁ ଭଦ୍ରକ ଜିଲ୍ଲାର ଅର୍ଜ୍ଜୁନିବିନ୍ଧା ଗ୍ରାମରେ ତାଙ୍କର ଜନ୍ମ ଏବଂ ଉତ୍କଳ ଆପାର୍ଟମେଣ୍ଟ୍ କଲ୍ୟାଣୀନଗର, କଟକଠାରେ ୨୦୧୭ ମସିହାରେ ତାଙ୍କର ତିରୋଭାବ ।

ଭଦ୍ରକ କଲେଜରୁ ଆଇ.ଏ., ରେଭେନ୍ସା କଲେଜରୁ ବି.ଏ., ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଏମ୍.ଏ.(ଓଡ଼ିଆ) ଶିକ୍ଷାପ୍ରାପ୍ତ ଡକ୍ଟର ବେହେରା ୧୯୫୬ ମସିହାରେ ଭଦ୍ରକ ମହାବିଦ୍ୟାଳୟରେ ଅଧ୍ୟାପନା ବୃତ୍ତି ଆରମ୍ଭ କରି ବାରିପଦା ଏମ୍‌ପିସି କଲେଜ, ରେଭେନ୍ସା କଲେଜ, ଫୁଲବାଣୀ କଲେଜ ହୋଇ ରେଭେନ୍ସା କଲେଜରୁ ୧୯୯୦ ମସିହାରେ ଅବସର ଗ୍ରହଣ କରନ୍ତି । ୧୯୯୨ ମସିହା ପର୍ଯ୍ୟନ୍ତ ଭଦ୍ରକ ମହିଳା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦଭାର ନିର୍ବାହ । ୧୯୯୩ ମସିହାରେ 'ଓଡ଼ିଶା ସଂସ୍କୃତି ବିଶ୍ୱବିଦ୍ୟାଳୟ'ରେ ମଧ୍ୟ ସାମୟିକ ଅଧ୍ୟାପନା ସମେତ ତାଙ୍କର ଅଧ୍ୟାପନା ଜୀବନ କେବଳ ପ୍ରଲମ୍ବିତ ନୁହେଁ ପ୍ରଭାବଶାଳୀ-ଅବଦାନ- ସମୃଦ୍ଧ ।

ଅଧ୍ୟାପନା ବୃତ୍ତିରେ ଜଣେ ପାରଦର୍ଶୀ ଶିକ୍ଷକ ଭାବରେ ତାଙ୍କର ବିଦ୍ୟାଦାନ କୁଶଳତା ସହିତ କତିପୟ ନାମଧନ୍ୟ ଅଧ୍ୟାପକ- ଲେଖକ- ଗବେଷକଙ୍କ ସେ ହୋଇପାରିଛନ୍ତି-ପୂଜ୍ୟପାଦ ଗୁରୁଦେବ ।

ପ୍ରିୟଛାତ୍ର ଡ. କ୍ଷେତ୍ରବାସୀ ନାୟକଙ୍କ ସଚିବତ୍ୱରେ ଓ ତାଙ୍କ ସଭାପତିତ୍ୱରେ

ପ୍ରତିଷ୍ଠାପ୍ରାପ୍ତ ଓଡ଼ିଆ ଗବେଷଣା ପରିଷଦ(୧୯୮୦) ରାଜ୍ୟ ଏକମାତ୍ର ଅଣସରକାରୀ ଗବେଷଣା ଅନୁଷ୍ଠାନ ଭାବେ ସ୍ୱୟଂସିଦ୍ଧ ଓ ପ୍ରସିଦ୍ଧ । ସମଗ୍ର ଓଡ଼ିଶା ଓ ରାଜ୍ୟାନ୍ତରରେ ଅଛନ୍ତି ଏହାର ଗବେଷକ-ସଦସ୍ୟ ସଦସ୍ୟା । ପରିଷଦ ପ୍ରକାଶିତ ଷାଣ୍ମାସିକ ଜର୍ଣ୍ଣାଲ 'ଏଷଣା' ଓଡ଼ିଶାର ଏକମାତ୍ର ସାହିତ୍ୟ ଜର୍ଣ୍ଣାଲଭାବେ ସୁପ୍ରତିଷ୍ଠ । ସଂପାଦକ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସ୍ମୃତିରେ ପ୍ରଚଳିତ 'କ୍ଷେତ୍ରବାସୀ ସାହିତ୍ୟବିଦ୍ୟା ପୁରସ୍କାର' ରାଜ୍ୟର ସାହିତ୍ୟ ଗବେଷଣା କ୍ଷେତ୍ରରେ ପ୍ରଦତ୍ତ ଏକମାତ୍ର ବାର୍ଷିକ ପୁରସ୍କାର- ଡକ୍ଟର ବେହେରାଙ୍କ ପରିଚାଳନାରେ ଯାହା ଯୋଗ୍ୟତା ଚୟନରେ ନିରପେକ୍ଷ ପ୍ରମାଣିତ ।

ଛାତ୍ରାବସ୍ଥାରୁ ଡକ୍ଟର ବେହେରା ବିଦ୍ୟା ବିଚକ୍ଷଣତା ସହିତ ସର୍ଜନା କ୍ଷମତାରେ ଆପଣାର ପରିଚୟ ପ୍ରତିଷ୍ଠା କରିପାରିଥିଲେ । ସେହି ଛାତ୍ରାବସ୍ଥାରୁ ପତ୍ରିକା ପ୍ରକାଶନ ଓ ସାହିତ୍ୟ ସଂଗଠନ ଏବଂ ସଂପାଦନାରେ ତାଙ୍କର ଆଗ୍ରହ ପ୍ରକାଶିତ ।

ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଏମ୍.ଏ. ଛାତ୍ର ଥିବା ସମୟରୁ ତାଙ୍କର ମୌଳିକ ସର୍ଜନା ପ୍ରତିଭା ବିକଶିତ ହେବା ସହିତ ସାହିତ୍ୟ ସମୀକ୍ଷା ବିଭାଗଙ୍କ ମୁକୁଳିତ ହୁଏ । ପ୍ରାଥମିକ ଭାବେ ପ୍ରଗତିବାଦୀ ଚେତନା ଅନୁସାରୀ କବି ସମୟକ୍ରମେ ଜଣେ ସମାଜନିଷ୍ଠ-ବାସ୍ତବବାଦୀ- ପରୀକ୍ଷାଧର୍ମୀ ଜୀବନବାଦୀ ଲେଖକଭାବେ ଆପଣାର ସୁପ୍ରତିଷ୍ଠା କରାଇପାରିଛନ୍ତି ।

ଡକ୍ଟର ବେହେରାଙ୍କ ସର୍ଜନା ପରିସର(୧୯୫୦-୨୦୧୭) ମଧ୍ୟରେ ପ୍ରକାଶ ଲାଭ କରିଛି ପର୍ଯ୍ୟାପ୍ତ ପୁସ୍ତକାବଳୀ ।

କବିତା ବର୍ଗରେ ପ୍ରସିଦ୍ଧ ଓ ଚର୍ଚ୍ଚିତ '୫୪-ଭାନୁବାଈ ଲେନ୍' ଓ 'ଚା'କପ୍‌ରେ ଝଡ଼' ଥିଲା ତାଙ୍କରି କାବ୍ୟୋଚ୍ଚାରଣ ମତେ- "କାଳିଗାଈ ପରି ଭିନ୍ନ ମୋର ଗୋଠ/ ଚଲାପଥ ଛାଡ଼ି ଜଗତରେ ମୁହିଁ ଫିଟାଇବି ଆରୋ/ ଫିଟାଇବି ନୂଆ ବାଟ ।" ନୂଆ ବାଟର ନକ୍ସାଙ୍କନ ।

ଗଳ୍ପ ବର୍ଗରେ 'ବେଦୀ ଇତ୍ୟାଦି ଗଳ୍ପ'ର ଅତିବାସ୍ତବବାଦୀ ପ୍ରୟୋଗ ସିଦ୍ଧି, 'ନାରୀ ଏକ ନଦୀର ନାମ'ର ବାମାବାଦୀ ଦୃଷ୍ଟିଭଙ୍ଗୀ, 'ଇତର ଇତରା'ର ଦଳିତ ଆଭିମୁଖ୍ୟ ସହିତ ବିକ୍ଷିପ୍ତଭାବେ ବୈଜ୍ଞାନିକ ପ୍ରୟୋଗାତ୍ମକ ଓ ସାମାଜିକ ସଂସ୍କାରଧର୍ମୀ ଚେତନାର ଗଳ୍ପରାଜିରେ ଡକ୍ଟର ବେହେରା ଜଣେ ଧାରାପ୍ରବର୍ତ୍ତକ କଥାକାର ଭାବେ ସ୍ୱୀକୃତ ହୁଅନ୍ତି । କଥାତତ୍ତ୍ୱ ଓ କଥାକାର ପ୍ରତି ନିଷ୍ଠାପର ଓ ଜନପ୍ରିୟତା ପ୍ରତି ଉଦାସୀନ ଏହି କଥାକାର ଓଡ଼ିଆ ଗଳ୍ପ ସାହିତ୍ୟର ଜଡ଼ତା ପୃଥକ୍ ପରିଚୟ । ମାତ୍ର ତାଙ୍କର ଅଛନ୍ତି ଗୁଣଗ୍ରାହୀ ଗଳ୍ପ ପାଠକ, ଯିଏ କହିପାରନ୍ତି- 'ଜୀବନ ଅନ୍ୱେଷା, ଜୀବନ ସମସ୍ୟା, ଜୀବନ ବଂଚିବା ଓ ଅସନ୍ତୁଳିତ ସାମାଜିକ ସମସ୍ୟା ଜନିତ ପ୍ରତିକ୍ରିୟା'ରୁ ତାଙ୍କର ଗଳ୍ପଗୁଡ଼ିକ ସୃଷ୍ଟ ।

ଉପନ୍ୟାସ ରଚନା କରିନଥିବା ଏହି କଥାକାରଙ୍କ ବ୍ୟକ୍ତିଗତ ଗବେଷଣା ଗ୍ରନ୍ଥ- 'ଓଡ଼ିଆ ଉପନ୍ୟାସ'(୧୯୬୭) । ଏହା ଓଡ଼ିଆ ଗବେଷଣା ଡିଗ୍ରୀ ଲାଭରେ ପ୍ରଥମ ଦଶଟି ଉତ୍ତୀର୍ଣ୍ଣ ପ୍ରବନ୍ଧ ମଧ୍ୟରେ ଗଣ୍ୟ । ଜଣେ ଗବେଷଣା ଦିଗ୍‌ଦର୍ଶକ ଓ ପରୀକ୍ଷକ ଭାବେ ପଚାଶରୁ ଅଧିକ ଶୋଧ ନିବନ୍ଧ ସହିତ ସେ ଜଡ଼ିତ । ଉଭୟ ଦାୟିତ୍ୱ ନିର୍ବାହରେ ସେ ଏତେ ନିରପେକ୍ଷ, ଅପ୍ରଭାବିତ ଓ ନିଷ୍ଠାପର ଯେ, ତାଙ୍କ ତତ୍ତ୍ୱାବଧାନୀ ଓ ପରୀକ୍ଷାର୍ଥୀ ନିଜ କୃତିକୁ ମଣିଥାଏ ।

ସାହିତ୍ୟ ସମୀକ୍ଷା ଓ ସାହିତ୍ୟିକ କୃତି ସଂପାଦନାରେ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ପ୍ରତିଭା ସବୁରି ଈର୍ଷଣୀୟ । ମଧ୍ୟଯୁଗୀୟ କବି କୃତିର ସଂପାଦନା ହେଉ ବା ଲୁପ୍ତ ପ୍ରାୟ ପାଣ୍ଡୁଲିପିର ପୁନରୁଦ୍ଧାର ଏପରିକି ଦଳିତର ଯାତନା ଓ ପ୍ରତିବାଦର ସ୍ୱର ସଂକଳନ- ଡକ୍ଟର ବେହେରାଙ୍କ ଆଗ୍ରହର ପରିସର ବହୁଧା ପ୍ରସାରିତ । ସେପରି ସମୀକ୍ଷା ରଚନାରେ ତାଙ୍କର ରୁଚି ଓ ବ୍ୟୁତ୍ପତ୍ତି ପ୍ରାଚୀନ ସାହିତ୍ୟଠାରୁ ସର୍ବାଧୁନିକ ଉତ୍ତରଆଧୁନିକ ଚେତନା ପର୍ଯ୍ୟନ୍ତ ପରିବ୍ୟାପ୍ତ ।

ଗ୍ରନ୍ଥ ନାମରୁ ଜଣାପଡ଼ିଯାଏ- ପ୍ରଗତି ସାହିତ୍ୟ, କଥା ସାହିତ୍ୟ, ନାଟ୍ୟସାହିତ୍ୟ ପରିଚୟ, ପ୍ରସଙ୍ଗ: ଗଳ୍ପ-ଉପନ୍ୟାସ, କବିଶେଖର ଚିନ୍ତାମଣି- ତାଙ୍କ ସମୀକ୍ଷା ଅଭିରୁଚିର ଦିଗନ୍ତ । 'ମଧ୍ୟସ୍ଥବାଣୀ'ରେ ଗ୍ରନ୍ଥ ସମୀକ୍ଷା ଓ କେତୋଟି ସାହିତ୍ୟିକ ଅଭିଭାଷଣ'ରେ ସେମିନାର ଟକ୍ ଗୁଡ଼ିକର ସଂପୂଟନ ମଧ୍ୟ ତାଙ୍କ ଦୃଷ୍ଟିକୋଣର ପରିଚୟ ବହନ କରେ ।

ଯଥା ସମୟରେ ତାଙ୍କ ସାହିତ୍ୟକୃତି ପ୍ରକାଶ ପାଇ ଭାଷା ସାହିତ୍ୟର ବିକାଶ ତ କରିଅଛି, ତାଙ୍କୁ ମଧ୍ୟ ନାନା ଅନୁଷ୍ଠାନ-ପ୍ରତିଷ୍ଠାନ ଓ ସଂସ୍ଥା ସମ୍ବର୍ଦ୍ଧିତ- ପୁରସ୍କୃତ କରି ଉପଯୁକ୍ତ ମାନ୍ୟ ପ୍ରଦାନ କରିଅଛି ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଶାରଳା ସାହିତ୍ୟ ସଂସଦ, ଫକୀରମୋହନ ବିଶ୍ୱବିଦ୍ୟାଳୟ, ପ୍ରଜାତନ୍ତ୍ର ପ୍ରଚାର ସମିତି, ଗଙ୍ଗାଧର ରଥ ଫାଉଣ୍ଡେସନ୍, କେଦାରନାଥ ଗବେଷଣା ପ୍ରତିଷ୍ଠାନ, ପୁନର୍ନବା ସାହିତ୍ୟ ସଂସଦ, ସୁରେନ୍ଦ୍ର ଗବେଷଣା ଅକାଦେମୀ ସମେତ ରାଜ୍ୟର ବିଭିନ୍ନ ପ୍ରାନ୍ତରେ ପ୍ରତିଷ୍ଠିତ ନାମଧନ୍ୟ ସାରସ୍ୱତ ଅନୁଷ୍ଠାନମାନ ତାଙ୍କ ସର୍ଜନା ପ୍ରତିଭା ଓ ସମୀକ୍ଷା ପ୍ରବୀଣତାକୁ ପୁରସ୍କୃତ ଓ ସମ୍ବର୍ଦ୍ଧିତ କରି ସ୍ୱୟଂ ଗୌରବାନ୍ୱିତ ହୋଇଅଛନ୍ତି ।

ବିଦେଶର ଅନେକ ରାଷ୍ଟ୍ର ଯେପରି ମସ୍କୋ, ଲେଲିନ୍‌ଗ୍ରାଦ୍, ବୁଲ୍‌ଗେରିଆ ଗସ୍ତ କରି ସେ ମଧ୍ୟ ନିଜର ବୋଧ ଓ ହୃଦୟ ବିସ୍ତାରିତ କରିପାରିଛନ୍ତି ।

ଲେଖିଛନ୍ତି ଆତ୍ମଜୀବନୀ- 'ଆଖିର ଦେଖା ପ୍ରାଣର କଥା' ଓ ସାକ୍ଷାତକାରରେ ନିଃସଙ୍କୋଚରେ କହିଛନ୍ତି- "ପ୍ରଚଳିତ ଅର୍ଥରେ ମୁଁ ଜଣେ ବନବାସୀ ନହେଲେ ମଧ୍ୟ

ଶୁଦ୍ରାଦପି ଶୁଦ୍ର । ଦଳିତ, ପୀଡ଼ିତଙ୍କ ପାଇଁ ମୁଁ ସବୁବେଳେ ସହାନୁଭୂତି ପ୍ରକାଶ କରିଆସିଅଛି ।

ମାତ୍ର ତାଙ୍କର ଅଛନ୍ତି ପାଦସ୍ପର୍ଶ କରି ଆଶିଷ ଧନ୍ୟ ହେଉଥିବା ସହସ୍ରାଧିକ ବିଦ୍ୱାନ ଛାତ୍ର ଏପରିକି ରାଜପୁତ୍ର ତ ପଣ୍ଡିତପୁତ୍ର ।

କବି ଓ ଗୁରୁ ହାଡ଼ିପା : ଜନ୍ମାନ୍ତରରେ କୃଷ୍ଣଚରଣ ବେହେରାଙ୍କୁ ତାଙ୍କ ଛାତ୍ରକୁଳ ପକ୍ଷରୁ ଆଭୂମ ପ୍ରଣତି । ❖

ମାର୍ଫତ- ଡାକ୍ତର ହରେକୃଷ୍ଣ ପରିଡ଼ା
ବଡ଼ସଲାରେ, ଚାନ୍ଦୋଳ, କେନ୍ଦ୍ରାପଡ଼ା

# ସାର୍‌ଙ୍କୁ ଖୋଲା ଚିଠି

ପ୍ରଫେସର ଉପେନ୍ଦ୍ର ପ୍ରସାଦ ନାୟକ

ପରମ ପୂଜ୍ୟାସ୍ପଦ ସାର୍

ପ୍ରଣାମ ନେବେ । ୧୯୬୭ ମସିହାରେ ଆମ ଗାଁ ଜଗନ୍ନାଥ ପ୍ରସାଦ ହାଇସ୍କୁଲରୁ ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ପାସ୍‌କରି ଭଦ୍ରକ କଲେଜରେ ବିଜ୍ଞାନ ପ୍ରାକ୍ ବିଶ୍ୱବିଦ୍ୟାଳୟର ଶ୍ରେଣୀରେ ନାମ ଲେଖାଇ ପଢ଼ିଲି । ବିଜ୍ଞାନ ପଢୁଥିଲେ ମଧ୍ୟ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ମୋର ଯଥେଷ୍ଟ ଆଦର ଥିଲା । ଆପଣ ସେତେବେଳେ ଭଦ୍ରକ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଥିଲେ । ଆମର ଆପଣ ଟିଉଟୋରିଆଲ କ୍ଲାସ୍ ନେଉଥିଲେ । ସେହି ସମୟରେ ସେହିଠାରୁ ଆପଣ ମୋ ସାହିତ୍ୟ ପ୍ରତିଭାର ପରିଚୟ ପାଇଥିଲେ । ମୁଁ ସାହିତ୍ୟାନୁରାଗୀ ଥିବାରୁ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ । ଭଦ୍ରକ କଲେଜର ପତ୍ରିକା 'ଅର୍ଘ୍ୟ'ରୁ ଆମ ଶ୍ରେଣୀ ପ୍ରତିନିଧି ଭାବେ ଗ୍ରହଣ କରିନେଇଥିଲେ । ଭଦ୍ରକରେ ପଢ଼ିବା ସମୟରେ ମଝିରେ ମଝିରେ ମୋର ପାଠପଢ଼ା କଥା ବୁଝିବା ସହିତ ମୋର ଲେଖାଲେଖି ବିଷୟରେ ପଚାରି ବୁଝୁଥିଲେ । ତା'ପରେ ମୁଁ କଲିକତାରେ ଯାଇ ଡାକ୍ତରୀ ପାଠ ପଢ଼ିଲି । ସେ ସମୟରେ ଭଦ୍ରକଗଲେ ମୁଁ ଆପଣଙ୍କୁ ସାକ୍ଷାତ କରେ । ମୋର କଲିକତା ରହଣି ସମୟରେ ଓଡ଼ିଆ ଯୁବଲେଖକ ସମ୍ମେଳନ ଆନୁକୂଲ୍ୟରେ ପୂର୍ବାଞ୍ଚଳ ଲେଖକ ସମ୍ମେଳନ ଅନୁଷ୍ଠିତ ହେଲା । ଆପଣ ସେତେବେଳେ ଓଡ଼ିଆ ଯୁବଲେଖକ ସମ୍ମେଳନର ସଭାପତି ଥିଲେ । କଲିକତାରେ ପୂର୍ବାଞ୍ଚଳ ଲେଖକ ସମ୍ମେଳନର ଅଭ୍ୟର୍ଥନା ସମିତିରେ ସଭ୍ୟ ଥିବା ଜାଣି ଆପଣ ଖୁସି ହେଲେ । ତା'ପରେ ମୁଁ ପାଠପଢ଼ା ଶେଷକରି ଆସି ପ୍ରଥମେ କେନ୍ଦୁଝରରେ ମେଡ଼ିକାଲ ଅଫିସର୍ ଭାବେ କାର୍ଯ୍ୟକରି ଆସି ଭୁବନେଶ୍ୱରସ୍ଥ ହୋମିଓପାଥିକ୍ ମେଡ଼ିକାଲ୍ କଲେଜରେ ଅଧ୍ୟାପକ ଭାବେ ଯୋଗଦାନ କରିବା ପରେ କ୍ରମାଗତ ସଂପର୍କ ଆପଣଙ୍କ ସହିତ ରହିଲା । ମୁଁ ଆପଣଙ୍କ ପାଖକୁ ଯାଏ । ଆପଣ ମୋତେ ବିଭିନ୍ନ କାର୍ଯ୍ୟରେ ଫୋନ୍ କରନ୍ତି । ମୋର ଅଗ୍ରଜ ଅଚ୍ୟୁତାନନ୍ଦ ନାୟକଙ୍କ ଦ୍ୱାରା ସଂପାଦିତ 'ନବରାଗ'ର ମୁଖ୍ୟ ଉପଦେଷ୍ଟା ଥିଲେ । 'ନବରାଗ' କିଛିଦିନ ଭଦ୍ରକରୁ ଆଣି

ଭୁବନେଶ୍ୱରରେ ପ୍ରକାଶ କଲି । ଆପଣ ଖୁବ୍ ଖୁସି ହୋଇଥିଲେ ଏବଂ ମୋତେ ସେଥି ନିମନ୍ତେ ଯଥେଷ୍ଟ ପ୍ରଶଂସା କରୁଥିଲେ । କିଛିବର୍ଷ ପରେ 'ନବରାଗ'କୁ ମୋର ବଡ଼ଭାଇ ନେଇ ପୁନଶ୍ଚ ଭଦ୍ରକରେ ପ୍ରକାଶ କଲେ ଏବଂ କିଛିଦିନ ପରେ 'ନବରାଗ' ବନ୍ଦ ହେଲା । ତା'ପରେ ମୁଁ ଶତଦ୍ରୁ ନାମକ ଏକ ସଂଭ୍ରାନ୍ତ ସାହିତ୍ୟ ପତ୍ରିକା ସଂପାଦନା କଲି । ତାହା ୩୩ବର୍ଷ ହେଲା କ୍ରମାଗତ ପ୍ରକାଶ ପାଇ ଆସୁଛି । 'ଶତଦ୍ରୁ' ପାଇଁ ମୁଁ ଆପଣଙ୍କୁ ଲେଖା ମାଗିଲେ ଆନନ୍ଦର ସହ ମୋତେ ଦେଉଥିଲେ । ଓଡ଼ିଶା ସାହିତ୍ୟ ଏକାଡ଼େମୀରେ ଆପଣ ସଭ୍ୟ ଥିଲାବେଳେ ମୁଁ ବି ସଭ୍ୟ ଥିଲି । ତେଣୁ ଯେକୌଣସି ସିଦ୍ଧାନ୍ତ ନେବାବେଳେ ମୁଁ ଆପଣଙ୍କ ପରାମର୍ଶ ଲୋଡୁଥିଲି ।

ଆପଣ ମୋର ଅନ୍ୟତମ ଅଭିଭାବକ ଭଳି ମୋତେ ସବୁବେଳେ ଶୁଭେଚ୍ଛା ଓ ପ୍ରେରଣା ଦେଇ ଆସିଛନ୍ତି, ଗତବର୍ଷ ଆପଣଙ୍କୁ 'ଶତଦ୍ରୁ' ପୂଜାସଂଖ୍ୟା ପାଇଁ ଲେଖା ମାଗିଲି । ଦେବେ ବୋଲି କହିଥିଲେ । କିନ୍ତୁ ହଠାତ ଅସୁସ୍ଥ ହୋଇପଡ଼ିଲେ । ଲେଖା ଦେଇ ପାରିଲେ ନାହିଁ । ଆପଣ ଆପୋଲୋ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଉଥିବା ସଂବାଦ କବି ଡ. ମନୋରମା ବିଶ୍ୱାଳ ମହାପାତ୍ରଙ୍କଠାରୁ ଶୁଣି ଆପଣଙ୍କୁ ଦେଖିବାକୁ ଗଲି । ଆପଣ ସେତେବେଳେ ଭୀଷଣ ଅସୁସ୍ଥ ଥିଲେ ମଧ୍ୟ ମୋତେ ମୋର ଲେଖାଲେଖି କଥା ଏବଂ 'ଶତଦ୍ରୁ' କଥା ପଚାରି ବୁଝିଥିଲେ । ତା'ର କେତେଦିନ ପରେ ମୁଁ ଆପଣଙ୍କ ଦେହାନ୍ତ ସଂବାଦ ପାଇ ମ୍ରିୟମାଣ ହୋଇପଡ଼ିଲି, ଆପଣଙ୍କ ଶ୍ରାଦ୍ଧୋତ୍ସବକୁ ଆପଣଙ୍କ ବାସଭବନକୁ ମ୍ଳାନ ଯାଇଥିଲି । ଏହା ମଧ୍ୟରେ ଆପଣ ଯିବାର ବର୍ଷଟିଏ ହୋଇଗଲାଣି । ଅବକ୍ଷୟଗ୍ରସ୍ତ ସମାଜ ଏବେ ଆହୁରି ଅଧିକ ନିମ୍ନମୁଖୀ ହେବାରେ ଲାଗିଛି । ତେବେ ସେ ଯାହାହେଉ ଆପଣ ଏବେ ଯେଉଁଠି ଥିଲେ ସୁଖରେ ଥାଆନ୍ତୁ ଏବଂ ଆପଣଙ୍କ ପୂର୍ବର ସ୍ନେହ ଓ ଆଶିଷ ମୋ ଉପରେ ରହିଥାଉ । ଏତିକି କାମନା । ❖

ଆପଣଙ୍କର ଶ୍ରଦ୍ଧାବନ୍ଧ

ଉପେନ୍ଦ୍ର

# ସାହିତ୍ୟ ରସିକ କୃଷ୍ଣଚରଣ

ଡ. ବିଜୟାନନ୍ଦ ସିଂହ

ସାରସ୍ୱତ ସାଧକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଅନବଦ୍ୟ ଅବଦାନ ସ୍ମରଣୀୟ । ଦୀର୍ଘ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଧରି ନିରନ୍ତର ଭାବରେ ସେ ସାହିତ୍ୟର ସମୃଦ୍ଧି ପାଇଁ ଲେଖନୀ ଚାଳନା କରିଆସିଛନ୍ତି । ବାସ୍ତବରେ ସେ ଥିଲେ ଜଣେ ସାରସ୍ୱତ ଶିଳ୍ପୀ । ତାଙ୍କ ଜୀବନ ଥିଲା ସାହିତ୍ୟମୟ । ସାହିତ୍ୟ ଯେ ଜୀବନର ସକଳ ସୁଖ, ଶାନ୍ତି ଓ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ କରେ, ତାହା ସେ ବିଶ୍ୱାସ ରଖୁଥିଲେ । ବାଲ୍ୟକାଳରୁ ନାନା ପ୍ରତିକୂଳ ପରିସ୍ଥିତି ଭିତରେ ସେ ଗତିକରିଥିଲେ ମଧ୍ୟ ସେ କେବେ ହତୋତ୍ସାହ ହୋଇ ନଥିଲେ । ସେ ଥିଲେ ଆଶାବାଦୀ । ସବୁ ସକାଳ ଯେ ସୁନ୍ଦର, ସେ ଏହା ଭାବୁଥିଲେ । ସେଥିପାଇଁ ଜୀବନର ଉଠାଣି- ଗଡ଼ାଣିରେ ସେ ବ୍ୟସ୍ତ ବିବ୍ରତ ହୋଇନାହାନ୍ତି । ସ୍ଥିତପ୍ରଜ୍ଞ ମଣିଷପରି ସେ ଜୀବନ ବିତାଇଛନ୍ତି । ସେ ମଣିଷକୁ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । ସେଥିପାଇଁ ତାଙ୍କର ସମଗ୍ର ସାହିତ୍ୟରେ ମଣିଷ ହିଁ ଗୁରୁତ୍ୱଲାଭ କରିଛି । ସାହିତ୍ୟ ହସ-ଖୁସି ବା ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ ନୁହେଁ; ବରଂ ତାହା ସମାଜପାଇଁ ଅପରିହାର୍ଯ୍ୟ, ସେ ଏହା ଉପଲବ୍ଧି କରିଥିଲେ । ସେଥିପାଇଁ ସେ ସାହିତ୍ୟ ରଚନା କରିବା ସହ ସାହିତ୍ୟ ସଂଗଠନରେ ନିଜକୁ ନିୟୋଜିତ କରିଥିଲେ । ସାହିତ୍ୟର ବିଭିନ୍ନ ବିଭବକୁ ସେ ଗୁରୁତ୍ୱ ଦେଉଥିଲେ ଓ ସେ କ୍ଷେତ୍ରରେ ମଧ୍ୟ ଲେଖନୀଚାଳନା କରୁଥିଲେ । ଗଳ୍ପ ରଚନାରେ ଡକ୍ଟର ବେହେରାଙ୍କ କୃତିତ୍ୱ ବାରିହୋଇପଡ଼େ । ସେହିପରି କବିତା, ଏକାଙ୍କିକା, ସାହିତ୍ୟ ସମାଲୋଚନା, ପ୍ରବନ୍ଧ ରଚନାରେ ସ୍ୱକୀୟ ଦୃଷ୍ଟିଭଙ୍ଗୀର ପରିଚୟ ସେ ଦେଇଯାଇଛନ୍ତି । ଉତ୍କଳୀୟ ସଂସ୍କୃତି ଓ କଳାର ସେ ଥିଲେ ନିଷ୍ଠାପର ଉପାସକ । ସାହିତ୍ୟ ଲେଖିବା ସହ ସାହିତ୍ୟର ବିସ୍ତାର ପାଇଁ ସେ ସାହିତ୍ୟ ସଂଗଠନକୁ ବିକଶିତ କରାଇବା ପାଇଁ ସେ ଦୃଷ୍ଟି ଦେଉଥିଲେ । ଓଡ଼ିଶାର ବହୁ ସାହିତ୍ୟ ଏବଂ ସାଂସ୍କୃତିକ ଅନୁଷ୍ଠାନର କର୍ମକର୍ତ୍ତା ହୋଇ ସାଂଗଠନିକ ଶକ୍ତିର ଅପୂର୍ବ ଦକ୍ଷତା ପ୍ରତି ପ୍ରଦାନ କରିଯାଇଛନ୍ତି ।

ଉତ୍କଳ ସାହିତ୍ୟ ସମାଜ, ଫକୀରମୋହନ ସାହିତ୍ୟ ପରିଷଦ, ସରସ ସାହିତ୍ୟ ସମିତି ପରି ବହୁ ପ୍ରସିଦ୍ଧ ଅନୁଷ୍ଠାନ ସହ ତାଙ୍କର ନିବିଡ଼ ସଂପର୍କ ଥିଲା । କିନ୍ତୁ, 'ଓଡ଼ିଆ

ଗବେଷଣା ପରିଷଦ' ପ୍ରତିଷ୍ଠାରେ ତାଙ୍କର ସାଂସଠନିକ ଦକ୍ଷତାର ସୂଚନା ମିଳେ । ସଂଗଠନର ଅର୍ଥ ହେଉଛି ସଂପର୍କକୁ ଏକ ସାଂଗଠନିକ ରୂପଦେବା । ନିବିଡ଼ ସଂପର୍କ ହିଁ ସାହିତ୍ୟକୁ ରସପୂର୍ଣ୍ଣ କରିଥାଏ । ସଂପର୍କ ହିଁ ସାହିତ୍ୟ । ସେଥିପାଇଁ ଡକ୍ଟର କୃଷ୍ଣଚରଣ ବେହେରା ସାହିତ୍ୟ ମାଧ୍ୟମରେ ସଂପର୍କକୁ ନିବିଡ଼ କରିବା ପାଇଁ ଚେଷ୍ଟା କରୁଥିଲେ । 'ଓଡ଼ିଆ ଗବେଷଣା ପରିଷଦ'ରେ ଏହି ସତ୍ୟ ପ୍ରତିଫଳିତ ହୋଇଛି । ପରିଷଦର ଆରମ୍ଭରୁ ତାଙ୍କ ତିରୋଧାନ ପର୍ଯ୍ୟନ୍ତ ସେ ଗବେଷଣା ପରିଷଦର ସଭାପତି ପଦ ମଣ୍ଡନ କରି ଇତିହାସ ସୃଷ୍ଟି କରିଛନ୍ତି । ପ୍ରକାଶନକୁ ସେ ଅଧିକ ଗୁରୁତ୍ୱ ଦେବା ସହ ଉତ୍ସବ ସଭାସମିତିର ଆୟୋଜନ ପାଇଁ ସେ ବ୍ୟବସ୍ଥା କରିଯାଇଛନ୍ତି । ବିଶେଷ ଭାବରେ ଆଲୋଚନା ଚକ୍ର, ଚର୍ଚ୍ଚା ବିଭିନ୍ନ ସମୟରେ ଗବେଷଣା ପରିଷଦ କରିଥାଏ । 'ପ୍ରାଚୀ ସମିତି'ର ଅବର୍ତ୍ତମାନରେ ଓଡ଼ିଆ ଗବେଷଣା ପରିଷଦ ଓଡ଼ିଶାରେ ଗବେଷଣା କ୍ଷେତ୍ରରେ ଏକମାତ୍ର ସଂଳ ଅନୁଷ୍ଠାନ ।

ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବ୍ୟକ୍ତିତ୍ୱରେ ଥିଲା ଆଧୁନିକ ଭାବଭଙ୍ଗୀ, ଆଧୁନିକତାର ସେ ଥିଲେ ସମର୍ଥକ । କିନ୍ତୁ, ଆଧୁନିକତା ନାମରେ ଅପସଂସ୍କୃତିକୁ ସେ ପସନ୍ଦ କରୁ ନଥିଲେ । ସେଥିପାଇଁ ଓଡ଼ିଆ ସାହିତ୍ୟରେ ଆଧୁନିକତାର ବିଭିନ୍ନ ଉପାଦେୟ ଦିଗକୁ ସେ ପ୍ରଦର୍ଶିତ କରିବା ସହ ଅନାବଶ୍ୟକ ତଥ୍ୟ ବା ପ୍ରସଙ୍ଗ ପରିହାର କରୁଥିଲେ । ଯୌବନ ଓ ଉଦ୍ଦାମତାରେ ସେ ବିଶ୍ୱାସ ରଖୁଥିଲେ । ଯୁବକମାନେ ଯେ ପରିବର୍ତ୍ତନର ସୂତ୍ରଧର, ତାହା ସେ ସଭାସମିତି, ଉତ୍ସବମାନଙ୍କରେ ପ୍ରକାଶ କରୁଥିଲେ । ସକରାତ୍ମକ ଚେତନାରେ ସେ ସମର୍ଥକ । ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା'ରେ ମ୍ନ ତାଙ୍କ ସାରସ୍ୱତ ଦିଗ୍‌ବଳୟ ପ୍ରଲମ୍ବିତ ହୋଇଥିଲା । ଯେଉଁ ଯେଉଁ ସବୁ ତଥ୍ୟ ଲୋକଲୋଚନର ଅଗୋଚରରେ ରହିଯାଇଥିଲା, ସେ ସବୁକୁ ଆଲୋକିତ କରିବାରେ ଡକ୍ଟର ବେହେରାଙ୍କ ଉଦ୍ୟମର ତୁଳନା ନାହିଁ । ସେ କହୁଥିଲେ- ସାହିତ୍ୟର ସଂଗଠନ ସୁଦୃଢ଼ ହେଲେ ସାହିତ୍ୟର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଚରିତାର୍ଥ ହୋଇପାରିବ । ସାହିତ୍ୟର ଉଦ୍ଦେଶ୍ୟ ପୂର୍ଣ୍ଣହେଲେ ସମାଜ ସୁନ୍ଦର ହୋଇପାରିବ । ସେ ଥିଲେ ସାହିତ୍ୟ ରସିକ । ରୋମାଣ୍ଟିକ ଚେତନାରେ ସେ ଥିଲେ ସଦା ବିଭୋର ।

ଡକ୍ଟର କୃଷ୍ଣଚରଣ ବେହେରା ଥିଲେ ସ୍ପଷ୍ଟବାଦୀ ଓ ନିର୍ଭୀକ । କୌଣସି କଥାକୁ ଯେତେ ଅପ୍ରିୟ ହେଲେ ମଧ୍ୟ ପ୍ରକାଶ କରୁଥିଲେ । ଯୁବକମାନଙ୍କ ପାଇଁ ସେ ଥିଲେ ପ୍ରେରଣାର ଉତ୍ସ । ଯୁବ ଲେଖକ-ଲେଖିକାଙ୍କୁ ପ୍ରେରଣା ହେଉଥିଲେ । ଜୀବନର ଶେଷକାଳ ପର୍ଯ୍ୟନ୍ତ ସେ ସାହିତ୍ୟ ରଚନାରେ ନିମଗ୍ନ ଥିଲେ । ସେ କହୁଥିଲେ, ସାହିତ୍ୟରେ ଆହୁରି କାର୍ଯ୍ୟକରିବାକୁ ଅଛି, ତାହାହିଁ କରିବାକୁ ହେବ । ଜୀବନର ଶେଷକାଳରେ ସାହିତ୍ୟ ହିଁ ତାଙ୍କ ଆଶା ଆଶ୍ୱାସନାର ବାଣୀ ଥିଲା ବୋଲି ଜଣାପଡ଼େ । ସେ ଥରେ ଏକ ସାକ୍ଷାତକାରରେ କହିଥିଲେ-

"ପୂର୍ବରୁ ସାଧ୍ୟମତେ ଯେଉଁ ସାହିତ୍ୟକର୍ମ କରିଛି, ତାହାକୁ ପ୍ରଚୁର ବା ସନ୍ତୋଷଜନକ କହିହେବ ନାହିଁ । ବିଶେଷତଃ ସାହିତ୍ୟ ଭିନ୍ନ ଓ ଗବେଷଣା କ୍ଷେତ୍ରରେ ଏତେ କାର୍ଯ୍ୟ କରିବାକୁ ରହିଛି ଯେ, ଏତେ ଯୋଜନା ଓ ପରିକଳ୍ପନା ମନସ୍ଥ ରହିଛି ଯେ ତାହାର ରୂପାୟନ କିପରି କରାଯିବ, ଭାବି ପାରୁନାହିଁ । ବ୍ୟକ୍ତିଗତ ଭାବରେ ଓ ଆନୁଷ୍ଠାନିକ ଭାବରେ ସେହିସବୁ ସାଂସ୍କୃତିକ କାର୍ଯ୍ୟ ସମାହିତ ହେବାର କଥା । ଭାରତୀୟ ଜନ୍ମାନ୍ତର ବାଦରେ ମୋର ସେପରି ବିଶ୍ୱାସ ନାହିଁ । ଯଦି ପ୍ରକୃତରେ ମଣିଷର ପୁନର୍ଜନ୍ମ ଥାଏ, ତାହାହେଲେ ମୁଁ ପରଜନ୍ମରେ ଏହିସବୁ ସାଂସ୍କୃତିକ କାର୍ଯ୍ୟ କରିପାରିବି ବା କରାଇପାରିବି ବୋଲି ଆଶା ବାନ୍ଧିଛି । (ସାରସ୍ୱତ ସାକ୍ଷାତକାର- ନିଜସ୍ୱ ବକ୍ତବ୍ୟ)

ଡକ୍ଟର କୃଷ୍ଣଚରଣ ବେହେରା ଆମ ଗହଣରେ ଏ ପୃଥିବୀରେ ଆଉ ନାହାନ୍ତି । କିନ୍ତୁ, ତାଙ୍କ କାର୍ଯ୍ୟଧାରା ଆମ ସମ୍ମୁଖରେ ସତେଯେପରି ପ୍ରତୀୟମାନ ହେଉଛି । ତାଙ୍କ ଅନୁପସ୍ଥିତି ବେଶ୍ ଉପଲବ୍ଧି ମଧ୍ୟ ହେଉଛି । ଜଣେ ଅଭିମାନ ଶୂନ୍ୟ, ନିରହଙ୍କାରୀ, ସ୍ପଷ୍ଟବାଦୀ ବ୍ୟକ୍ତି ଯେ ସଫଳ ମଣିଷରେ ପରିଣତ ହୋଇପାରନ୍ତି, ତାହାର ଉଦାହରଣ ଥିଲେ ଡକ୍ଟର କୃଷ୍ଣଚରଣ ବେହେରା । ଜଣେ ଆଦର୍ଶ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସେ ଯେପରି ସ୍ମରଣୀୟ, ସେହିପରି ଜଣେ ନିଷ୍ଠାପର ସାହିତ୍ୟ ସାଧକ ଭାବରେ ତାଙ୍କର ବିଚାରଧାରା ଓ କର୍ମପ୍ରଣାଳୀ ସଙ୍କଳଙ୍କ ଲାଗି ଅନୁକରଣୀୟ । ❖

ସଭାପତି
ଉତ୍କଳ ସାହିତ୍ୟ ସମାଜ

# ସାରସ୍ୱତ ଜୀବନର କେତୋଟି ସ୍ମୃତି

ଡ. ମନୀନ୍ଦ୍ର ମହାନ୍ତି

୧୯୬୬ ମସିହାର କଥା । ସେତେବେଳେ ମୁଁ ଭଦ୍ରକ କଲେଜରେ ପଢୁଥିଲି । ଆମେ କେତେଜଣ ସାଙ୍ଗ ମିଶି ଏକ ସାହିତ୍ୟାନୁଷ୍ଠାନ 'ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ର' ନାମରେ ଗଢ଼ିଥିଲୁ । ପ୍ରତିମାସ ଗୋଟିଏ ଛୁଟିଦିନରେ ଆମେ ଏକାଠି ବସି ନିଜର ଲେଖାପାଠ ସହିତ ଆଲୋଚନା ହେଉଥିଲା । ଏଥିରେ ମୋ ସହିତ ନନ୍ଦକିଶୋର ମହାନ୍ତି । ଚିତ୍ତରଞ୍ଜନ ମିଶ୍ର ଆଦି ଦଶବାର ଜଣ ସାଙ୍ଗ ଯୋଗଦେଇଥିଲେ । ଏହି ସାହିତ୍ୟ ଚକ୍ର ତରଫରୁ 'ସିସୃକ୍ଷା' ନାମରେ ମୁଖପତ୍ର ପ୍ରକାଶ କରିଥିଲୁ । ଏଥିରେ ଆମମାନଙ୍କ ସହିତ ଲେଖିଥିଲେ- ଡ. ହରେକୃଷ୍ଣ ମହତାବ, ମହାପାତ୍ର ନୀଳମଣି ସାହୁ, କମଳାକାନ୍ତ ଲେଙ୍କା, ଲକ୍ଷ୍ମୀନାରାୟଣ ମହାନ୍ତି ଓ ଭଗବାନ ନାୟକ ବର୍ମା ପ୍ରଭୃତି, ଶୁଭେଚ୍ଛା ବାର୍ତ୍ତାମାନ ଆସିଥିଲା- କାଳନ୍ଦୀ ଚରଣ ପାଣିଗ୍ରାହୀ, ସୁରେନ୍ଦ୍ର ମହାନ୍ତି, ରାଜକିଶୋର ରାୟ, ପଠାଣି ପଟ୍ଟନାୟକ ଓ ଯଦୁମଣି ପରିଡ଼ା (ଆସନ୍ତାକାଲି)ଙ୍କ ଠାରୁ ।

ଏହି 'ସିସୃକ୍ଷା'ରେ ଲେଖା ପ୍ରକାଶ କରିବାକୁ ଆମେ ଓଡ଼ିଶାର ବିଶିଷ୍ଟ ଲେଖକମାନଙ୍କୁ ଅନୁରୋଧ କରି ଚିଠି ଦେଇଥିଲୁଁ । ସେଥିମଧ୍ୟରୁ ଭୁବନେଶ୍ୱରରୁ ଜଣେ ପ୍ରତିଷ୍ଠିତ କଥାକାର ଲେଖାପାଇଁ ପଇସା ମାଗିଲେ । ଏ ଚିଠି ପାଇ ଆମେ ସବୁତ ଖପ୍ପା ! ତେଣୁ ଆମର ସ୍ଥିର ହେଲା ଭଦ୍ରକରେ ହେବାକୁ ଥିବା 'ଯୁବଲେଖକ ସମ୍ମେଳନ'ରେ ଆମେ ତାଙ୍କର ମୁର୍ଦ୍ଦାବାଦ କରିବୁ । ସେହି ମର୍ମରେ ତାଙ୍କୁ ଚିଠି ମଧ୍ୟ ଦେଲୁଁ । ସେହିବର୍ଷ ଭଦ୍ରକର ବାଗୁରାଇ ହାଇସ୍କୁଲରେ ଓଡ଼ିଆ ଯୁବଲେଖକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ଆମେ ସବୁ ପ୍ରତିନିଧି ହେଲୁ । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଲେଖକ ଲେଖିକାମାନେ ଆସିଲେ । ଆମେ ସବୁ ସମ୍ମେଳନର ବିଭିନ୍ନ କାର୍ଯ୍ୟକ୍ରମରେ ବ୍ୟସ୍ତ ଥାଉ । ହଠାତ୍ କୃଷ୍ଣସାର୍ ମୋତେ ଡକେଇ ପଠାଇଲେ । ସେ କହିଲେ 'ମନୀନ୍ଦ୍ର, ତୁମେ ଅମୁକବାବୁଙ୍କୁ ଲେଖାପାଇଁ ଚିଠି ଲେଖି ଥିଲକି ?' ମୁଁ ହଁ ମାରିଲି । ସେ କହିଲେ- 'ତୁମକୁ ସେହିବାବୁ ଖୋଜୁଥିଲେ । ସେ କହୁଥିଲେ, ତୁମେ କଅଣ, ଏହି ସମ୍ମିଳନୀରେ ତାଙ୍କର ନିନ୍ଦାବାଦ କରିବ ? କଥା କଅଣ ?

ମୁଁ ସବୁକଥା କହିଲି, 'ସାର୍ ଆମେ କେତେଜଣ ଯୁବ ସାହିତ୍ୟପ୍ରେମୀ ଏକ ପତ୍ରିକା ପ୍ରକାଶ କରୁଛୁଁ । ଆପଣଙ୍କଠାରୁ ଏକ ଗଳ୍ପ ଆମେ ଆଶା କରୁଛୁ । ସେ ବାବୁ ଚିଠି ଦେଲେ ମୋତେ କେତେ ଟଙ୍କା ଦେବେ ?' ଆମେ ସବୁ ତ ତାତି ଯାଇଛୁ । ସେ ଓଡ଼ିଶାର ଜଣେ ବିଖ୍ୟାତ ଗାଳ୍ପିକ, ପୁଣି ସରକାରୀ ଅଧ୍ୟାପକ ତାଙ୍କୁ କ'ଣ ପଇସାର ଅଭାବ ? ଆମେ ପିଲାମାନେ ଗୋଟେ ପତ୍ରିକା କାଢୁଛୁଁ ସେଥିପାଇଁ ସେ ପଇସା ମାଗୁଛନ୍ତି ?

କୃଷ୍ଣ ସାର୍ କହିଲେ- 'ଆରେ ଲେଖାଟା ତାଙ୍କର ଜିନିଷ । ତେଣୁ ସେ ଜିନିଷ ବାବଦରେ ପଇସା ନେବେ, ଯିଏ ପଇସା ଦେବ- ସେ ଲେଖା ନେବ । ଏଥିରେ ଅସୁବିଧା କ'ଣ ? ତୁମେ ସବୁ କାହିଁକି ତାଙ୍କର ନିନ୍ଦା କରୁଛ ? ମୁଁ କହିଲି- 'ସାର୍ ଲେଖା ହେଉଛି ଲେଖକଙ୍କର ମାନସ-ସନ୍ତାନ । ଏତେବଡ଼ ଲେଖକ କ'ଣ ଏମିତି ବିଚ୍‌ବଜାରରେ ବିକ୍ରି କରିବେ ? ଆମର କ'ଣ ଏଥିରେ ପ୍ରତିବାଦ କରିବାର ନାହିଁ ?'

ସାର୍ କହିଲେ- 'କିରେ ତାଙ୍କ ଜିନିଷ ସିଏ ବିକ୍ରି କରିବେ କି ଉପହାର ଦେବେ- ତାଙ୍କ ଉପରେ ନିର୍ଭର କରେ । ତାଙ୍କର ଇଚ୍ଛା । ତାଙ୍କୁ ବାଧ ହୋଉଛ କାହିଁକି ? ମୁଁ କହିଲି- 'ହଉ, ସେ ଯଦି ତାଙ୍କ ମାନସ-ସନ୍ତାନକୁ ବିକିବାକୁ ଚାହୁଁଛନ୍ତି- ବିକନ୍ତୁ- ଆମେ କିନ୍ତୁ କିଣିବୁ ନାହିଁ । କଥାଟା ସେଇଟି ସରିଲା । ସାର୍ ମଧ୍ୟସ୍ଥ ହୋଇ ସେହି ଗାଳ୍ପିକ ଓ ଆମ ଭିତରେ ସମାଧାନ କରିଦେଲେ । ଆମେ ସମସ୍ତେ କେବଳ ନିରବରେ ମୁହଁ ଚାହାଁଚୁହିଁ ହେଲୁ । ବାସ୍-ସେତିକିରେ ଇତି ।

ଆଉ ଗୋଟେ ସ୍ମୃତି । ୧୯୭୦ ମସିହାର କଥା । ସେତେବେଳେ ମୁଁ ନୂଆହୋଇ ଖୋଲିଥିବା ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟବିଭାଗ ଖୋଲିଥାଏ । ଆମେ ସେକେଣ୍ଡ ବେଞ୍ଚର ପିଲା, ସମ୍ବଲପୁରର ବିଇଡ଼ି ଟ୍ରେନିଂ କଲେଜରେ ଆମ କ୍ଲାସ୍ ଚାଲିଥାଏ । ସେତେବେଳେ ବିଭାଗୀୟ ମୁଖ୍ୟ ଥାଆନ୍ତି- ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଏବଂ ଅଧ୍ୟାପକ ଥାନ୍ତି- ଶ୍ରୀ ବାଳକୃଷ୍ଣ ଶତପଥୀ, ସମ୍ବଲପୁରର ଗଙ୍ଗାଧର ମେହେର କଲେଜର ଅଧ୍ୟାପକ ଡ.ଜାନକୀ ବଲ୍ଲଭ ମହାନ୍ତି ଓ. ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ଆମର କ୍ଲାସ୍ ନେଉଥାନ୍ତି ।

ମୋତେ ଓଡ଼ିଆ ବିଭାଗର ଆଲୋଚନା ଚକ୍ରରେ ଅଂଶଗ୍ରହଣ କରିବାକୁ ପଡ଼ିଥିଲା । ଶିରୋନାମା ଥିଲା- ଚମ୍ପା ଓ ଚିତ୍ରକଳା : ଏକ ତୁଳନାତ୍ମକ ଅଧ୍ୟୟନ । ସେତେବେଳେ ଏହା ମୋ ପାଇଁ ଏକ ଆହ୍ୱାନ ଥିଲା । କାରଣ ବାଲେଶ୍ୱର ଜିଲ୍ଲାରୁ ମୁଁ ଓ ସୁଧୀର ମହାନ୍ତି । ଦୁଇଜଣ ଛାତ୍ର ଥିଲୁ । ଅନ୍ୟମାନେ ସବୁ ପ୍ରାୟ ପଶ୍ଚିମ ଓଡ଼ିଶାର । ଆଲୋଚନା ଚକ୍ରର ବିଷୟ ନେଇ ମୁଁ କୃଷ୍ଣସାର୍‌ଙ୍କ ସହିତ ଯୋଗାଯୋଗ କଲି । ସେ ମୋତେ ଏହି ଆଲୋଚନାର ଯୋଜନାପତ୍ରଠାରୁ ଆରମ୍ଭ କରି ସମସ୍ତ ତଥ୍ୟ ଯୋଗାଇଦେଲେ । ଦିନରାତି

ସମାନ କରି ମୁଁ ସହାୟକ ଗ୍ରନ୍ଥମାନ ପଢ଼ି, ନୋଟ୍ କରି ଦୀର୍ଘ ଆଲୋଚନାଟିଏ ଲେଖିଥିଲି । ସୌଭାଗ୍ୟକୁ ସେହି ଆଲୋଚନାଟି ସେହି ବର୍ଷର ଶ୍ରେଷ୍ଠ ଆଲୋଚନା ବୋଲି ସ୍ଥିର ହୋଇଥିଲା । ଏହି ସମୟରେ ଆଲୋଚନା କୌଶଳ ସମ୍ପର୍କରେ ସାର୍‌ଙ୍କଠାରୁ ସୂଚନା ପାଇଥିଲି ।

ଏହି ଆଲୋଚନାଟି ମୋତେ 'ବିଶେଷପତ୍ର'ରେ ଗବେଷଣା ନିବନ୍ଧ ପତ୍ର ଦେବାକୁ ଉତ୍ସାହିତ କରିଥିଲା । କେବଳ ମୁଁ ଥିଲି ପ୍ରବନ୍ଧ ରଚନାରେ । ଅନ୍ୟମାନେ ବିଶେଷ ପତ୍ରରେ ଭଞ୍ଜସାହିତ୍ୟ ଓ ରୀତିଯୁଗ ସବୁ ନେଇଥିଲେ । ଏମ୍.ଏ.ରେ ବିଶେଷ ପତ୍ରରେ ଆଲୋଚନା ପତ୍ର ଶିରୋନାମା ଥିଲା- 'ଗାଳ୍ପିକ ସୁରେନ୍ଦ୍ର ମହାନ୍ତି' ସୁରେନ୍ଦ୍ର ମହାନ୍ତିଙ୍କର ୧୧ଟି ଗଳ୍ପର ଆଲୋଚନା ଏଥିରେ କରାଯାଇଥିଲା । ଏହିପରି ଏକ ସାହସିକ ପଦକ୍ଷେପ ନେବା ମୂଳରେ ଥିଲେ କୃଷ୍ଣସାର୍ । ସେ ସାହସ ଦେଉଥାନ୍ତି ଏବଂ ସାହାଯ୍ୟ କରିବେ ବୋଲି ବାରମ୍ବାର କହୁଥାନ୍ତି । କେବଳ ଯୋଜନା ପତ୍ର ନୁହେଁ, ଗଳ୍ପ ପାଠ ବେଳେ ଆଲୋଚନାର ବିଭିନ୍ନ ଉପାଦାନକୁ ବିଶ୍ଳେଷଣ କରିବା ପାଇଁ ସେ ମୋତେ ବାରମ୍ବାର ମାର୍ଗଦର୍ଶନ କରୁଥାନ୍ତି ।

ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କର ମୁଁ ଦୁଇଥର ସାକ୍ଷାତକରି ବିଭିନ୍ନ ପ୍ରଶ୍ନ ପଚାରି ବିଭିନ୍ନ ଉପାଦାନ ସଂଗ୍ରହ କରିଥିଲି । ପରବର୍ତ୍ତୀ କାଳରେ ୧୯୮୦ ମସିହାରେ ଏହା ପୁସ୍ତକ ଆକାରରେ ପୁସ୍ତକ ଭଣ୍ଡାର, ବ୍ରହ୍ମପୁର ପ୍ରକାଶ କରିଥିଲା ।

ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ମୁଁ ଥିଲି ଦ୍ୱିତୀୟ ଜୁନିୟର ରିସର୍ଚ୍ଚ ଫେଲୋ, ବିଷୟ ଥିଲା 'ଓଡ଼ିଆ ଶିଶୁ-ସାହିତ୍ୟର ଉନ୍ମେଷ ଓ ବିକାଶ'(ସ୍ୱାଧୀନତା ପର୍ଯ୍ୟନ୍ତ) । ମୁଁ ଚାହିଁଥିଲି ସାହିତ୍ୟର ଏକ ନୂତନ ବିଭାଗରେ ଗବେଷଣା କରିବି । ତେଣୁ ଶିଶୁ-ସାହିତ୍ୟ ବିଷୟ ନେଲି । କିନ୍ତୁ ବହୁ ଅଧ୍ୟାପକବନ୍ଧୁ ନାକ ଟେକିଥିଲେ । ମାତ୍ର ଏବେ ବୁଝୁଥିବେ ସେମାନେ । ଯେତେବେଳେ ମୁଁ କଟକର ବିଭିନ୍ନ ପାଠାଗାର ତଥା ବ୍ୟକ୍ତିଗତ ପାଠାଗାରରେ ବୁଲିବୁଲି ତଥ୍ୟ ସଂଗ୍ରହ କରୁଥିଲି ସେତେବେଳେ କୃଷ୍ଣସାରଙ୍କ ସହିତ ମଝିରେ ମଝିରେ ଉପାଦାନକୁ କେନ୍ଦ୍ରକରି ଆଲୋଚନା ଚାଲେ ତାଙ୍କ ପ୍ରଫେସରପଡ଼ା ଭଡ଼ାଘରେ ।

ଯେଉଁଦିନ ପ୍ରଫେସରପଡ଼ାରେ ଉଦୟନାଥ ଷଡ଼ଙ୍ଗୀ)ଙ୍କ ଘରୁ ପ୍ରଥମ ଓଡ଼ିଆ ଶିଶୁ ପତ୍ରିକା 'ପ୍ରଭାତ'(୧୯୦୯)ର ସନ୍ଧାନ ମିଳିଲା, ସେଦିନ ସାର୍ ଓ ମୁଁ କେତେ ଯେ ଆନନ୍ଦରେ ଫୁଲି ଉଠିଥିଲୁଁ । ତାହା କହିହେବ ନାହିଁ ।

କୃଷ୍ଣସାର୍‌ଙ୍କର ଦୃଷ୍ଟିକୋଣରେ ଯେଉଁ 'ଏଷଣା' ପ୍ରବୃତ୍ତି ରହିଥିଲା । ତାହା ମୋତେ ବାରମ୍ବାର ନୂଆବାଟ ଦେଖାଉଥିଲା । ଏହି ବିଚାର ବା ଦୃଷ୍ଟିକୋଣ ସେ ପାଇଥିଲେ

ଶାନ୍ତିନିକେତନର ବିସ୍ତୃତ ସାରସ୍ୱତ ପରିସରରୁ । ସେ ନିଜେ ଏହାକୁ ତ ସ୍ୱୀକାର କରିଛନ୍ତି ।

ଯେତେବେଳେ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଜୁନିଅର ରିସର୍ଚ୍ଚ ସ୍କଲାର ଥିଲି, ସେତେବେଳେ ଡ. କ୍ଷେତ୍ରବାସୀ ନାୟକ ସମ୍ବଲପୁର ବିଶ୍ୱବିଦ୍ୟାଳର ସମାବର୍ତ୍ତନ ଉତ୍ସବକୁ ପି.ଏଚ୍.ଡ଼ି ଡିଗ୍ରୀ ନେବାକୁ ଜ୍ୟୋତିବିହାର ଯାଇଥିଲେ । ସେ ମୋ ରୁମ୍‌କୁ କିଛି ସମୟ ପାଇଁ ଆସିଥିଲେ । ପ୍ରସଙ୍ଗ କ୍ରମେ ମୋ ଗବେଷଣା କଥା ଓ ପରବର୍ତ୍ତୀ କାର୍ଯ୍ୟକ୍ରମ ବିଷୟରେ ଆଲୋଚନା ହେଲା । ଡ. ନାୟକଙ୍କୁ ମୋର ଏକ ଅନୁରୋଧ ଥିଲା । ଯେଉଁମାନେ ଗବେଷଣା କରୁଛନ୍ତି ସେମାନଙ୍କ ଆଲୋଚନା ପ୍ରକାଶ ପାଇଁ ଉପଯୁକ୍ତ ପତ୍ରିକା ବା ସଂସ୍ଥା ନାହିଁ । କେବଳ 'ଝଙ୍କାର' ପତ୍ରିକା ଥିଲା । ମାତ୍ର ଓଡ଼ିଶାରେ ଏକ ରିସର୍ଚ୍ଚ ଜର୍ଣ୍ଣାଲ ନାହିଁ । ତେଣୁ, ସେ ଦିଗରେ କିଛି ପଦକ୍ଷେପ ନେବା ଆବଶ୍ୟକ । ପ୍ରସଙ୍ଗକ୍ରମେ ଡ. ନାୟକ ସୂଚନା ଦେଲେ 'ତୁମେ ରିସର୍ଚ୍ଚ କାମ ଶେଷକର । ସାର ଡ. ବେହେରା ଓ ମୁଁ ସ୍ଥିର କରିଛୁ- ଗୋଟେ ଗବେଷଣା ସଂସ୍ଥା ଗଢ଼ିବା ।

ପରବର୍ତ୍ତୀ କାଳରେ ୧୯୮୦ ମସିହା ଅକ୍ଟୋବର ମାସ ୨୫ ତାରିଖରେ 'ଓଡ଼ିଆ ଗବେଷଣା ପରିଷଦ' ଡ. କୁଞ୍ଜବିହାରୀ ଦାଶଙ୍କ ଦ୍ୱାରା କଟକସ୍ଥିତ ଡ. ନାୟକଙ୍କ ଭଡ଼ା ଘରେ(ଛତ୍ରବଜାର) ଉଦ୍‌ଘାଟନ କରାଯାଇଥିଲା । ଏହାର 'ଲୋଗୋ' ଦାୟିତ୍ୱ ମୋତେ ଦିଆଯାଇଥିଲା । ଭଦ୍ରକର ସୁପରିଚିତ ଚିତ୍ରକର ଶ୍ରୀ ଅଶୋକ କୁମାର ମହାନ୍ତିଙ୍କ ଦ୍ୱାରା ଏହାର ଲୋଗୋ ପ୍ରସ୍ତୁତ ହୋଇଥିଲା । ଏହି ଗବେଷଣା ପରିଷଦରେ ମୋତେ ସହଯୋଗୀ ସଂପାଦକ ଭାବରେ ରଖାଗଲା ।

ଏହି 'ଓଡ଼ିଆ ଗବେଷଣା ପରିଷଦ'ର ମୁଖପତ୍ରର ନାମ ହେଲା- 'ଏଷଣା' । ଏହା ୧୯୮୦ ମସିହାଠାରୁ ଆରମ୍ଭ ହୋଇଥିଲା । ଏହାର ପ୍ରଥମ ସଂଖ୍ୟାରେ ଯେତେବେଳେ ଦୁର୍ଲ୍ଲଭ ରଚନାବଳୀ ପ୍ରକାଶ ସ୍ତମ୍ଭରେ କ'ଣ ପ୍ରକାଶ ପାଇବ ଆଲୋଚନା କରାଗଲା, ସେତେବେଳେ ବଳରାମ ଦାସଙ୍କ ରଚିତ 'ଶ୍ରୀରୋଡ଼ା' ବା ରୁକ୍ମଣୀ ବିବାହ ଲିଖନ' କଥା ପଡ଼ିଲା । ଏହାକୁ ମୁଁ ସମ୍ବଲପୁରରୁ ୧୯୭୦ରେ ସଂଗ୍ରହ କରିଥିଲି । ଏହି ପାଣ୍ଡୁଲିପିକୁ ମୁଁ ସମ୍ବଲପୁରୀ କବି ସତ୍ୟନାରାୟଣ ବହିଦାରଙ୍କଠାରୁ ସଂଗ୍ରହ କରିଥିଲି । ଏହି ପାଣ୍ଡୁଲିପିର ଆଲୋଚନା ସମ୍ବଲପୁର ବିଶ୍ୱବିଦ୍ୟାଳୟର ମାସିକ ପତ୍ରିକା 'ସପ୍ତର୍ଷି'ରେ ପୂର୍ବରୁ ପ୍ରକାଶ ପାଇଥିଲା । (୧୯୭୨- ଡିସେମ୍ବର ସଂଖ୍ୟା) ପରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ମୁଖପତ୍ର 'କୋଣାର୍କ'(୧୯୭୭-୩୪ଶ ସଂଖ୍ୟା)ରେ ମଧ୍ୟ ପ୍ରକାଶ ପାଇ ବେଶ ପାଠକୀୟ ଆଦର ପାଇଥିଲା । ମାତ୍ର ଏହାର ମୂଳପାଠ ବା ଟେକ୍ସଟ ପ୍ରକାଶ ପାଇ

ନଥିଲା । କାରଣ, ବିଶ୍ୱାସ ଥିଲା, ଯଦି ଏହି ପାଣ୍ଡୁଲିପି ପ୍ରକାଶ ପାଇବ ପୁସ୍ତକ ଆକାରରେ, ତେବେ ବିପଦ ପଡ଼ିବ । ଏହି 'ଶ୍ରୀରୋଢ଼ା' ଥିଲା । ସମ୍ବଲପୁର ଅଞ୍ଚଳରେ ଥିବା ଆରଣ୍ୟକ କରଣ ଜାତିର ବିବାହର ଏକ କର୍ମାଙ୍ଗୀ ରଚନା । ବର ଘରେ ଚଉଠି ଦିନ ଏବଂ କନ୍ୟାଘର ମଙ୍ଗନଦିନ ଏହା ବୋଲାଯିବାର ବିଧି ରହିଛି । ତେଣୁ ଏହି ପାରମ୍ପରିକ ପାଣ୍ଡୁଲିପିର ଆବଶ୍ୟକତା ରହିଛି । ମାତ୍ର ପୁସ୍ତକ ଆକାରରେ ନୁହେଁ । ତେଣୁ ଯଦି ଗବେଷଣା ପରିଷଦ ଏହାକୁ ପୁସ୍ତକ ଆକାରରେ ପ୍ରକାଶ କରେ, ତେବେ କିଛି ବିରୋଧ ଆସିବ ନାହିଁ ତ ? ଏହିପରି ଏକ ସନ୍ଦେହ ଓ ଅନିଶ୍ଚିତତା ମଧ୍ୟରେ ଶେଷକୁ ଏହାକୁ ପ୍ରକାଶ ପାଇଁ ସ୍ଥିର ହେଲା । ସାର୍ କହିଲେ- 'ବଳରାମ ଦାସଙ୍କର ଏହି ରଚନା ପ୍ରକାଶ ପାଇନାହିଁ । ତେଣୁ ଆମେ ଛାପିବା ।' ତାହା ବି ହେଲା ୧୯୮୧(ଅକ୍ଟୋବର)ରେ ଏହି 'ଶ୍ରୀରୋଢ଼ା' ପାଣ୍ଡୁଲିପି ସ୍ୱତନ୍ତ୍ର ଭାବରେ ପୁସ୍ତକ ରୂପେ ଓଡ଼ିଆ ଗବେଷଣା ପରିଷଦ ଆନୁକୂଲ୍ୟରେ ପ୍ରକାଶ ପାଇଥିଲା । ଏହା ଗବେଷଣା ପରିଷଦର ପ୍ରଥମ ପ୍ରକାଶିତ ପୁସ୍ତକ ।

କୃଷ୍ଣ ସାର୍ ଥିଲେ ଭଦ୍ରକର ପ୍ରାଚୀନ ନାଟ୍ୟକଳା ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ରଚିତ 'ମୋଗଲ ତାମସା'ର ପ୍ରଥମ ସଂଗ୍ରାହକ ଓ ଆଲୋଚକ (୧୯୬୬) । 'ଚଇତି ତାମସା'ର ଶେଷ ତାମସା ହେଲା 'ମୋଗଲ ତାମସା' । କିନ୍ତୁ ଅନ୍ୟ ତାମସାର ପାଣ୍ଡୁଲିପି ମିଳି ନଥିଲା । ଯେତେବେଳେ ଭଦ୍ରକର ଜାନୁଗଞ୍ଜ, କୁଆଁସ ଓ ଗରଦପୁର ଅଞ୍ଚଳରୁ କିଛି ସଂପୂର୍ଣ୍ଣ ଓ କିଛି ଅସଂପୂର୍ଣ୍ଣ ତାମସା ମୁଁ ସଂଗ୍ରହ କଲି, ସେତେବେଳେ କୃଷ୍ଣସାରଙ୍କ ଠାରୁ ମୋତେ ବହୁତ ଉତ୍ସାହ ମିଳିଥିଲା । ସେ କହୁଥିଲେ- 'ତୁମେ ସବୁ ତାମସା ସଂଗ୍ରହ କର । ସଂପୂର୍ଣ୍ଣ ନହେଲେ ମଧ୍ୟ ଅସଂପୂର୍ଣ୍ଣ ତାମସା ମଧ୍ୟ ସଂଗ୍ରହ କର । ନାହିଁ ମାମୁଁ ଠାରୁ କଣାମାମୁଁ ଭଲ । ସେହି ନ୍ୟାୟରେ ଆମେ ପୁସ୍ତକରେ ସ୍ଥାନ ଦେବା । ତାହାହିଁ ହେଲା ।

ମୁଁ ଯେଉଁ କେତୋଟି ତାମସା ସଂପୂର୍ଣ୍ଣ ଭାବରେ ସଂଗ୍ରହ କରିଥିଲି, ସେଗୁଡ଼ିକ ହେଲା- ରାଧାକୃଷ୍ଣ ତାମସା ଓ ଯୋଗୀ ତାମସା । ମାତ୍ର କେତୋଟି ଅସଂପୂର୍ଣ୍ଣ ତାମସା ହେଲା- ଭିଲ୍ ତାମସା, ଚଉଡ଼ା ତାମସା ଓ ଫକୀର ତାମସା । ସାରଙ୍କ ପରାମର୍ଶ କ୍ରମେ ମୁଁ ତାମସାଗୁଡ଼ିକୁ ଏକତ୍ର କରି 'ଓଡ଼ିଶା ସାହିତ୍ୟ ଏକାଡ଼େମୀ'କୁ ଏହାର ପ୍ରକାଶନ ପାଇଁ ଅନୁରୋଧ କଲି । ଯାହାହେଉ 'ଚଇତି ତାମସା' ନାମରେ ଏହି ବହିଟି ୨୦୦୩ ମସିହାରେ ପ୍ରକାଶ ପାଇଲା । ସାର୍ ଓ ମୋର ଦ୍ୱୈତ ସଂପାଦନାରେ ଏହି ପୁସ୍ତକଟି ପ୍ରକାଶିତ । ଏଥିରେ ସାରଙ୍କ ସଂଗୃହୀତ 'ମୋଗଲ ତାମସା' ପତ୍ରସ୍ଥ ହୋଇଥିଲା । କିନ୍ତୁ 'ଏଷଣା'ରେ(ଅକ୍ଟୋବର-୧୯୮୩-ସପ୍ତମ ଖଣ୍ଡ) ରାଧାକୃଷ୍ଣ ତାମସାଟି ଏଥି ପୂର୍ବରୁ ପ୍ରକାଶ ପାଇଥିଲା ।

ପୁଣି ଥରେ ସାର୍ ମୋ ସ୍ମୃତିପଥକୁ ଆସନ୍ତି ଯେତେବେଳେ ୨୦୦୪ ମସିହାରେ ଆମେ 'ଉତ୍କଳ ସାଂସ୍କୃତିକ ଶିବିର' କାର୍ଯ୍ୟକ୍ରମରେ ବିଚ୍ଛିନ୍ନାଞ୍ଚଳ ଯାଇ ଓଡ଼ିଆ ପୁସ୍ତକ ବିତରଣ କରିବା ଆରମ୍ଭ କରିଥିଲୁଁ । ଏପରି ଏକ ପ୍ରୟୋଗାତ୍ମକ କାର୍ଯ୍ୟକ୍ରମ କଥା ଶୁଣି ସେ ଭାରି ଖୁସି ହୋଇଯାଇଥିଲେ ଏବଂ ନିଜ ହାତରେ ବହିମାନ ଆଲମାରିରୁ ଆଣି ବାଣ୍ଟିବା ପାଇଁ ଧରେଇ ଦେଇଥିଲେ । ପୁଣି ବିଚ୍ଛିନ୍ନାଞ୍ଚଳରୁ ଫେରିଲା ପରେ ଏହାର ଏକ ବିବରଣୀ 'ଏଷଣା'ରେ ପ୍ରକାଶ କରିବାକୁ ସେ ପ୍ରବର୍ତ୍ତାଇ ଥିଲେ ।

'ଓଡ଼ିଆ ଗବେଷଣା ପରିଷଦ'ର ପ୍ରତିଷ୍ଠା ୧୯୮୦ ମସିହାରେ । କିନ୍ତୁ ଏହାର ଏକବର୍ଷ ପୂର୍ବରୁ ୧୯୭୯ରେ 'ଓଡ଼ିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ' ନାମରେ ଏକ ଗବେଷଣା ସଂସ୍ଥା ଆମେ କେତେଜଣ ଭଦ୍ରକରେ ଆରମ୍ଭ କରିଥିଲୁ । ଏହି ଗବେଷଣା ପରିଷଦ ଆନୁକୂଲ୍ୟରେ ୧୯୮୨ ମସିହାରୁ 'ଶିଶୁ-ସାହିତ୍ୟ କର୍ମଶାଳା' ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ତିନିଦିନବ୍ୟାପୀ ଅନୁଷ୍ଠିତ ହେଇଥିଲା । ପ୍ରତିବର୍ଷ ଗୋଟିଏ ଜିଲ୍ଲାରେ କର୍ମଶାଳା ହୋଇ ଶେଷରେ କେବଳ ରାଜଧାନୀରେ ରାଜ୍ୟସ୍ତରରେ ଏହା ଅନୁଷ୍ଠିତ ହେଉଥିଲା । ଏହି କର୍ମଶାଳାର ମୁଖ୍ୟ ଲକ୍ଷ୍ୟ ଥିଲା ଶିଶୁ ସାହିତ୍ୟର ବିଭିନ୍ନ ଅଭିଧା ସହିତ ଲେଖକ, ଆଲୋଚକ ଓ ଗବେଷକମାନଙ୍କୁ ସୂଚେଇ ଦେବା । କେବଳ 'ତତ୍ତ୍ୱ' ଦିଗରୁ ନୁହେଁ, ଶେଷଦିନ ପିଲାମାନଙ୍କ ଗହଣରେ ଏହାର ପ୍ରୟୋଗାତ୍ମକ ପରୀକ୍ଷା ମଧ୍ୟ କରାଯାଉଥିଲା । କୃଷ୍ଣସାର ମଧ୍ୟ ଏହି ଗବେଷଣା ପରିଷଦର ନିର୍ଦ୍ଦେଶକ ମଣ୍ଡଳୀ ମଧ୍ୟରେ ଜଣେ ସଦସ୍ୟ ଥିଲେ । ତାଙ୍କ ସହିତ ଯେଉଁ ଲୋକ ଥିଲେ ଡ. କୁଞ୍ଜବିହାରୀ ଦାଶ, ଡ. ଜାନକୀବଲ୍ଲଭ ମହାନ୍ତି, ଡ. ଜଗନ୍ନାଥ ମହାନ୍ତି, ଡ. ଶ୍ରୀକାନ୍ତ ଦାଶ ଅଧିକାରୀ ଥିଲେ । ଏଥିପାଇଁ ମୋତେ ବହୁସମୟ ଦେବାକୁ ହେଉଥିଲା । ବ୍ୟକ୍ତିଗତ ଭାବରେ ଅର୍ଥ ମଧ୍ୟ ବ୍ୟୟ କରିବାକୁ ପଡୁଥିଲା । ୨୦୧୪ ମସିହାରେ ଏହି କର୍ମଶାଳାର ପୂର୍ଣ୍ଣାହୁତି ଦିଆଗଲା । ଏଥିପାଇଁ କାରଣ ହେଲା- ମୋର ବୟସ ଜନିତ ଅସୁସ୍ଥତା । କୃଷ୍ଣସାର ଅଧିକାଂଶ କର୍ମଶାଳାରେ ଶିଶୁ-ସାହିତ୍ୟର ଲେଖକମାନଙ୍କୁ ଦିଗଦର୍ଶନ ଦେଉଥିଲେ ।

'ଓଡ଼ିଆ ଶିଶୁ-ସାହିତ୍ୟ ଗବେଷଣା ପରିଷଦ'ର ବର୍ଷସାରା ବିଭିନ୍ନ କାର୍ଯ୍ୟକ୍ରମରେ ବ୍ୟସ୍ତତା ହେତୁ 'ଓଡ଼ିଆ ଗବେଷଣା ପରିଷଦ' ପାଇଁ ସମୟର ଅଭାବ ରହିଥିଲା । ସେଥିପାଇଁ ସାର୍ ମଧ୍ୟ ମନକଷ୍ଟ କରୁଥିଲେ । ମାତ୍ର ମୁଁ ନାଚାର ଥିଲି । ଯେହେତୁ ମୁଁ ଓଡ଼ିଆ ଶିଶୁ ସାହିତ୍ୟର ପ୍ରଥମ ଗବେଷକ, ସେହେତୁ ମୋର ଦାୟିତ୍ୱ ହେଉଛି ଓଡ଼ିଶାରେ ଶିଶୁ-ସାହିତ୍ୟର 'ମାନ'ବୃଦ୍ଧି ସହିତ ଶିଶୁ-ସାହିତ୍ୟର ଆଲୋଚନା ଓ ଗବେଷଣାକୁ ସମୃଦ୍ଧ କରିବା । ସେଥିପାଇଁ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଛି ।

ହଠାତ୍ ଦିନେ କୃଷ୍ଣସାର୍ 'ଡଗର' ପତ୍ରିକାର ପ୍ରକାଶିତ ଲେଖା (ସଂସ୍କୃତ ମହାଭାରତରୁ ଓଡ଼ିଆ ଗଦ୍ୟାନୁବାଦର ବିବରଣ-ଡିସେମ୍ବର-୧୯୬୭)ର ଜେରକ୍ସ କପି

ମୋ ପାଖକୁ ପଠାଇଦେଇ ଫୋନରେ କରିଲେ- 'ଏହି ଲେଖାରେ ଥିବା ଦୁଇଭାଇ ବିଶ୍ୱମ୍ବର, ବିଦ୍ୟାଭୂଷଣ ଓ ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଭଦ୍ରକ ଅଞ୍ଚଳର ଦୁଇଜଣ ପ୍ରତିଭାବାନ୍ ବ୍ୟକ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ସେ ଦୁହେଁ ଆଲୋକକୁ ଆସିପାରି ନାହାନ୍ତି । ତେଣୁ ତାଙ୍କ ବିଷୟରେ ଅନୁସନ୍ଧାନ କର ।

'ଡଗର'ର ଜେରକ୍ସ କପି ପାଇ ମୁଁ ଅନୁସନ୍ଧାନ ଆରମ୍ଭ କରିଦେଲି । କିଛିଦିନ ପରେ ବହୁକଷ୍ଟରେ ସେହି ଦୁଇ ଭାଇଙ୍କର ଜନ୍ମସ୍ଥାନ ଭଦ୍ରକର ପୂର୍ବଦିଗସ୍ଥ ବେନ୍ତାଳଗ୍ରାମ ନିକଟସ୍ଥ ଜଗନ୍ନାଥପୁର ଠାରେ ସନ୍ଧାନ ପାଇଲି । ବିଶ୍ୱମ୍ବର ବିଦ୍ୟାଭୂଷଣ (୧୮୧୧-୧୮୬୫) ହେଉଛନ୍ତି ଓଡ଼ିଶାର ପ୍ରଥମ ଓଡ଼ିଆ ପାଠ୍ୟପୁସ୍ତକର ଲେଖକ ଓ ପ୍ରଥମ ମୁନସଫ୍ । ତାଙ୍କ ସାନଭାଇ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର (୧୮୪୫-୧୯୦୭) ହେଉଛନ୍ତି ବାରିପଦାର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ମାର୍ଗଦର୍ଶକ ତଥା ଶିକ୍ଷକ ଥିଲେ । ଗୋପାଳଚନ୍ଦ୍ରଙ୍କୁ କେତେକ ଗବେଷକ ବାରିପଦା (ମୟୂରଭଞ୍ଜ)ର ଲୋକବୋଲି ଗବେଷଣା ଗ୍ରନ୍ଥରେ ଲେଖି ସାରିଲେଣି । ତେଣୁ ଏ ଦିଗରେ ଦୁହିଁଙ୍କର ଜୀବନୀ ଓ କୃତି ବିଷୟରେ ଆଲୋଚନା କରିବାର ସମୟ ଆସିଛି । ତେଣୁ ମୁଁ 'ପଣ୍ଡିତ ବିଶ୍ୱମ୍ବର ବିଦ୍ୟାଭୂଷଣ ଓ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର' ଶିରୋନାମାରେ ୨୦୧୪ରେ ଏକ ପୁସ୍ତକ କରିଥିଲି । ଏଥି ସହିତ ବିଭିନ୍ନ ପତ୍ରପତ୍ରିକାରେ ଏହି ଦୁଇଭାଇଙ୍କ ଜୀବନୀ ଓ କୃତି ସଂପର୍କରେ ଆଲୋଚନାମାନ ପ୍ରକାଶ ପାଇଛି ।

ଏହି ଅନ୍ୱେଷଣ ମୂଳରେ ଥିଲା ସାରଙ୍କର ଉତ୍ସାହ ଓ ଦିଗଦର୍ଶନ । ଏହି ଯେଉଁ ନୂତନତାର ଖୋଜରେ ତାଙ୍କର ଯେଉଁ ଚଷମା, ଦୃଷ୍ଟିକୋଣ ଏହା ତାଙ୍କର ସବୁଠାରୁ ବଡ଼ ବୈଶିଷ୍ଟ୍ୟ । ଯାହାକି ଏକ ଗବେଷକର ମୁଖ୍ୟ ଧର୍ମ । ଏହି ଏଷଣାର ଏବେ ଅନ୍ତ ଘଟିଛି । ସାର୍ ଚାଲିଗଲେ । ତାଙ୍କର ସେହି ଚଷମା ଆଉ କିଏ ପିନ୍ଧିବ, ତାହା ସମୟ କହିବ ।

କୃଷ୍ଣସାର୍ ଓ କ୍ଷେତ୍ରବାସୀବାବୁଙ୍କ ଅବର୍ତ୍ତମାନରେ 'ଓଡ଼ିଆ ଗବେଷଣା ପରିଷଦ' ଯେପରି ଅସହାୟ ହୋଇ ପଡ଼ିଛି । ତଥାପି ଆଶା ରହିଛି, ତାଙ୍କ ବ୍ୟକ୍ତିତ୍ୱ ଦ୍ୱାରା ପ୍ରଭାବିତ କେତେଜଣ ବିଦଗ୍ଧ ଗବେଷକ ଓ ସାରସ୍ୱତ ବ୍ୟକ୍ତି ଗବେଷଣା ପରିଷଦର ବିଜୟ ପତାକାକୁ ଟେକି ଧରିବେ । ସେ ବିଶ୍ୱାସ ମୋର ଅଛି । ❖

ଅପର୍ଣ୍ଣା ସଦନ
ନୂଆବଜାର, ଭଦ୍ରକ-୭୫୬୧୦୦
ମୋ-୯୨୩୮୫୦୬୨୬୨

# କିଛି ସ୍ମୃତି

ପଟ୍ଟାୟତ ନୀଳଲୋହିତ ସିଂହ ଦେବ

୧୯୮୧ ମସିହାର ପ୍ରାରମ୍ଭରେ ମୋର ଦାଦା (ଅଗ୍ରଜ) ଜିତାମିତ୍ର ପ୍ରସାଦ ସିଂହ ଦେବଙ୍କ ହାତକୁ କୌଣସି ଏକ ସୂତ୍ରରୁ ଆସିଲା ଗୋଟିଏ ପୁସ୍ତକ । ତା'ର ନାମ ଥିଲା ଶ୍ରୀଜଗନ୍ନାଥ ପଦ୍ୟାବଳୀ(ଜଣାଣ ସମଗ୍ର-୪ର୍ଥ ଭାଗ) । ତାହାର ସମ୍ପାଦନା କରିଥିଲେ ଡ. କ୍ଷେତ୍ରବାସୀ ନାୟକ, ପ୍ରକାଶ କରିଥିଲେ ଶ୍ରୀ ନିତ୍ୟାନନ୍ଦ ଦାସ, ପୁସ୍ତକ ଭଣ୍ଡାର, ବ୍ରହ୍ମପୁର-୧ ଓ କଟକ-୨ରେ ତାହା ପ୍ରାପ୍ତ ହେଉଥିଲା । ସତ୍ୟବ୍ରତ ପ୍ରେସ୍-ପିଠାପୁର, କଟକଠାରେ ଏହାର ଶୁଭପ୍ରକାଶ, ଶ୍ରୀ ଗୁଣ୍ଡିଚା ୧୯୮୦ରେ ହୋଇଥିଲା । ତହିଁରେ ଖଡ଼ିଆଳର କବି ବୀରବର ସିଂହ ନିନାଙ୍କ ସଂକ୍ଷିପ୍ତ ପରିଚୟ ଗୋଟିଏ ପୃଷ୍ଠାରେ ରହିଥିଲା । ତାହାକୁ ଦେଖି ଆମେ ସମସ୍ତେ ଖଡ଼ିଆଳ ସାହିତ୍ୟ ସମିତିର ସଭ୍ୟମାନେ ଅତ୍ୟନ୍ତ ଖୁସି ହୋଇଥିଲୁ । ଜିତାମିତ୍ର ପ୍ରସାଦ ସିଂହଦେବ କ୍ଷେତ୍ରବାସୀ ନାୟକଙ୍କ ସହ ପତ୍ର ମାଧ୍ୟମରେ ଯୋଗାଯୋଗ କଲେ ଏବଂ ଖଡ଼ିଆଳ ଆସିବାକୁ ତାଙ୍କୁ ଆମନ୍ତ୍ରିତ କଲେ । ଡ. କ୍ଷେତ୍ରବାସୀ ନାୟକ ସସ୍ତ୍ରୀକ ଖଡ଼ିଆଳ ଆସିଥିଲେ ଏବଂ ରାଜପ୍ରାସାଦର ଅତିଥି ଭବନରେ ତିନିଦିନ ଅବସ୍ଥାନ କରିଥିଲେ । ବୋଧହୁଏ ସେହି ସମୟ ଥିଲା ଏପ୍ରିଲ୍ ୧୯୮୧ । ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗରେ ଏବଂ ସାହିତ୍ୟର ସଙ୍ଗୀତ ବିଭବ ଉପରେ ଅନେକ ଆଲୋଚନା ହୋଇଥିଲା । ସଂଗୀତଜ୍ଞମାନଙ୍କୁ ଡାକି ସଙ୍ଗୀତ ଆସର ମଧ୍ୟ ଜମିଥିଲା । କବି ବୀରବର ସିଂହ ନିନାଙ୍କ ଜଣାଣ ଭଜନ ଏବଂ ତଥ୍ୟ କେଉଁଠୁ ତାଙ୍କୁ ପ୍ରାପ୍ତ ହେଲା ବୋଲି ପଚାରିବାରୁ ସେ କହିଲେ । "ରେଭେନ୍ସା ମହାବିଦ୍ୟାଳୟର କନିକା ପାଠାଗାରରେ ଖଡ଼ିଆଳ କୁସୁମ-ପ୍ରଥମ-ଭାଗ-ବୀରବର ରଚନାବଳୀ ପୁସ୍ତକଟି ଗଚ୍ଛିତ ଅଛି । ସେଠାରୁ ମୁଁ ତଥ୍ୟ ସଂଗ୍ରହ କରିଥିଲି ।"

ଖଡ଼ିଆଳ କୁସୁମ-ପ୍ରଥମଭାଗ-ବୀରବର ରଚନାବଳୀ ଲାଲ ରୁଦ୍ରମାଧବ ଦେଓ ଓ ପ୍ରୟାଗଦତ୍ତ ଯୋଷୀଙ୍କ ଯୁଗ୍ମ ସମ୍ପାଦନାରେ, ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ୧୯୫୫ରେ ପ୍ରକାଶ ପାଇଥିଲା । କ୍ଷେତ୍ରବାସୀ ନାୟକ ଏବଂ ତାଙ୍କ ସ୍ତ୍ରୀ ଲାବଣ୍ୟ ନାୟକଙ୍କ ସହ ଖଡ଼ିଆଳରୁ କଟକ ଫେରିଗଲା ପରେ ତାଙ୍କ ସହ ମୋର ପତ୍ର ବିନିମୟ ହେଉଥିଲା ।

ଅକ୍ଟୋବର କି ନଭେମ୍ବର ସଠିକ୍ ମନେ ନାହିଁ । ୧୯୮୧ରେ ମୁଁ ସପତ୍ନୀକ କଟକ ଯାଇଥିଲି ଏବଂ କଟକର ତୁଳସୀପୁର ସ୍ଥିତ ବଡ଼ମ୍ବା ରାଜାଙ୍କ କୋଠିରେ ରହୁଥିଲୁ । ମୋର ସବୁଠାରୁ ଜ୍ୟେଷ୍ଠା ଅପା (ଅଗ୍ରଜା-ଭଗିନୀ) ବଡ଼ମ୍ବାର ରାଜା କୃଷ୍ଣଚନ୍ଦ୍ର ବୀରବର ଦେବଙ୍କୁ ବିବାହ କରିଥିଲେ । ଏଣୁ ବଡ଼ମ୍ବା ଓ ଖଡ଼ିଆଳ ରାଜ ପରିବାରର ବନ୍ଧୁତା ହେତୁ ଘନିଷ୍ଠ ସମ୍ପର୍କ ଥିଲା । କଟକ-ତୁଳସୀପୁରରୁ ମୁଁ ସପତ୍ନୀକ ପ୍ରାୟ ସନ୍ଧ୍ୟା ୬ଘଣ୍ଟା ସମୟରେ ଡ. କ୍ଷେତ୍ରବାସୀ ନାୟକଙ୍କ ବସାକୁ ଯାଇଥିଲି । ସେତେବେଳେ ସେ ଛତ୍ରବଜାର ସ୍ଥିତ କୌଣସି ଏକ ଘରେ ରହୁଥିଲେ । ବୋଧହୁଏ ତାହା ଥିଲା ଏକ ଭଡ଼ାଘର । ଶ୍ରୀମତୀ ଲାବଣ୍ୟ ନାୟକ ଓ ମୋ ଗୃହିଣୀ ଉଭୟେ ଗପସପରେ ନିବିଡ଼ ଭାବେ ମଜ୍ଜିଯିବାରୁ ଡ.ନାୟକ କହିଲେ, "ସେମାନେ ଗପସପ କରୁଥାନ୍ତୁ, ଆମେ ଟିକିଏ ବୁଲିଆସିବା । ଠିକ୍ ସେହି ସମୟରେ ମୋର ସମବୟସ୍କ କବି ସେଠାରେ ପହଞ୍ଚିଲେ । ଡ. କ୍ଷେତ୍ରବାସୀ ନାୟକ ତାଙ୍କ ସହ ମୋର ପରିଚୟ କରାଇଦେଲେ । ସେ ଥିଲେ ଗିରିଜା କୁମାର ବଳୀୟାର ସିଂହ । ସଂଯୋଗକୁ ତାଙ୍କ ହସ୍ତରେ ପୁସ୍ତକଟିଏ ଥିଲା । ତାହାକୁ ସେ ମୋତେ ଉପହାର ସ୍ୱରୂପ ଦେଇଥିଲେ । ବହିଟିର ନାମ ଥିଲା ସତୀର୍ଥ ସାହିତ୍ୟ ।" ତହୁଁ ମୁଁ ଓ ଡ. ନାୟକ ବାହାରିଲୁ ଏବଂ ଚାଲିଚାଲି ଯାଇ ପହଞ୍ଚିଲୁ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ବସାରେ । ସେଠାରେ ଡକ୍ଟର ବେହେରାଙ୍କ ସହିତ ହେଲା ମୋର ପ୍ରଥମ ପରିଚୟ । ଏହି ବ୍ୟକ୍ତିଗତ ସାକ୍ଷାତ ପୂର୍ବରୁ ୧୯୮୦ ମସିହାରେ ଖଡ଼ିଆଳ ସାହିତ୍ୟ ସମିତି ଦ୍ୱାରା ପ୍ରକାଶିତ ମୋର କ୍ଷୁଦ୍ର କାବ୍ୟ 'ଛାୟା' ଡ. ବେହେରାଙ୍କ ପାଖକୁ ପଠାଯାଇଥିଲା । ତାହା ପାଠ କରି ସେ ମତାମତ ସହ ଏକ ଉତ୍ସାହପ୍ରଦ ପତ୍ର ମୋ ପାଖକୁ ଖଡ଼ିଆଳ ଠିକଣାରେ ପଠାଇଥିଲେ । ଏଣୁ ତାଙ୍କ ସହିତ ପୂର୍ବରୁ ମୋର ପରିଚୟ ଥିଲା କିନ୍ତୁ ସାକ୍ଷାତ ହୋଇ ନଥିଲା । ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ମାଧ୍ୟମରେ ଡ. ବେହେରାଙ୍କ ସହ ମୋର ଚାକ୍ଷୁସ ପରିଚୟ । ପ୍ରାୟ ଘଣ୍ଟାଏ କାଳ ତାଙ୍କ ବସାରେ ରହି ଜ୍ଞାନ ଚର୍ଚ୍ଚା କରି ଆମେ ଦୁହେଁ ବାହୁଡ଼ି ଆସିଲୁ ଏବଂ କିଛି ସମୟ ପରେ ଡ. କ୍ଷେତ୍ରବାସୀ ନାୟକଙ୍କ ବସାରୁ ମୁଁ ସସ୍ତ୍ରୀକ ତୁଳସୀପୁରକୁ ଫେରିଯାଇଥିଲି । ସେହି ପ୍ରଥମ ସାକ୍ଷାତରେ ହିଁ ବେହେରାଙ୍କ ସହ ମୋର ଆତ୍ମୀୟ ସମ୍ପର୍କ ଗଢ଼ିଉଠିଥିଲା । ସେ ମୋ ଠାରୁ ପିତାତୁଲ୍ୟ ବୟସ୍କ ହୋଇଥିବା ହେତୁ ଅନେକ ଉପଦେଶାତ୍ମକ ରସାଳ ବାଣୀରେ ମୋ ହୃଦୟକୁ ପ୍ରଥମ ସାକ୍ଷାତରେ ହିଁ ଜୟ କରିଥିଲେ । ମୋ ଠାରୁ କେବଳ ବୟସରେ ନୁହେଁ ଜ୍ଞାନରେ ମାନରେ ସବୁ ଦିଗରୁ ଏତେ ବଡ଼ ହେବା ସତ୍ତ୍ୱେ ତାଙ୍କ ପାଖରେ କୌଣସି ଆତ୍ମ ବଡ଼ିମା ପରିଦୃଷ୍ଟ ହୋଇ ନ ଥିଲା ।

ବୋଧହୁଏ ୧୯୮୨ ମସିହାର କଥା । ଖଡ଼ିଆଳ ସାହିତ୍ୟ ସମିତିର ବାର୍ଷିକ ଉତ୍ସବ ସମୟରେ ଡ. ବେହେରାଙ୍କୁ ମୁଖ୍ୟ ଅତିଥି ଏବଂ କ୍ଷେତ୍ରବାସୀ ନାୟକଙ୍କୁ ମୁଖ୍ୟ

ବକ୍ତା ଭାବରେ ନିମନ୍ତ୍ରଣ ଜଣାଇବାକୁ ସାହିତ୍ୟ ସମିତିରେ ମୁଁ ପ୍ରସ୍ତାବ ଆଗତ କଲି ଏବଂ ଖୁସିରେ ସମସ୍ତେ ତାହା ଗ୍ରହଣ କରିଥିଲେ । ସେତେବେଳେ ଖଡ଼ିଆଳ ସାହିତ୍ୟ ସମିତିର ସଭାପତି ଥିଲେ ପଣ୍ଡିତ ପ୍ରୟାଗଦତ୍ତ ଯୋଷୀ, ସମ୍ପାଦକ-ପଣ୍ଡିତ କାଳୀଚରଣ ରଥ ଏବଂ ଯୁଗ୍ମ ସମ୍ପାଦକ ଥିଲେ ଅଭୟଚରଣ ଚଲ୍ଲାନ୍ । ସେହିବର୍ଷ ଡ. କୃଷ୍ଣଚରଣ ବେହେରା ଓ ଡକ୍ଟର ନାୟକ ଉଭୟ ମିଶି ଖଡ଼ିଆଳ ଆସିଥିଲେ । ରାଜପ୍ରାସାଦର ଅତିଥି ଭବନରେ ସେମାନଙ୍କୁ ରଖାଯାଇଥିଲା । ଖଡ଼ିଆଳର ପୂର୍ବତନ ରାଜା ବ୍ରଜରାଜ ଯୁବରାଜ ଥିବା ସମୟରେ ୧୮୮୩ ମସିହାରେ ଖଡ଼ିଆଳ ସାହିତ୍ୟ ସମିତି ସ୍ଥାପନ କରିଥିଲେ ଏବଂ ପିଢ଼ି ପରେ ପିଢ଼ି ରାଜାମାନେ ଅନୁଷ୍ଠାନଟିର ପୃଷ୍ଠପୋଷକତା କରି ଆସୁଥିଲେ । ଏଣୁ ଖଡ଼ିଆଳ ସାହିତ୍ୟ ସମିତିର ଅତିଥିମାନେ ମଧ୍ୟ ରାଜ ଅତିଥି ଭାବେ ପରିଗଣିତ ହେଉଥିଲେ । ସାହିତ୍ୟ ସମିତିର ଉତ୍ସବରେ ଡ. ବେହେରା ମୁଖ୍ୟ ଅତିଥି ରହି ସାହିତ୍ୟର ବିଭିନ୍ନ ଦିଗରେ ଆଲୋକପାତ ସହ ସାହିତ୍ୟରେ ଶ୍ଳୀଳତା ଓ ଅଶ୍ଳୀଳତା ଉପରେ ଗମ୍ଭୀର ଆଲୋଚନା କରିଥିଲେ । ସାହିତ୍ୟ ସମିତିର ସଂସ୍ଥାପକ ବ୍ରଜରାଜ ରୀତି ସାହିତ୍ୟର ସ୍ରଷ୍ଟା ହୋଇଥିବା କାରଣରୁ ଏବଂ ରୀତି ସାହିତ୍ୟରେ କିଛି ସାହିତ୍ୟିକ ଅଶ୍ଳୀଳ ଦୋଷ ଆରୋପ କରୁଥିବା ହେତୁ ତାହା ପ୍ରସଙ୍ଗ ଭିତ୍ତିକ ଥିଲା । ଜୀବନର ଯେକୌଣସି ପ୍ରବୃତ୍ତିକୁ ଅଶ୍ଳୀଳତା ନାମରେ ସାହିତ୍ୟରେ ପ୍ରକାଶ ନ କଲେ ସାହିତ୍ୟ ପୂର୍ଣ୍ଣାଙ୍ଗ ହେବ ନାହିଁ । ଏଣୁ ଜୀବନର ପ୍ରତ୍ୟେକ ଦିଗ ସାହିତ୍ୟରେ ପ୍ରତିଫଳିତ ହେବା ଉଚିତ । ତାଙ୍କ ମତରେ ଶ୍ଳୀଳତା ଓ ଅଶ୍ଳୀଳତା ନିର୍ଭର କରେ 'ଭାଷାପ୍ରକାଶର ଶୈଳୀ ଉପରେ । ଗାମ୍ଭୀର୍ଯ୍ୟ ଓ ଶାଳୀନତାଯୁକ୍ତ, କଳା ବିମଣ୍ଡିତ ଭାଷା ଅଶ୍ଳୀଳତା ଦୋଷରେ ଦୁଷ୍ଟ ନୁହେଁ । ଯଦି ଭାଷା ତା'ର ଗାମ୍ଭୀର୍ଯ୍ୟ, ଶାଳୀନତା ଓ କଳାତ୍ମକତାକୁ ହରାଇ ଭାବ ସିଧାସଳଖ ଆଞ୍ଚଳିକ କଥିତ ଭାଷାରେ ସାହିତ୍ୟରେ ପ୍ରକାଶିତ ହୁଏ ତାହା ହୁଏ ଅଶ୍ଳୀଳ । ନାଟକର କିଛି ଚରିତ୍ର କ୍ଷେତ୍ରରେ ତାହା ମଧ୍ୟ ଦୂଷଣୀୟ ନୁହେଁ । ବକ୍ତା ଡ. କ୍ଷେତ୍ରବାସୀ ନାୟକ ଶିବନାରାୟଣ ଦେବଙ୍କ ସାହିତ୍ୟର ଆଲୋଚନା କରିଥିଲେ । ସେତେବେଳେ ଓଡ଼ିଆ ସାହିତ୍ୟର ଦୁଇ ଦିଗ୍ଗଜ ଖଡ଼ିଆଳରେ ତିନିଦିନ ରହିଥିଲେ । ଖଡ଼ିଆଳର ରାଜା ଓ ରାଜବଂଶୀୟମାନେ ସାହିତ୍ୟ ସହ ସଙ୍ଗୀତ ସାଧନା କରି ଆସୁଥିବା ହେତୁ ସେମାନେ ରାଗ ରାଗିଣୀପୂର୍ଣ୍ଣ ସଙ୍ଗୀତ ମଧ୍ୟ ଗାନ କରି ପାରୁଥିଲେ । କବି ସୌରଭ ଅନୁପ ସିଂହ ଦେଓ ମଧ୍ୟ ଥିଲେ ଜଣେ ସଙ୍ଗୀତ ସାଧକ । ସେତେବେଳେ ଦରବାରହଲଠାରେ ସଙ୍ଗୀତ ଗାନ କରାଯାଇଥିଲା । ସ୍ଥାନୀୟ ସଙ୍ଗୀତଜ୍ଞମାନେ ଠୁଳ ହୋଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରମୁଖ ଥିଲେ- ଖଡ଼ିଆଳର ତାନ୍‌ସେନ ଜଗବନ୍ଧୁ ଦାସ, ନନ୍ଦଲାଲ୍ ବାରିକ୍, ତବଲାବାଦକ କେଦାର ସରାଫ୍, ସିତାର ବାଦକ ସତ୍ୟଦେବ ବନ୍‌ଛୋର, ହାରମୋନିୟମ୍ ବାଦକ ହରିଶ୍ ବ୍ରଗର୍ତ୍ତି, ବଂଶୀ ବାଦକ ଝୁମକ୍ ଲାଲ୍ ବର୍ମା ଇତ୍ୟାଦି ଆହୁରି ଅନେକ । ନିଜେ ଅନୁପ୍ ସିଂହ ଦେବ ମଧ୍ୟ କେତୋଟି

ସଙ୍ଗୀତ ଗାଇଥିଲେ ଏବଂ ଅନ୍ୟ ଜଣେ ଗାଇଲାବେଳେ ତବଲା ଡୁବି ମଧ ବଜାଇଥିଲେ । ଅନୁପସିଂହ ଦେଓ ଜଣେ ଉତ୍ତମ ତବଲା ବାଦକ ଓ ସଙ୍ଗୀତ ଗାୟକ ମଧ ଥିଲେ । ଡ. କୃଷ୍ଣଚରଣ ବେହେରା ଏକାଗ୍ର ଚିତ୍ତରେ ସଙ୍ଗୀତ ଶୁଣି ତାଙ୍କ ସଙ୍ଗୀତ ପ୍ରାଣତାର ପରିଚୟ ଦେଇଥିଲେ । ତା'ର ପରଦିନ ଡ.ବେହେରା ଓ ଡ. ନାୟକଙ୍କ ଗହଣରେ ସେମାନଙ୍କୁ ଦେଖାଇବା ପାଇଁ ଆମେମାନେ ଯୋଗୀମଠ ଯାଇଥିଲୁ ।

ଯୋଗୀମଠ ଖଡ଼ିଆଳ ସହରର ପୂର୍ବକୁ ପ୍ରାୟ ୯.କି.ମି. ଦୂରରେ ଅବସ୍ଥିତ । ଏକ ଛୋଟ ପାହାଡ଼ କିଛି ଦ୍ରୁମ ସହ ସାମାନ୍ୟ ବୁଦିବୁଦିକିଆ ଜଙ୍ଗଲ । ତହିଁର ଏକ ଗୁମ୍ଫାରେ ପ୍ରାଗୈତିହାସିକ, ନିଓଲିଥିକ ଯୁଗର କିଛି ଚିତ୍ର ରହିଛି । ଗୋଟିଏ ବଳଦ ଏବଂ ଆଉ କିଛି ପ୍ରତୀକାତ୍ମକ ଚିତ୍ର ରହିଛି । ଡକ୍ଟର ଜିତାମିତ୍ର ପ୍ରସାଦ୍ ସିଂହଦେଓ ଏ ସବୁର ଗଭୀର ଅଧ୍ୟୟନ ପୂର୍ବକ ବିଷଦ ବ୍ୟାଖ୍ୟା ତାଙ୍କ ପୁସ୍ତକମାନଙ୍କରେ କରିଛନ୍ତି । ସେସବୁ ଆମ ଅତିଥି ଦୁଇଜଣଙ୍କୁ ସିଏ ବୁଝାଉଥିଲେ । ବର୍ତ୍ତମାନ ଓଡ଼ିଶା ସରକାରଙ୍କ ତରଫରୁ ପାହାଚ ତିଆରି ହୋଇଗଲାଣି । ସେତେବେଳେ ନଥିଲା । ସେଠାକୁ ଚଢ଼ିବା ପାଇଁ ଏତେ ସହଜ ନ ଥିଲା କିନ୍ତୁ ଏକ କୌଶଳ ଅବଲମ୍ବନ ପୂର୍ବକ ସେଠାକୁ ଚଢ଼ିବାକୁ ସହଜ ହେଉଥିଲା । ପରମ୍ପରା କ୍ରମେ ଗ୍ରାମୀଣ ଲୋକ ତାହା ଜାଣିଥିଲେ । ଯୋଗୀମଠଠାରୁ ସରଗାଦି ଗ୍ରାମ ଅଳ୍ପ ଦୂରରେ ରହିଛି, ସେଠାର ଚୌହାନ ବଂଶର ଗୌନ୍ତିଆ ସତ୍ୟଚରଣ ସିଂହ ବାବୁ ସେହି କୌଶଳ ଆମ୍ଭମାନଙ୍କୁ ଶିଖାଇ ଦେଇଥିଲେ । ପ୍ରଥମେ ଜିତାମିତ୍ର ସିଂହଦେଓ ଗୁମ୍ଫାର ଚଟାଣକୁ ଚଢ଼ିଗଲେ ଏବଂ ତଳକୁ ହାତ ଲମ୍ବାଇଲେ । ଡ. ବେହେରା ତଳୁ ଉପରକୁ ହାତ ଲମ୍ବାଇ ଜିତାମିତ୍ର ସିଂହଦେଓଙ୍କ ହାତକୁ ଧରିଲେ । ମୁଁ ଆଉ ଅଭୟ ଚଲାନ୍ ତଳୁ ତାଙ୍କୁ ଉଠାଇ ଉପରକୁ ପେଲିଲୁ । ଜିତାମିତ୍ର ସିଂହ ଦେଓ ଉପରକୁ ଟାଣିଲେ । ସେହିପରି ଭାବେ କ୍ଷେତ୍ରବାସୀ ନାୟକଙ୍କୁ ଚଢ଼ାଗଲା । ତହୁଁ ଆମେ ଗୁମ୍ଫା ଚିତ୍ର ଦେଖିଲୁ । ସେଠାରୁ ଉତ୍ତରକୁ ବଲାଙ୍ଗୀର ଜିଲ୍ଲାର ଭୂଭାଗ ନେତ୍ର ସୀମା ଅତିକ୍ରମ କରି ଆଗକୁ ବିସ୍ତୃତ ହୋଇଛି । କିଛି ପର୍ବତ, ଜଙ୍ଗଲ, ଜନପଦର ଦୃଶ୍ୟ ନେତ୍ର ରୋଚକ ହୋଇ ଅତି ଚମତ୍କାର ଦେଖାଯାଏ । ବର୍ତ୍ତମାନ ଜଙ୍ଗଲ କଟିଯିବାରୁ କିଛି ପଦା ଅଞ୍ଚଳ ଦେଖିବାକୁ ମିଳେ । ତଥାପି ପ୍ରକୃତିର ସୌନ୍ଦର୍ଯ୍ୟ ଅନବଦ୍ୟ । ଗୁମ୍ଫା ଚିତ୍ର ଦେଖିସାରି ପାହାଡ଼ର ଆହୁରି ଉପରକୁ ଉଠିଲୁ । ଗୁମ୍ଫାଠାରୁ ଉପରକୁ ଉଠିବାକୁ ମଧ କୌଶଳ ଦରକାର ପଡ଼େ । ଗୁମ୍ଫାକୁ ଯିବା ପାଇଁ ଚଢ଼ିଥିବା ଭଳି ଉପାୟରେ ଉପରକୁ ଗଲୁ । ଚତୁର୍ଦ୍ଦିଗରେ ଦିଗ୍‌ବଳୟର ସୌନ୍ଦର୍ଯ୍ୟ । ସେଠାରୁ ଦକ୍ଷିଣକୁ ସୁନ୍ଦର ନଦୀ ଏବଂ ଉତ୍ତରକୁ ଐରୀ ନଦୀର ଦୃଶ୍ୟ ଏବଂ ପୂର୍ବରେ ଉଭୟ ନଦୀର ମିଳନ ଛୋଟିଆ ପାହାଡ଼ର ଆଗ୍ନେୟ କୋଣରୁ ପୂର୍ବକୁ କ୍ରମଶଃ ଗଡ଼ାଣିଆ ହୋଇଛି । କିଛି ବଡ଼ ବଡ଼ ପାଷାଣ ପାର୍ଶ୍ୱରେ ପଦବ୍ରଜରେ ସମସ୍ତେ ଧୀରେ ଧୀରେ ଓହ୍ଲାଇ ଆସିଲୁ । ପଥର ଦୂରତା ଟିକିଏ ଅଧିକ ହେଲେ ବି ଚରଣ କ୍ଲାନ୍ତିକୁ

ପ୍ରାକୃତିକ ସୌନ୍ଦର୍ଯ୍ୟ ହରଣ କରି ନେଉଥାଏ । ଯୋଗୀମଠର ପୂର୍ବରେ ସାମାନ୍ୟ ଐଶାନ୍ୟକୁ ଋଷିପୀଠ ପର୍ବତ ଦଣ୍ଡାୟମାନ । ଆଞ୍ଚଳିକ ଖରଡିଆ ଭାଷାରେ ତାହାକୁ 'ରିସିପିଟି' କହନ୍ତି । ଓଡ଼ିଆର 'ଋ'କୁ ହିନ୍ଦୀରେ 'ରି' ଉଚ୍ଚାରଣ କରାଯାଏ । ଏଣୁ ତା'ର ପ୍ରଭାବରେ ଋଷି, ରିସି ଉଚ୍ଚାରିତ ହୁଏ । କ୍ରମେ ଅପଭ୍ରଂଶିତ ହୋଇ ଲୋକମୁଖରେ ପର୍ବତଟି ରିସିପିଟି ବୋଲଉଛି । ଋଷିପୀଠର ଦକ୍ଷିଣକୁ ଋଷିଗାଁ । ଏହା ଋଷିଗ୍ରାମରୁ ରିସିଗାଁ ହୋଇଛି । ଯୋଗୀମଠ, ଋଷିପୀଠ ଋଷିଗ୍ରାମକୁ ନେଇ ଅନେକ କିମ୍ବଦନ୍ତୀ ରହିଛି । ସେ ସବୁ ଉଲ୍ଲେଖ କଲେ ଏଠାରେ ଅପ୍ରାସଙ୍ଗିକ ହେବ । ଯୋଗୀମଠରେ ଯୋଗୀମାନେ । ଋଷିପୀଠରେ ଋଷିମାନେ ଏବଂ ଋଷିଗ୍ରାମରେ ଗାର୍ହସ୍ଥ୍ୟ ଧର୍ମାବଲମ୍ବୀ ଋଷିମାନେ ରହୁଥିବାର ସୂଚନା ମିଳେ । ଶବ୍ଦଗୁଡ଼ିକର ଅର୍ଥ ସାମଞ୍ଜସ୍ୟରୁ ଏହା ଅନୁମେୟ । ସେ ସବୁ କିମ୍ବଦନ୍ତୀରୁ କିଛି କହି କହି ସମସ୍ତେ ପହଞ୍ଚିଲୁ ଋଷିପୀଠ । ସେଠାରେ ଗୋଟିଏ ଗୋଟିଏ ସ୍ଥାନରେ ଅତି ସ୍ପଷ୍ଟ ଭାବେ ପ୍ରତିଧ୍ୱନି ସୃଷ୍ଟି ହୁଏ । ସମସ୍ତେ ଉଚ୍ଚସ୍ୱରରେ କିଛି କିଛି ଶବ୍ଦ ଉଚ୍ଚାରଣ କଲୁ । ଏବଂ ସ୍ପଷ୍ଟ ଭାବରେ ପ୍ରତିଧ୍ୱନିତ ଶବ୍ଦ ଶୁଣି ଆନନ୍ଦ ଉପଭୋଗ କରିଥିଲୁ । କିଛି ସମୟ ଏକ ବୃକ୍ଷଛାୟାରେ ବିଶ୍ରାମ ନେଇ ଖଡ଼ିଆଳ ପ୍ରତ୍ୟାବର୍ତ୍ତନ କଲୁ ।

ଡ. କୃଷ୍ଣଚରଣ ବେହେରା ଓ କ୍ଷେତ୍ରବାସୀ ନାୟକ ଖଡ଼ିଆଳରୁ କଟକ ଚାଲିଗଲେ ସିନା ଆମ ସମ୍ପର୍କ ନିବିଡ଼ରୁ ନିବିଡ଼ତମ ହୋଇଗଲା । ଯେବେ କଟକ ଗଲେ ମୁଁ ତାଙ୍କ ଘରକୁ ଯାଉଥିଲି । ଜାନୁଆରି ୧୯୮୬ରେ ଡ. କ୍ଷେତ୍ରବାସୀ ନାୟକଙ୍କ ଶରୀରର ଅବସାନ ଘଟିଲା । ଜନ୍ମ ଆଉ ମୃତ୍ୟୁର ରହସ୍ୟ ମନୁଷ୍ୟ ଜ୍ଞାନର ବହିର୍ଭୂତ । ଏହି ସ୍ଥୂଳ ସଂସାରରେ ତାହାହିଁ ସତ୍ୟ କିନ୍ତୁ ଭାରତୀୟ ଋଷିମୁନିମାନେ ସୂକ୍ଷ୍ମ ଜଗତ ଓ କାରଣ ଜଗତର କଥା କହିଥାଆନ୍ତି ଯାହା ଆମ ଅନୁଭୂତି ଜନିତ ଜ୍ଞାନର ବାହାରେ । ଆମେ ଯାହା କିଛି ଜାଣିଛୁ ତା' ବାହାରେ ଆହୁରି ଅନେକ କଥା ରହିଛି ଏଣୁ ଆମେ ନ ଜାଣିଥିବା କଥା ସଂସାରରେ ନାହିଁ ବୋଲି କହିବା ଅନୁପଯୁକ୍ତ । ସେଥିପାଇଁ ଆତ୍ମାର ସ୍ଥିତିକୁ ବିଶ୍ୱାସ କରିବାକୁ ପଡ଼େ ।

୧୯୯୧ରୁ ୯୨ ବେଳକୁ ଡ. ବେହେରା ରେଭେନ୍ସା କଲେଜ ହତା ଭିତରେ ରହୁଥିଲେ । ସେତେବେଳେ ମୋର 'ଦଧିବାମନ' କାବ୍ୟ ରଚନା ଶେଷ ହୋଇଥାଏ, ସେଥିରେ ମତାମତଟିଏ ଦେବାକୁ ମୁଁ କହିବାରୁ 'ଦର୍ପଣରେ ଦର୍ଶନ' ଶୀର୍ଷକର ମତାମତଟିଏ ଦେଇଥିଲେ । ତାହା ଦଧିବାମନ କାବ୍ୟରେ ଦିଆଯାଇଅଛି । ବୋଧହୁଏ ସେତେବେଳେକୁ ସେ ରେଭେନ୍ସା ପରିସର ଘର ଛାଡ଼ି ସାରିଥିଲେ । ୧୯୯୬ ମସିହାରେ ଡ. ବେହେରା ଦ୍ୱିତୀୟବାର ଖଡ଼ିଆଳ ଆସିଥିଲେ । ସେତେବେଳକୁ ରାଜପ୍ରାସାଦର ଅତିଥି ଭବନ, ରକ୍ଷଣାବେକ୍ଷଣର ଅଭାବହେତୁ ଆଉ ରହିବା ଅବସ୍ଥାରେ ନ ଥିଲା (ବର୍ତ୍ତମାନ ଏହା ଆଉ ନାହିଁ) । ଡକ୍ଟର ବେହେରାଙ୍କୁ ମୁଁ ଆଉ ତତ୍‌କାଳୀନ ଖଡ଼ିଆଳ ସାହିତ୍ୟ ସମିତିର ସମ୍ପାଦକ ଅଭୟ ଚରଣ ଚର୍ଲାନ୍ ରାଜସ୍ୱ ବିଭାଗର ସରକାରୀ

ଡାକବଙ୍ଗଳାରେ ରଖାଇଥିଲୁ । ସେହିବର୍ଷର ବାର୍ଷିକ ଉତ୍ସବରେ ଡ. ବେହେରା ମୁଖ୍ୟ ଅତିଥି ଥିଲେ । ବହୁ ଶାସ୍ତ୍ରଦର୍ଶୀ ଡ. ବେହେରାଙ୍କ ଭାଷଣରେ ପ୍ରତିଫଳିତ ବିଦ୍‌ବତ୍ତାରେ ଶ୍ରୋତା ମଣ୍ଡଳୀ ଚମତ୍କୃତ ହୋଇଯାଇଥିଲେ । ରାଜସ୍ୱ ବିଭାଗ ଡାକ ବଙ୍ଗଳାରେ ବସି ସେ ଓ ମୁଁ କଥାବାର୍ତ୍ତା ପ୍ରସଙ୍ଗରେ ଭାଷା ପ୍ରସଙ୍ଗ ଉଠିଥିଲା । ଓଡ଼ିଶାର ପଶ୍ଚିମାଞ୍ଚଳର ଭାଷାକୁ ସେ ବହୁ ସମ୍ମାନ ଜଣାଇଥିଲେ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଓଡ଼ିଆ ଗବେଷଣା ପରିଷଦର ମୁଖ୍ୟ ପତ୍ର ଏଷଣା ପତ୍ରିକାରେ ମଧ ପଶ୍ଚିମ ଓଡ଼ିଶାର ଭାଷା ସଂପର୍କୀୟ କିଛି ପ୍ରବନ୍ଧ ସେ ପ୍ରକାଶ କରିଥିଲେ । ଡ. ବେହେରା ଥିଲେ ଜ୍ଞାନ ପିପାସୁ, ଜଣେ ଉଦାର ହୃଦୟର ବ୍ୟକ୍ତି । ତାଙ୍କ ଠାରୁ ବୟସରେ କନିଷ୍ଠ ବ୍ୟକ୍ତିମାନଙ୍କୁ ମଧ ସେ ଯଥା ଯୋଗ୍ୟ ସ୍ନେହ ଶ୍ରଦ୍ଧା ସହ ସମ୍ମାନ ପ୍ରଦର୍ଶନ କରୁଥିଲେ । ବ୍ୟକ୍ତିର ଏହା ଏକ ବିରାଟ ଗୁଣ ଯାହା ଅନେକ ବିଦ୍ୱାନଙ୍କଠାରେ ଦେଖାଯାଏ ନାହିଁ ।

ଡ. ବେହେରାଙ୍କ ଖଡ଼ିଆଳ ରହଣି ସମୟରେ ମୁଁ, ଦାଦା (ଅଗ୍ରଜ ଜିତାମିତ୍ର), ଅଭୟ ଚରଣ ଚଲାନ୍ ଓ ଆଉ କେତେଜଣ ଜ୍ଞାନପ୍ରିୟ ବ୍ୟକ୍ତି ତାଙ୍କୁ ରାଣୀପୁର ଝରିଏଲ୍ ଦେଖାଇବାକୁ ନେଇଥିଲୁଁ । ରାଣୀପୁର ଝରିଏଲ୍ ବଲାଙ୍ଗିର ଜିଲ୍ଲାରେ ଅବସ୍ଥିତ, ମାତ୍ର ଖଡ଼ିଆଳ ସହରକୁ ପାଖ । ପ୍ରାୟ ୩୫ କି.ମି. ରାସ୍ତା । ତାହା ନବମ ଶତାବ୍ଦୀର ତନ୍ତ୍ରପୀଠ । ସମଗ୍ର ଭାରତ ବର୍ଷରେ ୯ଟି ତନ୍ତ୍ରପୀଠ ରହିଛି । ତନ୍ମଧ୍ୟରୁ ଓଡ଼ିଶାରେ ଦୁଇଟି; ପୂର୍ବ ଓଡ଼ିଶାରେ ହୀରାପୁର ଓ ପଶ୍ଚିମ ଓଡ଼ିଶାରେ ରାଣୀପୁର ଝରିଏଲ୍ । ଏଠାରେ ଛାତ ନ ଥାଇ ଗୋଲାକାର ପ୍ରାଚୀର ରହିଛି, ବେଶି ଉଚ୍ଚ ନୁହେଁ ପ୍ରାୟ ୧୦ଫୁଟ୍ । ପୂର୍ବଦିଗରେ ପ୍ରବେଶ ପଥ । କାନ୍ଥର ଭିତର ପଟେ ୬୪ ଯୋଗିନୀଙ୍କର ମୂର୍ତ୍ତିଗୁଡ଼ିକ ରହିଛି । ବିଭିନ୍ନ ଯୋଗିନୀମାନେ ବିଭିନ୍ନ ମୁଦ୍ରାରେ ଅଛନ୍ତି । ଚତୁର୍ଦ୍ଦିଗରୁ ସମବ୍ୟବଧାନର କେନ୍ଦ୍ରରେ ଊର୍ଦ୍ଧ୍ୱଲିଙ୍ଗ ଶିବମୂର୍ତ୍ତି ରହିଛି । ବୁଲି ବୁଲି ଯୋଗିନୀ ମୂର୍ତ୍ତିମାନଙ୍କୁ ଦେଖି ଆସିଲେ ଶିବଙ୍କର ପରିକ୍ରମା ହୋଇଯାଏ । ବାହାରେ ଅନେକ ଛୋଟ ଛୋଟ ମନ୍ଦିର ରହିଛି ଯହିଁରେ ଦୁଇଜଣ ମାତ୍ର ବ୍ୟକ୍ତି ଉପବେଶନ କରିପାରିବେ । ସେହି ମନ୍ଦିର ଭିତରେ ବସି ଯୋଗୀ-ଯୋଗିନୀମାନେ ତନ୍ତ୍ର ସାଧନା କରୁଥିଲେ । ଜିତାମିତ୍ର ପ୍ରସାଦ ସିଂହ ଦେଓ ପ୍ରତ୍ନତତ୍ତ୍ୱବିତ୍ ହୋଇଥିବା ହେତୁ ଯୋଗିନୀମାନଙ୍କର ମୁଦ୍ରାଦିର କାରଣ ଦର୍ଶାଇ ଡ. ବେହେରାଙ୍କୁ ବୁଝାଉଥିଲେ ଓ ଆମେ ସମସ୍ତେ ତାହା ଶୁଣି ଶୁଣି ସେମାନଙ୍କ ପଛରେ ପଛରେ ଯାଉଥାଉ । ହଠାତ୍ ଡ. ବେହେରା ଶ୍ୱାସରୁଦ୍ଧ ହେବାରୁ ତଳେ ବସିପଡ଼ିଲେ । ଆମେ ସମସ୍ତେ ତାଙ୍କୁ ଘେରି ଠିଆ ହୋଇଗଲୁ । ତୁରନ୍ତ ସେ ତାଙ୍କ ପକେଟ୍‌ରୁ ଚୁରୁଟ୍ ଭଳି କଳାରଙ୍ଗର କାଠି ବାହାର କରି ମୁହଁରେ ପୂରାଇ ଜୋର୍‌ରେ ଟାଣିବାକୁ ଲାଗିଲେ । ଅଳ୍ପ ସମୟ ପରେ ଠିକ ହୋଇଗଲେ ଏବଂ ଉଠିପଡ଼ି କହିଲେ, 'ମୁଁ ହେଉଛି ଶ୍ୱାସରୋଗୀ । ଡାକ୍ତରଙ୍କ ପରାମର୍ଶରେ ଏହା ସବୁବେଳେ ପକେଟ୍‌ରେ ରଖିଥାଏ । ବୋଧହୁଏ ଏହି ଛୋଟିଆ ପାହାଡ଼ଟ

ଚଟାଣରେ ଦୀର୍ଘ ସମୟ ଚାଲିବାରୁ ଶ୍ୱାସର ବେଗବୃଦ୍ଧି ହେତୁ ହଠାତ୍ ଶ୍ୱାସରୁଦ୍ଧ ହୋଇଗଲା । ତା' ପରେ ଆଉ କିଛି ହୋଇ ନଥିଲା । ଏଥିରୁ ଜଣାପଡ଼େ ତାଙ୍କ ଜ୍ଞାନ ଆହରଣ ପିପାସା କେତେ ବଳବତୀ ଥିଲା । ଜଣେ ଦୀର୍ଘ ଦିନର ଶ୍ୱାସରୋଗୀ ତାଙ୍କ ରୋଗ ସମ୍ବନ୍ଧରେ ଜାଣିଥିବା ସତ୍ତ୍ୱେ ଇତିହାସ ପ୍ରତ୍ନ ଓ ତତ୍ତ୍ୱ ଜିଜ୍ଞାସା ନେଇ ପଥର ଚଟାଣରେ ଦୀର୍ଘ ସମୟ ଚଲାବୁଲା କରିଥିଲେ ।

ଅବସରପ୍ରାପ୍ତ ପରେ ସେ ପୂର୍ବ କଟକସ୍ଥିତ କଲ୍ୟାଣୀନଗରସ୍ଥ ଉତ୍କଳ ଏପାର୍ଟମେଣ୍ଟରେ ରହିବାକୁ ଲାଗିଲେ । ମୁଁ ଅନେକଥର ସେଠାକୁ ଯାଇ କେତେ ଚା' ଜଳଖିଆ ଖାଇଛି ହିସାବ ନାହିଁ । ସନ୍ ୨୦୧୪ରେ ତାଙ୍କ ସହ ମୋର ଶେଷ ସାକ୍ଷାତ । ବୋଧହୁଏ ଏପ୍ରିଲ୍ ମାସ ଥିଲା । ତାଙ୍କ ଏପାର୍ଟମେଣ୍ଟକୁ ଗଲି । ସେତେବେଳେ ସୁଧୀର ଚନ୍ଦ୍ର ବେହୁରା ତାଙ୍କ ସହ ବସିଥିଲେ । ମୋତେ ଦେଖି ଡ. ବେହେରା ତୁରନ୍ତ ଚା' ଜଳଖିଆ ଯୋଗାଇବାକୁ ବେହୁରାଙ୍କୁ ତାଙ୍କ ଘର ଭିତରକୁ ପଠେଇଲେ । ଜଳଖିଆ ଖାଇସାରି ଅଳ୍ପ ସମୟ ବସି ତାଙ୍କଠାରୁ ବିଦାୟ ନେଲି । ସମୟ ଗଡ଼ିଚାଲେ, ଘଟଣା ଘଟିଚାଲେ । ଯେଉଁ କିଛି ଘଟଣା ହୃଦୟରେ ଗଭୀର ରେଖାପାତ କରିଥାଏ ତାହା ଆଜୀବନ ମନେ ରହିଯାଏ, ଯେଉଁ ଅନୁଭୂତି ଗଭୀର ନଥାଏ ତାହା ସମ୍ପୂର୍ଣ୍ଣ ବିସ୍ମୃତ ହୋଇଯାଏ । ଆଉ କିଛି ଜୀବନର ଅନୁଭୂତି ଭାବିଲା ବେଳେ ମନକୁ ଆସେ ନାହିଁ କିନ୍ତୁ ହଠାତ୍ କେତେବେଳେ ତା'ର ସ୍ମୃତି ଜାଗ୍ରତ ହୋଇଯାଏ । ଆଉ କେତେ ସମୟ ଅନୁଭୂତି ସମ୍ପନ୍ନ ବ୍ୟକ୍ତି ମନେ ପକାଇଦେଲେ ସ୍ମୃତିର ଉଦୟ ହୁଏ । ଏହିପରି ଭାବରେ ଚାରିପ୍ରକାର ଭେଦରେ ଅତୀତ ଘଟଣା ମାନସ ଜଗତରେ ଲୁଚକାଳି ଖେଳୁଥାଏ । ତନ୍ମଧ୍ୟରୁ ସ୍ମୃତି ସଂପୁଟକରେ ସଞ୍ଚିତ ହୋଇଥିବା ଗଭୀର ଅନୁଭୂତିର ଘଟଣା ଭାବି ଦେଉ ଦେଉ ମାନସ ଚକ୍ଷୁରେ ଉଦ୍ଭାସିତ ହୁଏ ଏବଂ ଅତୀତ ସୁଖର କରୁଣ ସ୍ମୃତି ନେତ୍ରକୁ ସଜଳ କରେ । ବର୍ତ୍ତମାନ ସ୍ମୃତି ରାଜିକୁ ଅକ୍ଷରବଦ୍ଧ କଲାବେଳେ ନେତ୍ର ଅଶ୍ରୁଳ ହୋଇଉଠୁଛି ।

ଡକ୍ଟର. କୃଷ୍ଣଚରଣ ବେହେରା ସ୍ରଷ୍ଟାଙ୍କ ଆଶୀର୍ବାଦରୁ ଆଜୀବନ ଶ୍ୱାସରୋଗୀ ହେବା ସତ୍ତ୍ୱେ ପୂର୍ଣ୍ଣ ଆୟୁଭୋଗ କରିଅଛନ୍ତି । ଜନ୍ମମୃତ୍ୟୁ ସଂସାରର ଏକ ସ୍ୱାଭାବିକ କଥା । ସେ ହିଁ ଅମର ଯା'ର କୀର୍ତ୍ତି ଅଛି, ଯଶ ଅଛି ଯଶୋଶରୀରରେ ଡ. ବେହେରା ଚିରନ୍ତନ, କାଳଜୟୀ । ଏହାହିଁ ତ ମନୁଷ୍ୟ ଜୀବନର ସଫଳତା ।

ଚଳତ୍‌ଚିତ୍ତଂ ଚଳତ୍‌ବିତ୍ତଂ ଚଳତ୍ ଜୀବନ ଯୌବନମ୍
ଚଳାଚଳଂ ଇଦଂସର୍ବଂ କୀର୍ତ୍ତିର୍ଯସ୍ୟ ସଃ ଜୀବତି । ❖

'ଶାନ୍ତିଭବନ', ଖଡ଼ିଆଳ ରାଜପ୍ରସାଦ
ଆଜାଦ୍‌ଚୌକ୍, ନୂଆପଡ଼ା, ପିନ୍-୭୬୬୧୦୭
ମୋ. ୯୯୩୭୯୦୬୫୮୬

# କୃଷ୍ଣ ସାର୍‌ଙ୍କ କଇଁଚି

ଡା. ଦୁର୍ଯ୍ୟୋଧନ ଦାସ

ଦୁଇଜଣ କଇଁଚିଧରା ଗୁରୁଙ୍କ ସଂସ୍ପର୍ଶରେ ଆସି ମୋ ଜୀବନ ଧନ୍ୟ ହୋଇଯାଇଛି । ସେମାନେ ମୋତେ ଅଗ ଓ ଅକ୍ଷର ଟୁଙ୍କିବା ଶିଖାଇଛନ୍ତି । ମୋତେ ଆଶ୍ଚର୍ଯ୍ୟ ଲାଗେ ଚକ୍‌ଧରା ଆଙ୍ଗୁଳି କିପରି କଇଁଚିକୁ ଆୟତ୍ତ କରିପାରିଛି । ସେ ଦୁହେଁ ମୋତେ ବାରମ୍ବାର ତାଗିଦ କରିଥିଲେ ଆଗେ ଚକ୍ ବା ଖଡ଼ି ଧରି ସୁନ୍ଦର ଅକ୍ଷର ଲେଖିବା ପରେ ତାକୁ କଇଁଚିରେ କାଟିବାକୁ ଅଭ୍ୟାସ କରିବ । ଏହାଦ୍ୱାରା ଭାଷାଲଗ୍ନ ଭାବ ଚହଟି ଉଠିବ । ଶବ୍ଦର ଗହଳିରେ ଚେତନାର ଚୂଳକୁ ମୋଡ଼ି ମକଚି ମରିଯିବାକୁ ଛାଡ଼ିବ ନାହିଁ । ତାର ଉନ୍ମେଷ ଲାଗି ପଥ ପରିଷ୍କାର କରିବ । କାଣ୍ଡ ଶୀର୍ଷରେ ଦୁଇ ତିନିଟା କୁଆଁ ବାହାରି ଏଣେତେଣେ ଗଛକୁ ବଙ୍କିବାକୁ ଲାଗିଗଲେ ଆପାତତଃ ଅଦରକାରୀ ଡାଳକୁ କାଟି ବୃକ୍ଷକୁ ବିଶାଳ ଓ ବଡ଼ କରିବା ଲାଗି କଇଁଚିର ପ୍ରୟୋଗ କରିବ । କିନ୍ତୁ ତାଙ୍କ ଉପଦେଶକୁ ଅମାନ୍ୟ କରି ଅଳ୍ପ ଅକ୍ଷର ଲେଖି ବେଶି କାଟି ଦେଉଥିବାରୁ ସାରସ୍ୱତ ପୋଷାକ ଏପର୍ଯ୍ୟନ୍ତ ମନ ପସନ୍ଦର ହୋଇପାରି ନାହିଁ:- ସବୁ ଅଧାଗଢ଼ା, ସବୁ ଖଣ୍ଡିଆ ଖାବରା - ବିକଳାଙ୍ଗ ଓ ବିପର୍ଯ୍ୟସ୍ତ ।

ପ୍ରଥମ ଶିକ୍ଷା ଓ ଦୀକ୍ଷା ଗୁରୁ ହେଉଛନ୍ତି ପ୍ରଫେସର ଡ. କୃଷ୍ଣଚରଣ ବେହେରା ଏବଂ ଦ୍ୱିତୀୟ ଦୀକ୍ଷା ଗୁରୁ ହେଉଛନ୍ତି ପ୍ରଫେସର କବି ବିନୋଦ ଚନ୍ଦ୍ର ନାୟକ । ଉଭୟଙ୍କ ପାଖରେ ଥିଲା କାବ୍ୟ କବିତା-କଟା ଧାରୁଆ କତୁରୀ । କର୍ତ୍ତନ କଳା ନିପୁଣ କତୁରୀ ଗୁରୁଙ୍କ ଆଜ୍ଞା ପାଇଲା ମାତ୍ରେ କେତେବେଳେ କେଉଁଠି କେଉଁ ଧାଡ଼ିକୁ କାଟି ଉଡ଼ାଇଦେବେ ତ କେଉଁ ଅକ୍ଷରକୁ ଝୁଙ୍କି ଦେବେ ତାହା କହିହେବ ନାହିଁ । ତେବେ ଏହା ନିଶ୍ଚିତ କହିହେବ ଯେ ଭାଷା-ସୂତା-ବୁଣା ଭାବ-ରଙ୍ଗ ବୋଳା ସାରସ୍ୱତ ଥାନଟି ବନ୍ଧୁଧା କଟା ଯୋଡ଼ା ପରେ ସୁନ୍ଦର ଓ ଆକର୍ଷଣୀୟ କବିତା ଓ ଗଳ୍ପର ଆକାର ନେଇ ବାହାରିବ ଯାହା ଶୀତରେ କୋର୍ଟ, ଗ୍ରୀଷ୍ମରେ ପଞ୍ଜାବୀ ଏବଂ ବର୍ଷାରେ ବର୍ଷାତି ପରି କାମ କରିବ । ତେଣୁ କତୁରୀକୁ କଳାତ୍ମକ ଭାବରେ ପ୍ରୟୋଗ କରିବା ଖାଲି ଦାୟିତ୍ୱ ସମ୍ପନ୍ନ କାର୍ଯ୍ୟ ନୁହେଁ ଦକ୍ଷତା ପୂର୍ଣ୍ଣ କାର୍ଯ୍ୟ ମଧ୍ୟ ।

ଗୁରୁ ବିନୋଦ ସାର୍‌ଙ୍କ କଥା ଚାରି ପାଞ୍ଚ ଧାଡ଼ିରେ ସାରିଦେଇ ମୁଁ ଯିବି କୃଷ୍ଣସାର୍‌ଙ୍କ କତୁରୀ ପାଖକୁ ଯାହା ଉକ୍ତ ସ୍ମୃତି ସଂବଳିତ ଆଲେଖର ଅସଲ ପ୍ରସଙ୍ଗ । ସାରସ୍ୱତ କତୁରୀ ସହିତ ବିନୋଦ ସାର୍‌ଙ୍କ ପାଖରେ ଥିଲା ଅସଲ ଇସ୍‌ପାତର ଏକ କଇଁଚି, ଯାହା ନିଶକଟା କଇଁଚି ପରି ଛୋଟ ଏବଂ ଶୀତଦିନେ କୋର୍ଟ ପକେଟରେ ସୁବିଧାରେ ରହି ପାରୁଥିଲା । ତାଙ୍କ ପରାମର୍ଶ କ୍ରମେ ମୋ ପକେଟରେ ବି ରହୁଥିଲା ସେହିପରି ଏକ କଇଁଚି, ବିଶେଷତଃ ପୁଷ୍ପବାଟିକାରେ ତାଙ୍କ ସହିତ ଭ୍ରମଣ କଲାବେଳେ । ମାଳୀଙ୍କ ଅନୁମତି ନେଇ ମଉଳା ଗୋଲାପର ଡେମ୍ଫ ତଳକୁ ଯେଉଁଠାରେ ଥାଏ ଛୋଟ ଏକ ସୁକୁମାର କୋରକ ସେହିଠାରୁ କାଟି ଆଣିବାକୁ ମୋତେ ଦିଆଯାଇଥାଏ ଟ୍ରେନିଂ । ପ୍ରଶିକ୍ଷିତ ଛାତ୍ର ରୂପେ ଏହିପରି ଅନେକ କୋରକ ସଂଗ୍ରହ ପୂର୍ବକ (ଚୋରି କରି ମଧ୍ୟ) ତାଙ୍କ ତତ୍ତ୍ୱାବଧାନରେ ମାତୃ ବୃକ୍ଷର ଡାଳରେ ସ୍ଥାପନ କରି ୨୭ ପ୍ରକାରର ଗୋଲାପ ମୁଁ ଫୁଟେଇ ପାରିଥିଲି । ସେ ଜଣେ ସୌନ୍ଦର୍ଯ୍ୟ ପ୍ରୀୟ, ଗୋଲାପ ଲୋଭୀ ଏବଂ ପ୍ରେମ ପିପାସୀ କବିଗୁରୁ । ସେ ମୋ ଭିତରେ ଭରି ଦେଇଥିବା ପୁଷ୍ପ ପ୍ରଣୟ ଏ ଯାଏ ଅତୁଟ ରହିଛି ଯଦିଓ କଇଁଚି କେବେଠାରୁ ହଜି ଗଲାଣି । ତାଙ୍କ ସାରସ୍ୱତ କଇଁଚି ଏତେ ଖାଉଆ ଥିଲା ଯେ ଗୋଟେ ଗୋଟେ କବିତାକୁ ପୁରା ଏବଂ ଅନେକ କବିତାରୁ ଅଧାଅଧି ଖାଇଲା ପରେ ବି ସନ୍ତୁଷ୍ଟ ହେଉ ନଥିଲା । କଟା କବିତାରେ କିପରି ତାଳି ପଡ଼ିବ ତାହା ସେ ବତାଇ ଦେଉଥିଲେ ସିନା ନିଜେ କେବେ ତାଳିଟେ ପକାଉ ନଥିଲେ । ତାଙ୍କର ପରାମର୍ଶ ଥିଲା ସ୍ରଷ୍ଟା ନିଜେ ତ୍ରିଦେବ । ସୃଷ୍ଟି, ପାଳନ ଓ ବିଲୋପ ସେ ନିଜେ କରିବେ – ଆଉ କେହି ନୁହେଁ ।

କୃଷ୍ଣସାର୍‌ଙ୍କ କଇଁଚି ଥିଲା ଯେତିକି ମୁନିଆଁ ସେତିକି ଧାରୁଆ । ସେ ଏହାର ଚତୁର୍ବିଧ ବ୍ୟବହାରରେ ଥିଲେ ବେଶ୍ ଧୁରୀଣ । ସେହି କଇଁଚି ସହିତ ମୋର ପ୍ରଥମ ସାକ୍ଷାତ ଘଟିଥିଲା ଯେଉଁଦିନ ସେ ଆମର ସାହିତ୍ୟ କ୍ଲାସ ନେଉଥିଲେ ଭଦ୍ରକ କଲେଜରେ । 'ରସାତ୍ମକ ବାକ୍ୟଂ କାବ୍ୟମ୍'ର ବ୍ୟାଖ୍ୟା କରିବାକୁ ଯାଇ ସେ ପ୍ରଥମେ ଲେଖିଲେ ଦୁଇ ଧାଡ଼ିଆ କବିତାର ଏକ ପଦ । ତାହାଥିଲା ଏହିପରି "ଓଡ଼ିଶା ଲକ୍ଷ୍ମୀଙ୍କ ଗାଧୁଆ ପୋଖରୀ / ହଂସେ ପୂର୍ଣ୍ଣ ନୀଳ, ଚିଲିକାର ବାରି ।" ତାପରେ ସେ 'ଚିଲିକା' ଶବ୍ଦକୁ ରଖି ଅନ୍ୟ ସବୁ ଶବ୍ଦକୁ କାଟି ସେମାନଙ୍କ ସ୍ଥାନରେ ନୂଆ ଶବ୍ଦମାନ ବସାଇଲେ । ସୁନ୍ଦର ଓ ରସାଳ ରୂପରେ ଯେଉଁ ଧାଡ଼ି ଦୁଇଟି ଜନ୍ମନେଲେ ତାହା ହେଲା "ଉତ୍କଳ କମଳା ବିଳାସ ଦୀର୍ଘିକା / ମରାଳ ମାଳିନୀ ନୀଳାମ୍ବୁ ଚିଲିକା ।" ତା'ପରେ ସେ ବୁଝାଇ ଦେଲେ ଦୁଇଟି ପଦର ଅର୍ଥ ଏକାଥିଲେ ବି, ଅଧିକ ଲଳିତ ଓ ମଧୁର ଲାଗୁଛି ଦ୍ୱିତୀୟଟି । ପ୍ରଥମଟି ସାଧାରଣ ବକ୍ତବ୍ୟ ଏବଂ ଦ୍ୱିତୀୟଟି ରସାତ୍ମକ ଅଭିବ୍ୟକ୍ତି । ତେଣୁ ସର୍ବଦା ମନେରଖିବାକୁ ହେବ – କବିତା ଏକ ପୁଷ୍ପମାଲ୍ୟ ଯେଉଁଥିରେ ସଂଯୋଜିତ ପ୍ରତ୍ୟେକଟି ପୁଷ୍ପ ଅନ୍ୟ ମାନଙ୍କ ସହ ସମକକ୍ଷ ହେବା ଉଚିତ । ନହେଲେ ଗୁରୁ-ଚଣ୍ଡାଳ ରୋଗରେ

ତାହା ଆକ୍ରାନ୍ତ ହୋଇଯିବ । ସଜ ଫୁଲ ପରି ଗୋଟେ ଟହଟ ଚିକ୍କଣ ଦିଶିଲା ବେଳେ ଅନ୍ୟଟିଏ ପୋକମରା ମୁରୁକୁଟିଆ ଦିଶିବ । ସେତେବେଳେ ଶବ୍ଦର ସାବଲିଳତା ଭାଙ୍ଗିଯିବା ସହିତ ଲେଖାଟିର ସାମଗ୍ରୀକ ସୌଷ୍ଠବ ନଷ୍ଟ ହୋଇଯିବ । ଶବ୍ଦ ନିର୍ମିତ ବାକ୍ୟର ଧାଡ଼ିଟି କବିତା ହେବା ଦୂରେ ଥାଉ ଗଦ୍ୟର ଅଂଶ ବିଶେଷ ହୋଇପାରିବ ନାହିଁ । ରଚନାରୁ ଏହି ଅଳିଆ ଓଲେଇବା ପାଇଁ ଦରକାର ଏକ ସଂଶୋଧନଧର୍ମୀ ସମାର୍ଜ୍ଜନୀ ଅର୍ଥାତ୍ କଚ୍ଚା ଶୋଧନ କତୁରୀ । ପ୍ରତ୍ୟେକ ସ୍ରଷ୍ଟାଙ୍କ ପାଖରେ ଏହ କତୁରୀ ରହିବାର ଆବଶ୍ୟକତା ରହିଛି ନିଜ ସୃଷ୍ଟିକୁ ପରିଚ୍ଛନ ଓ ପ୍ରମାଦମୁକ୍ତ କରିବା ପାଇଁ ।

କୃଷ୍ଣସାର୍‌ଙ୍କ ଦ୍ୱିତୀୟ କଇଁଚିକୁ ଦେଖିଲି ସେ ଯେତେବେଳେ ମୁଁ ଓ ଆଶୁତୋଷ (ପରିଡ଼ା) ଲେଖାଥିବା ପ୍ରଥମ କବିତା ପୁସ୍ତକ "ଯୁକ୍ତ ଯାତନା" (୧୯୭୧)ର 'ଜାତକର୍ମ' ସମ୍ପାଦନ କରୁଥିଲେ । ଶବ୍ଦଗତ ଗୁରୁଚଣ୍ଡାଳ ଦୋଷ ନ ଥିବାରୁ ସେ ଆମ ଦୁଇ ଶିଷ୍ୟଙ୍କୁ ବାହାବା କହିଲେ । ଆମେ ଖୁସି ହେଲୁ ଯେ ସାର୍‌ଙ୍କ କଇଁଚି ଆଉ କିଛି କାଟି ପାରିବ ନାହିଁ । ମାତ୍ର ସହସା ଆମର ମୋହ ଭଂଗ ହେଲା ଯେତେବେଳ ସେ ଭାବଗତ ଅସଂଗତି ଦର୍ଶାଇ କିଛି ପଦକୁ ଆଖିବୁଜି କାଟିଦେଲେ ଏବଂ ଆମକୁ କହିଲେ, 'ମନ ଦୁଃଖ କଲ କି ?" ସେଇମିତି ମୋର ୭୨ ଧାଡ଼ିଆ କବିତାରୁ ମାତ୍ର ୬ଧାଡ଼ି ରଖି ଅବଶିଷ୍ଟକୁ କାଟି ଅଳିଆଗଦାରେ ପକାଇ ଦେଇ ସାରିଲା ପରେ ସେ ମୋତେ କହିଥିଲେ "କବିତା କପେ ଚାହା ପରି - ଉଷ୍ଣତା ଓ ମିଷ୍ଟତାର ଏକ ଦିବ୍ୟ ପାନୀୟ - ତାକୁ ଅଧିକ ଫୁଟାଇଲେ କଷା ଲାଗିବ - ବେଶି ଚିନି ଢାଳିଲେ ସିରା ହୋଇଯିବ - ଚାହା ଲବ୍‌ରେଜ୍ ହୋ - ଲବ୍ ଶୋଷ ହୋ - ଲବ୍‌ଗିର ହୋ (କପ୍ ଉଛୁଳା ଉଷ୍ଣ ଏବଂ ମିଷ୍ଟ ପାନୀୟ) । ତେଣୁ ଭାବ ଛେଉଁଣ୍ଡ ଭଲ ଶବ୍ଦଧାରୀ ଲେଖା କବିତା ହୋଇ ପାରିବ ନାହିଁ । ଯେତେବେଳେ ମୁଖ୍ୟ ଭାବକୁ ଅନେକ କ୍ଷୁଦ୍ର ଭାବ ମାଡ଼ିବସି ତାର ଗତିରୋଧ କରିବ ସେତେବେଳେ କଇଁଚି ଚଳାଇ ସେମାନଙ୍କୁ ହଟାଇବାକୁ ପଡ଼ିବ । ନ ହେଲେ କବିତାର ଆତ୍ମାକୁ (ସନ୍ଦେଶ / ଲକ୍ଷ୍ୟ / ଶେଷକଥା) ଛୁଇଁବା ଲାଗି ବ୍ୟବହାର କରୁଥିବା ଭାବ-ସରଣୀଟି ଏତେ ବଣୁଆ, ସଂକୀର୍ଣ୍ଣ ଅଥବା ବହୁଧାରେ ବିଭକ୍ତ ହୋଇଯିବ ଯେ ସେଠାରେ ପହଞ୍ଚିବା ଦୁରୂହ ହୋଇଯିବ । ଏହିପରି ଭାବ ସଂକଟର ବିମୋଚନ ନିମିତ୍ତ କତୁରୀ ରଖିବା ପାଇଁ ସେ ମଧ୍ୟ ପରାମର୍ଶ ଦେଇଥିଲେ ।

କୃଷ୍ଣସାର୍‌ଙ୍କ ତୃତୀୟ କଇଁଚି ଦେଖିଲି ସେହିଦିନ ଯେଉଁଦିନ "ଓଡ଼ିଆ ଯୁବ ଲେଖକ ସମ୍ମେଳନ"ର ବାର୍ଷିକ ଉତ୍ସବ ଅନୁଷ୍ଠିତ ହେଉଥାଏ କେନ୍ଦୁଝର ଠାରେ (୧୯୭୪) । ସେହି ଉତ୍ସବରେ ସେ 'ସମାଲୋଚକର ଭୂମିକା' ସମ୍ପର୍କରେ ଦେଉଥାନ୍ତି ସାରଗର୍ଭକ ଭାଷଣ । ମୋର ହୃଦବୋଧ ହୋଇଥିଲା ଯେ "ସମାଲୋଚନା' ହିଁ ପ୍ରକୃତ ସାହିତ୍ୟ ବ୍ୟବଚ୍ଛେଦର ସମର୍ଥ କତୁରୀ । ଜଣେ ଡାକ୍ତର କତୁରୀରେ ତନ୍ତୁ ଚିରି ପ୍ରକୃତ ରୋଗର

ଠିକଣା ଜାଣିଲା ପରି ଏହି କତୁରୀ ସାହାଯ୍ୟରେ  କାବ୍ୟ, କବିତା, ଗଳ୍ପ ନିବନ୍ଧର ନାଭି କେନ୍ଦ୍ରରେ ପହଞ୍ଚି ହେବ । ବାହ୍ୟ ଲକ୍ଷଣରେ ରୋଗର ପରିଚୟ ଯଥେଷ୍ଟ ନ ଥିବାରୁ ଡାକ୍ତରଙ୍କୁ ନାନାବିଧ ବିଶ୍ଳେଷଣ ଓ ପରୀକ୍ଷା ନିରୀକ୍ଷା କରିବାକୁ ପଡ଼ିଥାଏ । ସେହିପରି ବାଗାଡ଼ମ୍ବର, ପ୍ରଚାର ଓ ପୁରସ୍କାରରେ ପୋତି ହୋଇ ପଡ଼ିଥିବା ସାରସ୍ୱତ ସୃଷ୍ଟିର ଅସଲ ସ୍ୱରୂପ ସମୀକ୍ଷା ଦ୍ୱାରା ହିଁ ଉଦ୍‌ଘାଟିତ ହୁଏ । ତେଣୁ ଏହି ସଂଧାନୀ ସମାଲୋଚକ ବହୁପାଠୀ, ପ୍ରାଜ୍ଞ, ପ୍ରବୁଦ୍ଧ ଏବଂ ନିରପେକ୍ଷ ହେବା ଉଚିତ ।

ସାର୍ ଏହି କଇଁଚି ଧରି ବହୁ ସାରସ୍ୱତ ସାଧକଙ୍କର ସୁନ୍ଦର ଚେହେରାକୁ ଆମ ସାମନାକୁ ଆଣିଛନ୍ତି । 'ଏଷଣା' ପ୍ରକାଶ ବେଳେ ସେ ତ ତାଙ୍କର ତିନି ତିନିଟା କଇଁଚିର ଯଥାର୍ଥ ପ୍ରୟୋଗ କରନ୍ତି । ସେଥିପାଇଁ ତ ଏହି ପତ୍ରିକା ହୋଇ ପାରିଛି ଅନନ୍ୟ ଓ କାଳଜୟୀ ଏବଂ ତାଙ୍କର ଶିଷ୍ୟଗଣ ହୋଇଚନ୍ତି ପ୍ରାଜ୍ଞ ଓ ପରିଚ୍ଛନ୍ନ ।

ସାର୍‌ଙ୍କ ମତରେ ସମୀକ୍ଷକ ହେଉଛନ୍ତି ନୀତି ଓ ନିଷ୍ଠାରେ ବନ୍ଧା ବିଦଗ୍ଧ ବିଶ୍ଳେଷକ । ସାରସ୍ୱତ କୃତିରେ ନିହିତ ସାଧନାର ଯମ, ନିୟମର ଅକୁତୋଭୟ ଆବିଷ୍କର୍ତ୍ତା । ଯାହା ଅଶୁଦ୍ଧ, କୃତ୍ରିମ ଓ ବିଭ୍ରାନ୍ତିମୂଳକ ତା'ର ବିନାଶ ପାଇଁ ସଂସ୍କାରଧର୍ମୀ କତୁରୀ ଧରିଥିବାରୁ ସେ ହେଉଛନ୍ତି 'ଯମ' । ନିରପେକ୍ଷତାର ନିକିତିରେ ତତ୍ତ୍ୱ ଓ ତଥ୍ୟକୁ ତଉଲିବାର ଜ୍ଞାନ ହେତୁ ସମୀକ୍ଷକ ହେଉଛନ୍ତି 'ଧର୍ମରାଜ' । ଯାହା ସଂଶୟାଚ୍ଛନ୍ନ ରୁଚିହୀନ ରଚନା, ତାର ଅଗ୍ରଗତିକୁ ରୋକୁଥିବା ଯୋଗୁ ସେ ହେଉଛନ୍ତି 'କୃତାନ୍ତ'। ବୀଭତ୍ସତା ଓ ବିଶୃଙ୍ଖଳା ଉପରେ ଶାଳୀନତା ସହନଶୀଳତାରେ ବିଜୟ ଲାଭ ଲାଗି ଲେଖକ ଓ ପାଠକଙ୍କ ଉପରେ ସମନ ଜାରି କରୁଥିବାରୁ ସେ ହେଉଛନ୍ତି 'ଶମନ' । ଦ୍ୱିତୀୟ ଈଶ୍ୱରଙ୍କ ଅନବଦ୍ୟ ସୃଷ୍ଟିକୁ ଅମର କରିବା ଲାଗି କାଳ ସହିତ କଳହ କରୁଥିବା ସ୍ୱର୍ଜିତ ସତ୍ତାଟି 'ମହାକାଳ' ସଦୃଶ ସେହି ସମୀକ୍ଷକ ।

ସାର୍ ଯେଉଁ ଚତୁର୍ଥ କତୁରୀର ସର୍ବଦା ଉପଯୋଗ କରୁଥିଲେ ତାହା ହେଉଛି ଶ୍ରଦ୍ଧାଶୀଳ ପାଠକୀୟ କତୁରୀ । ସବୁ ପାଠକଙ୍କ ପାଖରେ ତାହା ମହଜୁଦ ଅଛି । ସଚେତନ ପାଠକ ଯେତେବେଳେ କୌଣସି ସାହିତ୍ୟ ପଠନରେ ମନୋନିବେଶ କରେ ସେତେବେଳେ ତାହା ଯଦି ପ୍ରଭାବ ବିସ୍ତାର କରିନପାରେ ଅଥବା ଆନନ୍ଦ ଦେବାକୁ ଅଯୋଗ୍ୟ ହୁଏ ତାକୁ ପଢ଼ି ସେ ସମୟ ଅପଚୟ କରେନାହିଁ । ଯୋଗ୍ୟ ଅଯୋଗ୍ୟ ନିର୍ବାଚନ ନିମିତ୍ତ ପାଠକ ସମ୍ପୂର୍ଣ୍ଣ ସ୍ୱାଧୀନ ।

ଆଜି ଆମ ଗହଣରେ ସାର୍ ନାହାନ୍ତି, ମାତ୍ର ତାଙ୍କ କତୁରୀର ବିନାଶ ନାହିଁ ସେ ରହିଥିବ ଆମକୁ ପ୍ରେରଣା ଦେବାପାଇଁ । ❖

ବିଜ୍ଞାନ ବିହାର, ଜଗନ୍ନାଥପୁର, ଭଦ୍ରକ
ମୋ. ୯୪୩୭୨୧୪୦୨୧

# ପ୍ରିୟ କୃଷ୍ଣସାର୍

ଡ. ବାସୁଦେବ ବାରିକ୍

ଓଡ଼ିଆ ଭାଷା ଓ ସାହିତ୍ୟର ମନ୍ତ୍ରଦ୍ରଷ୍ଟା ଡ଼. କୃଷ୍ଣଚରଣ ବେହେରାଙ୍କୁ 'ପ୍ରିୟ କୃଷ୍ଣ ସାର୍' ବୋଲି ସମ୍ବୋଧନ କରିବାରେ ମୁଁ କେବେ ଦ୍ୱିଧା ବୋଧ କରେ ନାହିଁ। କେବଳ ମୋ'ର ନୁହେଁ, ପରନ୍ତୁ ସମସ୍ତଙ୍କର ସେ ପ୍ରିୟ ଥିଲେ। ତାଙ୍କ ପ୍ରିୟତାକୁ ଆକଳନ କରିବାକୁ ମୁଁ ସାହସ କରି ପାରିନାହିଁ। ବେଳେ ବେଳେ ଅନୁଭବ ଟିଏ ଉଦ୍ରେକ ହୁଏ ଯେ ସଚ୍ଚାମଣିଷ ମାନେ ସବୁରି ଉର୍ଦ୍ଧ୍ୱରେ ରହନ୍ତି। ପ୍ରଶଂସା ଓ ନିନ୍ଦା ସେମାନଙ୍କୁ ସ୍ପର୍ଶ କରେ ନାହିଁ ବା ସବୁ ଜାଣି ନିରବରେ ଆଗକୁ ମାଡ଼ିଯିବାରେ ସେମାନେ ସଂକଳ୍ପ କରିଥାନ୍ତି। କୃଷ୍ଣସାର୍ ସେଇଭଳି ଜଣେ ହୃଦୟବାନ ବ୍ୟକ୍ତି ଯିଏ ପର ଆପଣା ଭେଦ ବିଚାର ନକରି ସମସ୍ତଙ୍କୁ ଭଲ ପାଆନ୍ତି। ସେଥିପାଇଁ ଶୈଳଜ ରବିଙ୍କ ଭାଷାରେ ସାର୍ ହେଲେ 'ଈଶ୍ୱରଙ୍କ ପରି ସଚ୍ଚା ଭଦ୍ରଲୋକ।'

ସାର୍‌ଙ୍କ ସହ ଦୀର୍ଘ ପଚାଶ ବର୍ଷର ଜୀବନ ଯୋଡ଼ି ହୋଇ ରହିଛି। ସୃଜନ ଫର୍ଦ୍ଦରେ ଲମ୍ବିଛି ଅନେକ ଗାଥା ଓ ଅନେକ ବ୍ୟଥା। ସେ ସବୁବେଳେ ଚେତେଇ ଦିଅନ୍ତି, ଉଖାରନ୍ତି ଓ ଆଗେଇ ଯିବାକୁ ନିର୍ଦ୍ଦେଶ ଦିଅନ୍ତି। ପୁଣି ମଝିରେ ମଝିରେ ସ୍ମରଣ କରେଇ ଦିଅନ୍ତି କାମର ଅଗ୍ରଗତି ସଂପର୍କରେ। ଗୁରୁ ଓ ବୟସ୍କ ହେଲେ ମଧ ଥଟ୍ଟା ମଜା, ବ୍ୟଙ୍ଗ, ଟିପ୍‌ପଣୀ ଆଦି ମାଧମରେ ସେ ଯେପରି ମଣିଷ ତିଆରି କରନ୍ତି, ତାହା ବାସ୍ତବରେ ବିରଳ। ସୃଜନ ସଭାରେ ଜଣେ ଧୂରୀଣ ବ୍ୟକ୍ତିତ୍ୱ। ସେଥିପାଇଁ ଏତେ ଅପାଶୋରା।

ଦିନେ ରାତି ଏଗାରଟା ପରେ ଫୋନ୍‌ଟିଏ ପାଇଲି, 'ମୁଁ ଡ. ବେହେରା କଟକରୁ କହୁଛି।' ମୁଁ ସେତେବେଳେ ପଢ଼ାଘରେ ବସିଥିଲି। ସଂପୂର୍ଣ୍ଣ ଅନ୍ୟମନସ୍କ। କହିଲି, କେଉଁ ବେହେରା, ମୁଁ ଆପଣଙ୍କୁ ତ ଜାଣେ ନାହିଁ।' ସେ କହିଲେ, ଟିକିଏ ପକେଇ ଦେଇଛ କି ?' କହିଲି, ମୁଁ କେବେ ପକାଏ ନାହିଁ, ଏମିତି କ'ଣ କହୁଛନ୍ତି।' ସେ କହିଲେ, ହଁ ଏମିତି ହୁଏ। ଲେଖୁଥିବା ଲୋକ ଟିକିଏ ନ ପକେଇଲେ ତାଙ୍କ ମିଂଜାସ୍ ଠିକ୍ ରହେ ନାହିଁ।' ମୁଁ ରାଗରେ ସୁଇଚ୍ ଅଫ୍ କରି ଦେଲି। ରାତିରେ ନିଦ ହେଲା

ନାହିଁ । ଭାବିଲି, ଲୋକଗୁଡ଼ାକ ଏଭଳି କାହିଁକି ହୁଅନ୍ତି, ଚିହ୍ନା ନାହିଁ, ଜଣା ନାହିଁ, ଅଥଚ ତୁଣ୍ଡରେ ଏକଥା ଧରନ୍ତି !

ତହିଁ ପରଦିନ ବଂଧୁ କୈଳାଶ ପଣ୍ଡା ଘରକୁ ଆସି 'ଆଦିକଳ୍ପ' ପୁସ୍ତକଟି ଧରେଇ କହିଲେ । କୃଷ୍ଣସାର୍ ପଠେଇଛନ୍ତି । ବହିର ସମୀକ୍ଷାଟିଏ କରି ସାତଦିନ ଭିତରେ ଦେବେ ।' ମୁଁ ଆଶ୍ଚର୍ଯ୍ୟ ପ୍ରକଟ କରି କହିଲି, 'ନା, ନା, ମୁଁ ପାରିବି ନାହିଁ । ଆପଣ ସାର୍‌ଙ୍କୁ ଜଣେଇ ଦେବେ ।' କୈଳାଶ ବାବୁ କହିଲେ, ଆପଣ ଫୋନ୍ କରି ଜଣାନ୍ତୁ ।' ମୁଁ କିଛି ନକହି ଗତକାଲି ରାତି ଘଟଣା କହିଲି । ସେ କହିଲେ, 'ସାର୍ ବୋଧହୁଏ ଆପଣଙ୍କୁ ଫୋନ୍ କରିଥିବେ ।' ମୁଁ ବିବ୍ରତ ହେଇ ପଡ଼ିଲି । ସାର ଯଦି ଫୋନ୍ କରିଥିବେ କ'ଣ ହେବ ପରିସ୍ଥିତି ? ମୋ' ଅଦ୍‌ଭୂତ ଆଚରଣ ପାଇଁ ସେ କ'ଣ କ୍ଷମା କରିବେ ?' ଶଙ୍କିତ ହେଇ ସାର୍‌ଙ୍କୁ ଫୋନ୍ କଲି । ସାର୍ ମୋତେ ଫୋନ୍ କରିଥିଲେ ବୋଲି ପ୍ରକାଶ କଲେ । ମୁଁ ବାରମ୍ବାର କ୍ଷମା ପ୍ରାର୍ଥନା କଲି । ସେ ବିରକ୍ତ ନ ହେଇ କହିଲେ, 'ଛାଡ଼ ସେ କଥା । କୈଳାଶ ହାତରେ ବହି ପଠାଇଛି । ସମୀକ୍ଷାଟିଏ କରି ଯଥା ଶୀଘ୍ର ପଠାଇବ । ମୁଁ 'ଆଜ୍ଞା ହଁ' କହିଲି । କାଳ ବିଳମ୍ବ ନକରି ମୁଁ ପୁସ୍ତକର ସମୀକ୍ଷାଟିଏ କରି ପଠାଇଲି । କିଛିଦିନ ପରେ ସାର୍ ଫୋନ୍ କରି କହିଲେ, 'ଭଲ ଲେଖିଛ ।' ପୁସ୍ତକଟି ପ୍ରକାଶିତ ହେବା ପରେ ଦେଖିଲି ମୋ 'ସମୀକ୍ଷାଟି ଅବିକଳ ଭାବେ ସ୍ଥାନୀତ ହୋଇଛି ଓ କେତେକ ବିରୋଧୀ ଟିପ୍‌ପଣୀକୁ ଆଦୌ ପରିବର୍ତ୍ତନ କରାଯାଇ ନାହିଁ । କେଡ଼େ ଉଦାର, ମହାନୁଭବ । ନିଜ ସୃଷ୍ଟି ସମ୍ବନ୍ଧରେ ସପକ୍ଷ ଓ ବିପକ୍ଷ ମତ ନିମିତ୍ତ ପ୍ରତିକ୍ରିୟା -ବିହୀନ ମହାନ ବ୍ୟକ୍ତିତ୍ୱ ଓ ମହାନୁଷ୍ଠାନଟିଏ । କୃତଜ୍ଞତାର ବୋଝରେ ମୁଣ୍ଡ ନଇଁ ଯାଏ କୃଷ୍ଣ ସାର୍‌ଙ୍କ ବିଶାଳ ମମତାନୁବନ୍ଧତାରେ । ସେ ହିଁ ସହି ପାରନ୍ତି ସବୁକିଛିକୁ, ଅନ୍ୟକୁ ଆପଣାପଣରେ କୋଳେଇ ନିଅନ୍ତି ବିନା ଦ୍ୱିଧାରେ । ସେ ପ୍ରିୟ, ସେ ସାର୍ ଓ ସେ ସବୁକାଳରେ ଭଲ ବନ୍ଧୁ । ତାଙ୍କ ବିକଳ୍ପ କଳ୍ପନାତୀତ ।

କୃଷ୍ଣସାର୍‌ଙ୍କ ସହ ସଂପର୍କ ସ୍ଥାପିତ ହୋଇଥିଲା ୧୯୬୨ ମସିହାର ଶେଷାର୍ଦ୍ଧରେ । ଥରେ କଲେଜ ଯାଉଥିବା ବେଳେ ସାର୍‌ଙ୍କୁ ପ୍ରଣାମ କଲି ଓ ସାର୍ କହିଲେ, 'ଘରକୁ ଆସିବ' । ସେତେବେଳକୁ ମୋର କେତୋଟି ଲେଖା 'ପଲ୍ଲୀ ଭାରତୀ' ଓ 'ଅର୍ଘ୍ୟ' ରେ ପ୍ରକାଶିତ ହୋଇସାରିଥାଏ । ଘରେ ପହଞ୍ଚିଲି ଅପରାହ୍ନ ପାଞ୍ଚଟାରେ । ସାର୍ ସେତେବେଳେ ଡ୍ରଇଂ ରୁମ୍‌ରେ ନିଜ ଲିଖିତ ଗଳ୍ପଟିକୁ ମାଡ଼ାମ୍‌ଙ୍କୁ ପଢ଼ି ଶୁଣାଉଥିଲେ । ମୋତେ କହିଲେ, 'ବସି ମୋ' ଗପ ଶୁଣ ।' ପଢ଼ି ସାରିବା ପରେ ମୋତେ କହିଲେ । 'କେମିତି ଲାଗିଲା, ତମର ପସନ୍ଦ ହେଲା, କିଛି ତ୍ରୁଟି ଦେଖିଲ କି ?' ମୋତେ ଲାଜ ଲାଗିଲା, କିଛି ନକହି ନିରବ ରହିଲି । ସାର୍‌ଙ୍କର 'ଲେଖାରେ ଭୁଲ୍ ଠିକ୍ ଆକଳନ କରିବା ମୋ' ପକ୍ଷେ ସମ୍ଭବ

ନଥିଲା । ଏହାପରେ ଅନେକଥର ସାରଙ୍କ ଘରକୁ ଯାଇଛି ଓ ଦେଖିଛି ସାର୍ ସବୁବେଳେ ଲେଖାଲେଖିରେ ବ୍ୟସ୍ତ ରହିଥାନ୍ତି । ମୁଁ ଜଣେ ସାମାନ୍ୟ ପିଲା, ଲେଖାରେ ନୂଆ କରି ହାତ ଦେଇଥିଲି ଯାହା ! ମୋ'ଭଳି ଜଣେ ଅନଭିଜ୍ଞ ପିଲାପ୍ରତି ତାଙ୍କ ସ୍ନେହ, ଆତିଥ୍ୟ ଓ ଆନ୍ତରିକତା କଥା ଭାବିଲେ ମଥାନତ ହୁଏ । ଭାବେ, ସାର୍‌ଙ୍କ ମମତାନୁବନ୍ଧ ବଳୟରେ ପରିପୁଷ୍ଟ ହେବାରେ ମୋ'ର ସାର୍ଥକତା ଭରି ରହିଛି ।

ସୋନପୁର ମହାବିଦ୍ୟାଳୟରେ ଅଧ୍ୟାପକ ଥିବା ବେଳେ ସାର୍ ୪.୧୧.୭୭ରେ କଟକକୁ ଚିଠି ଲେଖିଥିଲେ । ସେ ବର୍ଷ ପୂଜାସଂଖ୍ୟା 'ଝଙ୍କାର' ରେ ତାଙ୍କର ଏକ ଲେଖା ପାଇଁ ତାଙ୍କୁ ବଧେଇ ଜଣେଇ ଚିଠିଟିଏ ଦେଇଥିଲି । ସେ ଲେଖିଥିଲେ, 'ଶ୍ରଦ୍ଧେୟ ଶ୍ରୀ ବାରିକ, ତମର ୨୬/୧୦ ତାରିଖର ପତ୍ର । ପୂଜା ସଂଖ୍ୟା 'ଝଙ୍କାର'ରୁ ମୋର ଲେଖାଟି ତମର ପସନ୍ଦ ହୋଇଛି ଜାଣି ଖୁସି ହେଲି । ଏହିପରି ବିଭିନ୍ନ ସାମାଜିକ ଓ ଜାତୀୟ ବ୍ୟାପାର ଘେନି ମଝିରେ ମଝିରେ ପ୍ରବନ୍ଧ / ରମ୍ୟରଚନା ଲେଖୁଛି । ତମେ 'ଅଧ୍ୟାପକର ବେଦନା' ଗ୍ରନ୍ଥଟି ପଢ଼ିଛ କି ନା, ଜାଣେନାହିଁ । ବହିଟି ପାଇଲେ ପଢ଼ିବ ଏବଂ ତମର ଅଭିମତ ଜଣାଇବ । ତମ ସହ ଅନେକ ଦିନ ହେଲା ସାକ୍ଷାତ ହୋଇନାହିଁ । ଭାବୁଛି ତମ ସେଠିକି ଥରେ ଯିବି । ଠାକୁର ଦେଖା, କଦଳୀ ବିକା ଏକା ସାଙ୍ଗରେ ହେବ । ମୋର ସେଠି ରାଜ-ଉଆସରେ କାର୍ଯ୍ୟ ଅଛି । ଥରେ ଶ୍ରୀନିବାସ ଉଦ୍‌ଗାତାଙ୍କ ସହିତ ଯାଇ ଅଧାବାଟରୁ ଫେରି ଆସିଲି । ରାଜା ବୀରମିତ୍ରୋଦୟ ସିଂହଦେଓ ସାହିତ୍ୟିକ ଥିଲେ ତମେ ଜାଣ । ତାଙ୍କ ବିଷୟରେ ଟିକିଏ ଖୋଜାଲୋଡ଼ା କରୁଛି । ଏ ଦିଗରେ ତମେ ମୋତେ ସାହାଯ୍ୟ କରିପାରିବ କି ? ତାଙ୍କର ବାଇଓ-ଡାଟା ଏବଂ କି କି ବହି ଲେଖି ପ୍ରକାଶ କରିଥିଲେ, ମୋତେ ଜଣାଇ ପାରିଲେ, ଉପକୃତ ହୁଅନ୍ତି । ତାଙ୍କ ଉଆସରେ ଗୋଟିଏ ଭଲ ଲାଇବ୍ରେରୀ ଥିଲା । ସେ ଲାଇବ୍ରେରୀର ବର୍ତ୍ତମାନ ଅବସ୍ଥା କ'ଣ ? ବହିପତ୍ର ସବୁ ଅଛି, ନା କିଏ କୁଆଡ଼େ ଘେନି ପଳାଇ ଗଲେଣି ? ସେ ବିଷୟ ଅନୁସନ୍ଧାନ କରି ମୋତେ ଲେଖିବ । ଆଉ ଚିଠିରେ ତମ ନିଜ ବିଷୟ ଲେଖିଲ ନାହିଁ ଯେ ! କିଛି ଗୋଟାଏ ସଲିଡ୍ କାର୍ଯ୍ୟ ଏବେ ହାତକୁ ନିଅ । ତମର ଭବିଷ୍ୟତ ଦୃଷ୍ଟିରୁ ଗବେଷଣା କାର୍ଯ୍ୟ ଲୋଡ଼ା ପଡୁଛି । ଆଶାକରେ କୁଶଳରେ ଥିବ । ତମ ପତ୍ର ଅପେକ୍ଷାରେ ରହିଲି ।

॥ ଇତି ॥

ଶୁଭାନୁଧାୟୀ

କୃଷ୍ଣ ଚରଣ ବେହେରା

ସାରଙ୍କ ସହ ବହୁ ପତ୍ରାଳାପ ହୋଇଛି । ପରବର୍ତ୍ତୀ ଚିଠିଗୁଡ଼ିକରେ 'ପ୍ରିୟ / ପ୍ରିୟତମ ବାସୁଦେବ' ଓ ଶେଷରେ ସ୍ନେହାନୁବନ୍ଧ ବା ମମତାନୁବନ୍ଧ ଶବ୍ଦ ପ୍ରୟୋଗ କରିଛନ୍ତି ।

ପ୍ରାୟ ସବୁ ଚିଠିରେ ପ୍ରଶଂସା ବା ନିନ୍ଦାକୁ ଗୁରୁତ୍ୱ ନଦେଇ ଲେଖାଲେଖିରେ ଆଗେଇବାକୁ ପରାମର୍ଶ ଥାଏ । କୃଷ୍ଣସାର୍‌ଙ୍କର ବଡ଼ଗୁଣ ହେଲା ସେ ଲେଖକର ପ୍ରତିଭା ଓ ସାଧନାକୁ ଗୁରୁତ୍ୱ ଦିଅନ୍ତି ଏବଂ ସେହି ଦୃଷ୍ଟିରୁ ସର୍ଜନା କ୍ଷେତ୍ରରେ ବୟସକୁ ଗୌଣ ମନେ କରନ୍ତି । ସେ ଥିଲେ ଅନନ୍ୟ ଅସାଧାରଣ । ପ୍ରତ୍ୟେକଙ୍କ ମନରେ ଆଶା ସଂଚାର କରିଥିବା ଜଣେ ମନ୍ମୟ ନୀତିନିଷ୍ଠ ସାଧକ ଓ ଗବେଷକ । ସର୍ବୋପରି ସର୍ବୋତ୍ତମ ପ୍ରେରଣା ପ୍ରଦାନରେ ଜଣେ ସଫଳ ପଥପ୍ରଦର୍ଶକ ।

ଥରେ ସାକ୍ଷାତରେ ସାର୍ କହିଲେ, 'ଲେଖା ଲେଖିରେ ତମେ ଧିମେଇ ଯାଉଛ କ'ଣ ପାଇଁ ? ମୋତେ ଦେଖ, ମୁଁ ଏପର୍ଯ୍ୟନ୍ତ କ୍ଳାନ୍ତ ହୋଇନାହିଁ ।' ପୁଣି ସେ କହିଲେ, 'ତମ ଗବେଷଣା ପୂର୍ଣ୍ଣାଙ୍ଗ କେବେ ହେବ ? ଇଂରାଜୀ ଅଧ୍ୟାପକ, ପୁଣି ଏତେ ଅଳସୁଆ ।'

କେବଳ କୃଷ୍ଣ ଚରଣ ବେହେରା ଏକଥା କହି ପାରନ୍ତି, ଉଖାରନ୍ତି ଓ ଆଶିଷ ଢାଳିପାରନ୍ତି ! ତାଙ୍କ ସାମଗ୍ରିକ ଆଚରଣରେ କୌଣସି ସ୍ୱାର୍ଥ ନଥାଏ ଅବା ତାଙ୍କ ପାକଳ ଅନୁଭବରେ ଆଦୌ ଅସହିଷ୍ଣୁତାର ଗନ୍ଧ ନଥାଏ । କାଳଜୟୀ ସ୍ରଷ୍ଟା ସେ, ସୃଷ୍ଟି ସମ୍ଭାବନାରେ ଚଳଚଞ୍ଚଳ ସବୁକାଳ ।

ଗଭୀର ଆନ୍ତରିକତା ଓ ସ୍ନେହ ମମତାରେ ଚିରକାଳ ସମସ୍ତଙ୍କୁ ବାନ୍ଧି ରଖିଥିବା ସେଇ ନମସ୍ୟ ମୋର ପ୍ରିୟ କୃଷ୍ଣସାର୍‌ଙ୍କୁ ସଶ୍ରଦ୍ଧ ପ୍ରଣାମ । ❖

ପ୍ରଗତିମାର୍ଗ, ପ୍ରାଚୀନଗର, ଭଦ୍ରକ
ମୋ - ୯୪୩୭୧୪୭୮୧୮

# କୃଷ୍ଣସାର୍‌ଙ୍କ ବ୍ୟକ୍ତିତ୍ୱର ଅନନ୍ୟତା

ନିମାଇଁ ମହାନ୍ତି

ପ୍ରଫେସର 'ଡ. କୃଷ୍ଣଚରଣ ବେହେରା'– ସାହିତ୍ୟିକ ଗାଳ୍ପିକ 'କୃଷ୍ଣଚରଣ ବେହେରା' ।

ଗଳ୍ପ, କବିତା ବା ରମ୍ୟରଚନା ଛାପିବା ବେଳେ ସେ ପ୍ରଫେସର ବା ଡକ୍ଟର ପଦବିଟି ଯୋଡୁ ନ ଥିଲେ । ଆଜିକାଲି ତ' ସମସ୍ତେ ନିଜର ପଦପଦବିକୁ ନାଆଁ ସହିତ ଯୋଡ଼ିବା ପାଇଁ ବ୍ୟଗ୍ର । ଥରେ ଗୋଟିଏ ଶୋକସଭାରେ ଜଣେ ବିଚାରପତିଙ୍କୁ ଆହ୍ୱାନ କଲାବେଳେ ତାଙ୍କୁ ଡକ୍ଟର ଅମୁକ ସମ୍ବୋଧନ ନକରି ଥିବାରୁ ସେ ସଭା ପରେ କାର୍ଯ୍ୟକର୍ତ୍ତାଙ୍କୁ ଭର୍ତ୍ସନା କରିଥିଲେ । କେବଳ ସେତିକି ନୁହେଁ ଇଞ୍ଜିନିୟର, ଡାକ୍ତରମାନେ ମଧ ଗଳ୍ପ କବିତା ଆଦି ଛାପିବା ବେଳେ 'ଇଂ' ବା 'ଡା' ଉପାଧିକି ଅଳଙ୍କାର ଭାବରେ ବ୍ୟବହାର କରି ନିଜର ପ୍ରାଧାନ୍ୟ ଜାହିର କରୁ ଅଛନ୍ତି । ଜଣେ କୁଶଳୀ ଯନ୍ତ୍ରୀ ବା ଜଣେ ଭଲ ଡାକ୍ତର ଭଲ କବି ବା ଗାଳ୍ପିକ ହୋଇ ନପାରେ । ସୃଷ୍ଟିଶୀଳ ରଚନାରେ କାରିଗରୀ କୌଶଳ ଅପରିହାର୍ଯ୍ୟ କି ପରିପୂରକ ନୁହେଁ । ଏହି ପ୍ରକାର ପଦବି ମଣ୍ଡନ କରିବାର ଘୋର ବିରୋଧୀ ଥିଲେ ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରା । କେବଳ ପ୍ରବନ୍ଧ ବା ନିବନ୍ଧ ବ୍ୟତୀତ ଅନ୍ୟାନ୍ୟ ସୃଷ୍ଟିଶୀଳ ସାହିତ୍ୟ ରଚନାରେ ସେ ନିଜର ନାମ ସହିତ ଉପାଧିର ସାଙ୍ଗିଆକୁ ବ୍ୟବହାର କରୁ ନ ଥିଲେ । ଏହା ତାଙ୍କର ନମ୍ରତା ଓ ନିରହଙ୍କାରପଣର ପରିଚାୟକ ।

ସାର୍‌ଙ୍କ ସହ ମୋର ପରିଚୟ ହେଲା ବାରିପଦାରେ, ଯେତେବେଳେ ସେ 'ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ପ୍ରାଧ୍ୟାପକ ଭାବରେ ଯୋଗଦେଲେ । ମୁଁ ତାଙ୍କ ଛାତ୍ର ନୁହେଁ କାରଣ ଓଡ଼ିଆ ସାହିତ୍ୟ ମୋର ବିଷୟ ପରିଭୁକ୍ତ ନ ଥିଲା । କିନ୍ତୁ ଜଣେ ଛାତ୍ର ଲେଖକ ଓ କବି ଭାବରେ ତାଙ୍କ ସହ ମୋର ବ୍ୟକ୍ତିଗତ ସଂପର୍କ ନିବିଡ଼ ହେବାରେ ଲାଗିଲା । ସାର୍ ୧୯୭୧ ରୁ ୧୯୭୫ ପର୍ଯ୍ୟନ୍ତ ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟରେ ଅଧ୍ୟାପନା କରୁଥିଲେ । ପ୍ରଥମେ ସେ ଆମଘର ପାଖରେ ଦେଉଳସାହିରେ ଏକ ଘର

ଭଡ଼ା ନେଇ ରହିଲେ । ସେହି ଦିନରୁ ମୁଁ ତାଙ୍କ ଘରକୁ ଯିବା ଆସିବା ଆରମ୍ଭ କରି ଦେଇଥିଲି । ପରବର୍ତ୍ତୀ ସମୟରେ ସେ ସରକାରୀ କ୍ୱାଟରକୁ ଉଠିଗଲେ । ଯିବା ଆସିବା ମୋର ସେହିପରି ଅବ୍ୟାହତ ରହିଥିଲା । କୌଣସି ନୂଆ ଲେଖାଟିଏ ଲେଖିଲେ ମୁଁ ସାର୍‌ଙ୍କ ଘରକୁ ଯାଇ ତାଙ୍କୁ ପଢ଼ାଉଥିଲି ଓ ପରାମର୍ଶ ନେଇ ଫେରୁଥିଲି ।

ବାରିପଦା ରହଣି ସମୟରେ ସାର୍ ଜଣେ ଛାତ୍ରବତ୍ସଳ ଗୁରୁ ଭାବରେ ଖ୍ୟାତ ଥିଲେ ଓ ସମସ୍ତେ ତାଙ୍କୁ ସମ୍ମାନ ଓ ଭକ୍ତି କରୁଥିଲେ । ଯେଉଁ ଛାତ୍ରମାନେ ଲେଖାଲେଖି କରୁଥିଲେ ସାର୍ ଥିଲେ ସେମାନଙ୍କ ପାଇଁ ପ୍ରେରଣାର ଉତ୍ସ । ସାହିତ୍ୟିକ ଗଢ଼ିବାରେ ସେ ଥିଲେ ଯେମିତି ବିଶ୍ୱକର୍ମା । କେହିବି କିଛି ଲେଖୁ, ଭଲ ଲେଖୁ କି ଖରାପ ଲେଖୁ, ସାର୍ ସମସ୍ତଙ୍କୁ ପ୍ରୋତ୍ସାହନ ଦେଉଥିଲେ ।

ଓଡ଼ିଆ ଯୁବଲେଖ ସମ୍ମିଳନୀ ସେତେବେଳେ ବାରିପଦାରେ ଅନୁଷ୍ଠିତ ହେଲା । ସାର୍ ଥିଲେ ଓଡ଼ିଆ ଯୁବଲେଖକ ସମ୍ମିଳନୀର ସଭାପତି । ତାଙ୍କରି ପ୍ରଚେଷ୍ଟାରେ ସହଯୋଗ କରିବା ପାଇଁ ଆଗେଇ ଆସିଥିଲେ ପ୍ରଖ୍ୟାତ କବି ସୀତାକାନ୍ତ ମହାପାତ୍ର-ମୟୂରଭଞ୍ଜ ଜିଲ୍ଲାରେ ତତ୍‌କାଳୀନ ଜିଲ୍ଲାପାଳ । ଜିଲ୍ଲାପାଳଙ୍କ ସହଯୋଗରେ ଯୁବଲେଖକ ସମ୍ମିଳନୀଟି ବେଦି ଉପରେ ପାଟଛତା ପରି ଏକ ବର୍ଣ୍ଣାଢ଼୍ୟ ସମାରୋହରେ ସମ୍ପନ୍ନ ହୋଇପାରିଥିଲା, ମୋର ସେତେବେଳେ କିଶୋର ଅବସ୍ଥା । ସଂପୂର୍ଣ୍ଣ ବୁଦ୍ଧିଜ୍ଞାନ ଫିଟିନଥିଲା । କୃଷ୍ଣସାର୍‌ଙ୍କ ପ୍ରୋତ୍ସାହନରେ ମୁଁ ମଧ ଜଣେ ଶ୍ରୋତା ଓ କବି ଭାବରେ ଯୋଗ ଦେଇଥିଲି । ମଞ୍ଚ ଉପରେ କବିତାଟିଏ ପଢ଼ିଥିଲି ଓ ମୋର ଗୋଟିଏ କବିତା 'ଶତାବ୍ଦୀର ଶୋକ' ଯୁବଲେଖକ ମୁଖପତ୍ରରେ ପ୍ରକାଶିତ ହୋଇଥିଲା । ଏସବୁ ଅନୁଭୂତି ମୋତେ ସାହିତ୍ୟିକ ଜୀବନର ମଞ୍ଜି ଗଢ଼ିବାରେ ସହାୟକ ହୋଇଥିଲା । ତା'ପରେ ସାର୍ ମୋତେ ତାଙ୍କ ସହିତ କଲିକତା ଯିବାକୁ ଡାକିଲେ । କାରଣ ଯୁବ ଲେଖକ ସମ୍ମିଳନୀର ଗୋଟିଏ ବିରାଟ ସାଂସ୍କୃତିକ ସମ୍ମିଳନୀ କଲିକତାରେ ହେବାର ଧାର୍ଯ୍ୟ ହୋଇଥିଲା । ମୋର କଲିକତା ଯିବା ଅଭିଜ୍ଞତା ନ ଥିଲା । ସାର୍‌ଙ୍କ୍ ସହ ରେଳରେ ମୁଁ କଲିକତା ଯାଇଥିଲି । ମୋର ମନେପଡ଼ୁଛି ତତ୍‌କାଳୀନ କେନ୍ଦ୍ର ବେତାର ମନ୍ତ୍ରୀ ଓ ପରବର୍ତ୍ତୀ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲେ । ଏହି ସାହିତ୍ୟ ସଭାର ଅନୁଭୂତି ମୋ ଭିତରେ ସାହିତ୍ୟର ନିଶା ବଢ଼ାଇଦେଲା । ମୁଁ ଯୁବଲେଖକ ସମ୍ମିଳନୀର ସଭ୍ୟ ନ ହେଲେ ମଧ୍ୟ ମୋ ପରି ଏକ କୋମଳମତି ଛାତ୍ରକୁ ସାହିତ୍ୟପ୍ରତି ଅନୁପ୍ରାଣିତ କରିବାରେ ସାର୍‌ଙ୍କ ପ୍ରେରଣାକୁ ମୁଁ ଭୁଲିପାରିବି ନାହିଁ ।

ବାରିପଦା ରହଣି କାଳରେ ତାଙ୍କର ସାହିତ୍ୟକର୍ମ ଓ ସଂଗଠନ ବଢ଼ିବାରେ ଲାଗିଲା । ବାରିପଦା ସାହିତ୍ୟ ସଂସଦ ଏକ ପୁରାତନ ଅନୁଷ୍ଠାନ; ବିଶିଷ୍ଟ ସାହିତ୍ୟିକ, ଐତିହାସିକ, ଓ

ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତଃ ପରମାନନ୍ଦ ଆଚାର୍ଯ୍ୟ ଏହାର ପ୍ରତିଷ୍ଠାତା- ସଭାପତି ଥିଲେ । ପରେ ସ୍ୱର୍ଗତଃ ଗୋକୁଳ ଚନ୍ଦ୍ର ଶତପଥୀ ଏହି ଅନୁଷ୍ଠାନର ସଭାପତି ହେଲେ ଓ କୃଷ୍ଣସାର୍ ସାହିତ୍ୟ ସଂସଦର ଉପସଭାପତି ପଦରେ ଅବସ୍ଥାପିତ ହେଲେ ।

କଲେଜ୍‌ରେ ଓଡ଼ିଆ ବିଭାଗର ମୁଖ୍ୟ ତଥା ସାହିତ୍ୟ ସଂସଦର ପ୍ରମୁଖ କର୍ମକର୍ତ୍ତା ହୋଇ କୃଷ୍ଣସାର୍ ବହୁ ଉଚ୍ଚକୋଟୀର ସାହିତ୍ୟିକମାନଙ୍କୁ ବାରିପଦା ମାଟିକୁ ଆମନ୍ତ୍ରଣ କରିଥିଲେ । ମୋର ମନେ ପଡୁଚି କଲେଜ୍ ଗ୍ୟାଲେରୀରେ ପ୍ରାୟତଃ ସାହିତ୍ୟ ସଭା ଅନୁଷ୍ଠିତ ହେଉଥିଲା । କଲେଜ ତର'ରୁ ହେଉ ସାହିତ୍ୟ ସଂସଦ ତରଫରୁ ହେଉ । ଛାତ୍ରଛାତ୍ରୀମାନଙ୍କ ସହିତ ବାରିପଦା ସହରର ବୁଦ୍ଧିଜୀବୀମାନେ ମଧ୍ୟ ସେହି ସଭାରେ ଯୋଗ ଦେଉଥିଲେ । ଏତେ ଭିଡ଼ ହେଉଥିଲେ ଯେ ବସିବା ପାଇଁ ଜାଗା ହେଉ ନଥିଲା । ସେଦିନ ଛାତ୍ର ଓ ସାଧାରଣ ଲୋକଙ୍କ ଭିତରେ ସାହିତ୍ୟପ୍ରୀତି ସହ ଆଜିର ରୁଚି ତୁଳନା କଲେ ଦୁଃଖ ଲାଗେ । ବାରିପଦା ସାହିତ୍ୟ ସଂସଦର ପ୍ରଥମେ ସହସଂପାଦକ ଓ ପରେ ସଂପାଦକରହି ସାର୍‌ଙ୍କ ସହ ବହୁ ସାହିତ୍ୟ ସଭା କରୁଛି, କେବଳ କଲେଜ୍ ପରିସରରେ ନୁହେଁ, ବାରିପଦାର ଗାନ୍ଧି ପାର୍କ, ଜୁବୁଲୀ ଲାଇବ୍ରେରୀ ପ୍ରଭୃତି ସାର୍ବଜନୀନ ପରିବେଶରେ । ମଝିରେ ଥରେ ସାର କହିଲେ- 'ନିମାଇଁ, ଚାଲ ମାର୍କେଟ ଭିତରେ ଗୋଟିଏ ଖୋଲା ଜାଗା ବାଛି, ସଭା କରିବା ।' ମୁଁ କହିଲି- 'ସାର୍, ହାଟ ମଧ୍ୟରେ ବ୍ରହ୍ମଜ୍ଞାନ ।' ବିରୋଧରେ ସାର୍ କହିଲେ ବଜାରକୁ ଆସିଥିବା ଲୋକମାନେ ତ' ଦଣ୍ଡେ ଠିଆହୋଇ ଶୁଣିବେ । ଏହା ଫଳରେ ଓଡ଼ିଆ ସାହିତ୍ୟର ଶ୍ରୋତା ଓ ପାଠକ ସଂଖ୍ୟା ବଢ଼ିଯିବେ । ଅବଶ୍ୟ ଏପରି ପଦକ୍ଷେପ ମୁଁ ନେଇ ନଥିଲି ।

ଥରେ ସମ୍ବାଦପତ୍ରରେ ବିସ୍ତୃତ ଭାବରେ ବିଜ୍ଞାପନ ବାହାରିଲା-ଗୋଟିଏ କ୍ଷୁଦ୍ରଗଳ୍ପ ପ୍ରତିଯୋଗିତା ପାଇଁ-ଯାହାର ନାମ ଥିଲା 'ସୁଲେଖା' ଗଳ୍ପ ପ୍ରତିଯୋଗିତା । ମୁଁ ସେହି ସମୟରେ କ୍ଷୁଦ୍ରଗଳ୍ପଟିଏ ଲେଖିଥିଲି । ଲେଖିସାରି ସାର୍‌ଙ୍କୁ ଦେଖାଇବାକୁ ଗଲି । ସେ ସମୟରେ 'ବେଦୀ ଓ ଅନ୍ୟାନ୍ୟ ଗଳ୍ପ'ର ଲେଖକର ଲେଖକ ଭାବରେ ସାର୍ ସୁପ୍ରସିଦ୍ଧ ହୋଇସାରିଥିଲେ । ମୁଁ ତାଙ୍କୁ ଗପଟି ଦେଖାଇବାରେ ସାର୍ କହିଲେ- 'ଖୁବ୍ ଭଲ ହୋଇଚି ।' ତୁମେ 'ସୁଲେଖା' ଗଳ୍ପ ପ୍ରତିଯୋଗିତାକୁ ପଠାଇଦିଅ । ଏହା କହି ଖବରକାଗଜରେ ବିଜ୍ଞାପନଟି ବାହାର କରି ମୋତେ ଠିକଣା ଲେଖି ନବାକୁ କହିଲେ । ଏହା ମଧ୍ୟ କହିଲେ ଯେ ସେ ନିଜେ ଗଳ୍ପଟିଏ ପ୍ରତିଯୋଗିତାଙ୍କ ପଠାଇ ସାରିଛନ୍ତି । ମୁଁ ଜଣେ ଅଳ୍ପବୟସର ଛାତ୍ର, ପୁଣି ପ୍ରଥମ ଗଳ୍ପ ଲେଖିଚି, ସାର୍‌ଙ୍କ ଭଳି ବିଶିଷ୍ଟ ଗାଳ୍ପିକ ଯେଉଁଠି ପ୍ରତିଯୋଗୀ ଅଛନ୍ତି, ମୋର ଲେଖା ପଠାଇବା ଧୃଷ୍ଟତା ହେବ ମାତ୍ର । ମୋର ଶଙ୍କା ଅନୁମାନ କରି ସାର୍ କହିଲେ- ଚିନ୍ତା କରନା, ମୋତେ ଲାଗୁଚି ତୁମ ଗପଟି

ପୁରସ୍କାର ପାଇଯିବ । ତାଙ୍କ ନିର୍ଦ୍ଦେଶରେ ଭବିଷ୍ୟତ ଫଳ ଲାଭର ଅଭୀପ୍ସା ନ ରଖି ଗପଟି ପଠାଇଦେଲି । ଫଳାଫଳ ସମ୍ବାଦପତ୍ରରେ ଘୋଷିତ ହେଲା । ଦେଖିଲି ସାର୍‌ଙ୍କ ସହ ଛାତ୍ର ମଧ୍ୟ ପୁରସ୍କାର ପାଇଛି । ପୁରସ୍କାର ସ୍ୱରପ ଅର୍ଥ ମଧ୍ୟ ମିଳିଲା । ଲେଖକୀୟ ଜୀବନରେ ସେହି ଅର୍ଥ ଥିଲା ମୋର ପ୍ରଥମ ରୋଜଗାର । ପୁରସ୍କୃତ ଗଳ୍ପଗୁଡ଼ିକ ଧାରାବାହିକ ଭାବରେ ସେ କାଳରେ ଲୋକପ୍ରିୟ ସାହିତ୍ୟ ପତ୍ରିକା 'ସୌରଭ'(ସଂପାଦିକା-ବୀଣା ମହାପାତ୍ର)ରେ ପ୍ରକାଶ ପାଇଥିଲା । କହିବା ବାହୁଲ୍ୟ ସେହି ଗଳ୍ପଟି ମୋର ପ୍ରଥମ ଓ ଶେଷ ଗଳ୍ପ । ତା'ପରେ ଜୀବନରେ ଆଉ ଗଳ୍ପ ଲେଖିନାହିଁ, କବିତା ଓ ଗୀତି କବିତାର ପ୍ରଚଣ୍ଡ ମୋହରେ ପଡ଼ି । ମୋର ଏ କଥା କହିବାର ତାତ୍ପର୍ଯ୍ୟ ହେଲା- ମୋ ପରି ଜଣେ ଅନଭିଜ୍ଞ, କୋମଳମତି ଛାତ୍ର ପ୍ରତି ସାର୍‌ଙ୍କର ଶ୍ରଦ୍ଧାଶୀଳ ଭାବ ତାଙ୍କର ଉଦାରପଣିଆ ଓ ମହାନୁଭବତାର ପରିଚାୟକ ।

କୃଷ୍ଣ ସାର୍ ବାରିପଦାରୁ ବଦଳି ହୋଇଗଲେ ସମ୍ଭବତଃ ରେଭେନ୍‌ସା କଲେଜ୍, କଟକ । ଯୋଗଯୋଗ କ୍ଷୀଣ ହୋଇଗଲେ ମଧ୍ୟ ସଂପର୍କର ଡୋରି ଅବିଚ୍ଛିନ୍ନ ଥିଲା । ମୁଁ କଟକ ଗଲେ ସାର୍‌ଙ୍କ ଓ ଅବସର ପରେ କଲ୍ୟାଣୀନଗର ବାସଗୃହକୁ ମଝିରେ ମଝିରେ ଯାଇ ଦେଖା କରୁଥିଲି ।

କଟକର ପ୍ରଫେସରପଡ଼ା ଠାରେ ସାର୍ ପ୍ରଥମେ ରହୁଥିଲେ । ମୁଁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ସମ୍ବନ୍ଧରେ ତାଙ୍କ ସ୍ୱହସ୍ତ ଲିଖିତ ଚିଠି ଓ ଦସ୍ତାବିଜ୍ ବାରିପଦା ଡିଷ୍ଟ୍ରିକ୍ ରେକର୍ଡ଼ ରୁମରୁ ସଂଗ୍ରହ କରିଥିଲି । ଗୋପବନ୍ଧୁଙ୍କ ସମ୍ବନ୍ଧରେ ଅନ୍ୟାନ୍ୟ ତଥ୍ୟ ସଂଗ୍ରହ କରିବା ପାଇଁ ମୁଁ କଟକ ଯାଉଥିଲି । ସେତେବେଳେ ମୁଁ ବେକାର ସାହିତ୍ୟ ସାଧକ । ଘରୁ ଖାଇ ବାଟରେ ନାଚିବା ଥିଲା କାମ । ସାର୍ ମୋତେ ନିମନ୍ତ୍ରଣ କଲେ- ତାଙ୍କ ଘରେ ରହିବା ପାଇଁ, କ୍ଷୁଦ୍ର ନଦୀଟି ଆକାରର ଗୋଟିଏ ବିରାଟକାୟ ନର୍ଦ୍ଦମା ସାର୍‌ଙ୍କ ଘର ସମ୍ମୁଖ ଦେଶରେ କୃଷ୍ଣଜଳ ବହନ କରି ପ୍ରବାହିତ ହେଉଥିଲା । ସନ୍ଧ୍ୟା ହେଲେ ବିରାଟକାୟ ମଶକମାନେ ବିଗୁଲ୍ ଫୁଙ୍କି ଆତଙ୍କବାଦୀମାନଙ୍କ ପରି ଆକ୍ରମଣ କରୁଥିଲେ । ସବୁଦିନେ ସାର୍ ଶୋଇବା ସମୟରେ ମୋତେ ମଶାରୀ ଟାଙ୍ଗି ଦବାରେ ହାତ ବଢ଼ଉଥିଲେ ଏବଂ ତାଗିଦ୍ କରୁଥିଲେ ମଶାରୀ ଟାଙ୍ଗି ଶୋଇବା ପାଇଁ, ଏ ସବୁ ମନେ ପଡ଼ିଲେ ଆଖିରେ ଲୁହ ଜମି ଆସେ । ସବୁଦିନେ ସନ୍ଧ୍ୟା ଭ୍ରମଣରେ ବାହାରି ପଡୁଥିଲେ ସାର୍ ଓ ତାଙ୍କ ସହିତ ଓଡ଼ିଶାର ଯଶସ୍ୱୀ ପ୍ରଫେସର ସାହିତ୍ୟିକ ଡ. କୁଞ୍ଜବିହାରୀ ଦାଶ ଓ ପ୍ରଖ୍ୟାତ ସାହିତ୍ୟିକ ଡ. କୁଞ୍ଜବିହାରୀ ଦାଶ ଓ ପ୍ରଖ୍ୟାତ ସାହିତ୍ୟିକ ଓ ଐତିହାସିକ ଓ ପତ୍ନତତ୍ତ୍ୱବିତ୍ ଡ. କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀ । ସେମାନଙ୍କ ସହ ମୋତେ ସାର୍ ଭଲଭାବରେ ପରିଚିତ କରାଇ ଦେଇଥିଲେ ଓ ସାନ୍ଧ୍ୟ ଭ୍ରମଣରେ ସାହିତ୍ୟ ଆଲୋଚନାରେ ଭାଗନେବାର ସୁଯୋଗ ଦେଉଥିଲେ ।

ପରବର୍ତ୍ତୀ ସମୟରେ ମୋ ଜୀବନର ଗତିପଥ ଓ ବୃତ୍ତି ବଦଳିଯିବାରୁ ମୁଁ ଆଉ ସାର୍‌ଙ୍କ ସହ ସଂପର୍କ ରଖିପାରିଲି ନାହିଁ । କେବଳ କବିତା, ଗୀତ ଓ ମଝେ ମଝେ ପ୍ରବନ୍ଧ ଲେଖୁଥିଲି । ମୋର ଗୀତ ରେଡ଼ିଓରୁ ଶୁଣି ସାର୍ କିନ୍ତୁ ଖଣ୍ଡେ ଖଣ୍ଡେ ପୋଷ୍ଟକାର୍ଡ଼ ଲେଖି ପ୍ରେରଣା ଦବା ପାଇଁ ହେଳା କରୁ ନଥିଲେ । ଯଦିଓ ମୁଁ ତା'ର ଉତ୍ତର ଫେରାଇ ପାରୁ ନଥିଲି । ତାଙ୍କର ସ୍ୱପ୍ରକାଶିତ 'ଏଷଣା' ପତ୍ରିକା ପାଇଁ ଛନ୍ଦ ଓ ଲୋକଗୀତ ଉପରେ ପ୍ରବନ୍ଧ ପାଇଁ ଲେଖୁଥିଲେ । ତାହା ମଧ ମୁଁ ରକ୍ଷା କରିନାହିଁ । ଗବେଷଣା ପରିଷଦରେ ସଭ୍ୟ ହେବା ପାଇଁ ମଧ ମୁଁ ତାଙ୍କ ଅନୁରୋଧ ରକ୍ଷା କରିପାରିନାହିଁ । ସେ ଯାହାହେଉ ଡ. ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପରେ ଓଡ଼ିଆ ସାହିତ୍ୟର ଗବେଷଣା କ୍ଷେତ୍ରରେ ଡ. କୃଷ୍ଣଚରଣ ବେହେରାଙ୍କ ନାମ ନିଶ୍ଚୟ ସ୍ମରଣୀୟ ହେବ । ତାଙ୍କର ମାନସପୁତ୍ର ଗବେଷଣା ପରିଷଦ ଓ ମାନସକନ୍ୟା 'ଏଷଣା' ଚିରଦିନ ଓଡ଼ିଆ ଗବେଷଣାର ଇତିହାସରେ ସ୍ୱର୍ଣ୍ଣଲିପିରେ ଲିପିବଦ୍ଧ ହୋଇରହିବ । ବହୁ ଗବେଷକ ତିଆରି କରିବାରେ କୃଷ୍ଣ ସାର୍‌ଙ୍କର ସାଂଗଠନିକ କୃତିକୁ ଭବିଷ୍ୟତ ପିଢ଼ି ସ୍ମରଣ ରଖିବେ । ଓଡ଼ିଆ ସାହିତ୍ୟକୁ ଏହା ସାର୍‌ଙ୍କର ଅତୁଳନୀୟ ଦାନ ।

କୃଷ୍ଣସାର୍‌ଙ୍କ ଜୀବନଶୈଳୀ ଥିଲା ଅତ୍ୟନ୍ତ ସରଳ, ନିରାଡ଼ମ୍ବର ଓ ଅକୃତ୍ରିମ । ସାଧାରଣ ବାସଗୃହ, ସାଧାରଣ ବେଶ ପୋଷାକ ଓ ଖାଦ୍ୟପେୟ ଭିତରେ ତାଙ୍କର ଜୀବନ କଟୁଥିଲା- ଓଡ଼ିଆ ସାହିତ୍ୟର ଜଣେ ନିରଳସ ନିରବଚ୍ଛିନ୍ନ ସାଧକ ରୂପେ । ମାତ୍ର ସରଳ ଓ ସ୍ୱଳ୍ପବାକ୍ ହୋଇ ମଧ ସାର୍ ଥିଲେ ଅତିମାତ୍ରାରେ ନିର୍ଭୀକ । ସବୁ ବିରୋଧର ସାମ୍ନା ସେ ଅତି ସଂଭ୍ରମତାର ସହ ହଜମ କରିପାରୁଥିଲେ । ମାତ୍ର ସତ୍ୟ ଓ ସ୍ପଷ୍ଟ କଥା କହିବାରେ ସେ ଯେତେବଡ଼ ଲୋକ ହୁଅନ୍ତୁ ପଛକେ ତାଙ୍କୁ ଭଦ୍ର ଭାବରେ କହିବାରେ ପଛେଇ ଯାଉ ନଥିଲେ । ମୋର ବ୍ୟକ୍ତିଗତ ଅନୁଭୂତିରୁ ଏ କଥା ଲେଖୁଚି ।

ସାର୍‌ଙ୍କ ବ୍ୟକ୍ତିଗତ ଧାର୍ମିକ ଜୀବନ । ଏହି ଧାର୍ମିକ ଜୀବନଟି ବ୍ୟକ୍ତିର ଅନ୍ତଃସ୍ୱର । ଗୋଷ୍ଠୀ ଓ ସଂଗଠନ ଜରିଆରେ ଯେଉଁ ଧାର୍ମିକ ଅଭିବ୍ୟକ୍ତି ସଂପ୍ରସାରିତ ହେଉଛି, ପ୍ରବଳରୁ ଅତି ପ୍ରବଳ ମାତ୍ରାରେ ଦିନକୁ ଦିନ ବଢ଼ିଚାଲିଛି, ସେଠାରୁ ସାର୍ ବହୁଦୂରରେ ଥିଲେ । ମାତ୍ର ଆନ୍ତରିକ ଜୀବନରେ ସାର୍ ବୋଧହୁଏ ଥିଲେ ଜଣେ ନାସ୍ତିକ କିମ୍ବା ଅଜ୍ଞେୟବାଦୀ । ଦର୍ଶନତତ୍ତ୍ୱ ଓ ବ୍ୟକ୍ତିଗତ ଧର୍ମଧାରଣା ଉପରେ ମୁଁ କେବେ ତାଙ୍କ ସହ ଆଲୋଚନା କରିନାହିଁ । ନାସ୍ତିକ କିମ୍ବା ଅଜ୍ଞେୟବାଦୀମାନେ ଯେ ସମାଜରେ ବାଛନ୍ଦ ଶ୍ରେଣୀର ଲୋକ ଏପରି ନୁହେଁ; ବରଂ ବହୁ ନାସ୍ତିକ ଅଥବା ଅଜ୍ଞେୟବାଦୀ ସମାଜର ତଥାକଥିତ ଧର୍ମଧ୍ୱଜାଧାରୀ, ପଣ୍ଡା ପଣ୍ଡିତଙ୍କଠାରୁ ବହୁ ଊର୍ଦ୍ଧ୍ୱ ଚେତନାର ସ୍ତରରେ ଅବସ୍ଥାପିତ । ଖ୍ରୀଷ୍ଟ ଧର୍ମକୁ ବିରୋଧ କରି ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଗଣିତଜ୍ଞ ଓ ଦାର୍ଶନିକ ବାର୍ଟାଣ୍ଡ ରସେଲ୍ ପୁସ୍ତକଟିଏ ଲେଖିଲେ- 'Why I am not a Christian' ପୋପ୍‌ଙ୍କ ସାମ୍ରାଜ୍ୟ ଭୁଶୁଡ଼ିଯିବା

ପରି ଲାଗିଲା । ମାତ୍ର ସତ୍ୟନିଷ୍ଠ ଲେଖକ ଅକୁତୋଭୟ ଭାବରେ ବାଇବେଲ୍ ବିରୋଧରେ ଯେଉଁ ତଥ୍ୟ ଉପସ୍ଥାପନ କଲେ- ତାହା ଅକାଟ୍ୟ ଓ ଅଚ୍ଛେଦ୍ୟ । ବଡ଼ ବଡ଼ ବୈଜ୍ଞାନିକମାନେ- ଆଜିର ଦିବଂଗତ ବୈଜ୍ଞାନିକ, 'କୃଷ୍ଣଗର୍ତ୍ତ' ତଥ୍ୟର ପ୍ରବର୍ତ୍ତକ ଷ୍ଟିଫେନସ୍ ହକିନସ୍-ଏହିପରି କିଛି ବହୁ ଚର୍ଚ୍ଚିତ ନାମ-ଯେଉଁମାନେ ସୃଷ୍ଟିର ରହସ୍ୟ ଖୋଜିଖୋଜି ସାରାଜୀବନ ଗବେଷଣା ଦ୍ୱାରା ମାନବ ସଭ୍ୟତାକୁ ଆଲୋକ ଦେଖାଇଛନ୍ତି । ତଥା କଥିତ ପୁରାଣ, ଶାସ୍ତ୍ର, ଧର୍ମଗ୍ରନ୍ଥ(ବେଦାନ୍ତ ବ୍ୟତୀତ)ଗୁଡ଼ିକରେ ଅବୈଜ୍ଞାନିକ ଗାଲୁଗପଗୁଡ଼ିଏ ଲେଖା ହୋଇଛି ଓ ଯାହାକୁ ଆଧାର କରି କେତେ ନିର୍ବିଘ୍ନ ସାମାଜିକ ଷଡ଼ଯନ୍ତ୍ର ରଚନା କରିଚାଲିଛନ୍ତି । ବ୍ୟକ୍ତିଗତ ଜୀବନରେ ଏମାନେ ମନ୍ଦବୁଦ୍ଧି ଓ ନିମ୍ନଚେତନାର ଲୋକ । ଈଶ୍ୱରଙ୍କୁ ଅବିଶ୍ୱାସ କରି ବଞ୍ଚିରହିବା କେବଳ ଜଣେ ନିର୍ଭୀକ ପୁରୁଷ ପକ୍ଷରେ ସମ୍ଭବ । କିଏ ଚେତନାର ଊର୍ଦ୍ଧ୍ୱସ୍ତରରେ ଅଛି; ଜଣେ ବୈଜ୍ଞାନିକ ଓ ଭଲମଣିଷ ନା ତଥାକଥିତ ଧାର୍ମିକ ଲୋକ ? କୃଷ୍ଣସାର୍ ନାସ୍ତିକ କିମ୍ବା ଅଜ୍ଞେୟବାଦୀ-କେଉଁ ଶ୍ରେଣୀଭୁକ୍ତ ହେବେ ମୁଁ ଜାଣିନାହିଁ । ମାତ୍ର ସେ ପରିବାରରେ କୌଣସି ସଦସ୍ୟଙ୍କର ଧାର୍ମିକ ଭାବନା ପ୍ରତି ତିଳେ ହେଲେ ବାଧା ଦେଉ ନଥିଲେ ବରଂ ଗଣେଶ ପୂଜା ସରସ୍ୱତୀ ପୂଜା ଅବକାଶରେ ପୂଜା ସାମଗ୍ରୀ କିଣିଦେବା ସଙ୍ଗେ ସଙ୍ଗେ- ଡାକ ଛାଡୁଥିଲେ- 'ଆରେ ବାବୁ, ଚୁନୀ ତୁମେମାନେ ଡେରି କରୁଚ, ଆଜି ପୂଜା କରିବନି କି ?' ପୁରୀ ଜଗନ୍ନାଥ ମନ୍ଦିରକୁ ସ୍ତ୍ରୀ ଓ ପିଲାଛୁଆଙ୍କୁ ବୁଲାଇ ଆଣିବାକୁ ଗଲେ, ସେ ବାହାରେ ରହି ଅପେକ୍ଷା କରୁଥିଲେ, ଘର ଲୋକେ ଦର୍ଶନ କରି ଫେରିବା ପର୍ଯ୍ୟନ୍ତ । କାହାରି ବ୍ୟକ୍ତିଗତ ଧାର୍ମିକ ବିଶ୍ୱାସ ଉପରେ ସେ ତର୍ଜମା କରୁ ନଥିଲେ, ନିଜେ ଯାହା ଠିକ୍ ମଣୁଥିଲେ, ତାହାହିଁ ନିଜ କାର୍ଯ୍ୟରେ ରୂପାୟିତ କରୁଥିଲେ ।

ସାର୍ ହେଉଛନ୍ତି ଜଣେ ନିରହଙ୍କାରୀ ବ୍ୟକ୍ତିତ୍ୱ । ଓଡ଼ିଆ ସାହିତ୍ୟର ଜଣେ ତପସ୍ୱୀ, ମହାନ୍ ସଂଗଠକ ଓ ପରିଶେଷରେ ଜଣେ ଉଦାରବାଦୀ ସ୍ନେହୀ ମଣିଷ । ଯାହା ସମାଜରେ ଦୁର୍ଲ୍ଲଭ ସେହିପରି ଭଲ ମଣିଷଟିଏ ଯାହାଙ୍କ ଭିତରେ ଅମଳିନ ମନୁଷ୍ୟତ୍ୱ ଉଦ୍‌ଭାସିତ ହେଉଥିଲା । ସଂକ୍ଷେପରେ ସେ ଥିଲେ ଅନନ୍ୟ ଓ ଅତୁଳନୀୟ । ❖

ପୁରୁଣାହାଟ ସାହି, ବାରିପଦା-୭୫୭୦୦୧
ମୋ-୯୪୩୭୩୭୯୯୮୪

# ସ୍ମୃତିରୁ ଖିଏ

ସନାତନ ମହାନ୍ତ

ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କରେ କାର୍ଯ୍ୟରତ ଶିକ୍ଷକ ଶିକ୍ଷୟିତ୍ରୀ, ଶିକ୍ଷାକର୍ମୀ ଏବଂ ଅଧ୍ୟାପକ ଅଧ୍ୟାପିକାମାନେ ନିର୍ଦ୍ଦିଷ୍ଟ ଏକ ଶିକ୍ଷାନୁଷ୍ଠାନରେ ଦୀର୍ଘଦିନ ଶିକ୍ଷକତା କରିବାର ମହାର୍ଘ୍ୟ ସୁଯୋଗ ଲାଭ କରିଥାନ୍ତି । ଏହା ଫଳରେ ସେମାନେ ଶିକ୍ଷାନୁଷ୍ଠାନର ପରିସରରେ ଶିକ୍ଷା ଗ୍ରହଣ କରୁଥିବା ଛାତ୍ରଛାତ୍ରୀ, ଅଭିଭାବକ ତଥା ସ୍ଥାନୀୟ ବ୍ୟକ୍ତିମାନଙ୍କ ସାମାଜିକ ଓ ଅର୍ଥନୈତିକ ସ୍ଥିତି ସମ୍ପର୍କରେ ଜାଣିବାର ସୁଯୋଗ ପାଇଥାନ୍ତି । ଫଳରେ ବିଦ୍ୟାର୍ଥୀମାନଙ୍କୁ ଘନିଷ୍ଠଭାବରେ ଜାଣିବାର ସୁଯୋଗ ତାଙ୍କୁ ମିଳେ । ଶିକ୍ଷାଦାନ ଓ ଶିକ୍ଷାଗ୍ରହଣରେ ଉତ୍ତମ ପରିବେଶ ସୃଷ୍ଟି ହୁଏ । ଉଭୟ ଛାତ୍ର ଓ ଶିକ୍ଷକ ଅନୁଷ୍ଠାନକୁ ନିଜର ବୋଲି ଭାବନ୍ତି । ଅନୁଷ୍ଠାନର ପ୍ରଗତିରେ ଗର୍ବିତ ମନେ କରନ୍ତି ।

ଭଦ୍ରକ କଲେଜ ସେହିଭଳି ଏକ ଅନୁଷ୍ଠାନ ଯାହା ୧୯୪୮ ମସିହାରେ ବେସରକାରୀ ଅନୁଷ୍ଠାନ ଭାବେ ସ୍ଥାପିତ ହୋଇ ଓଡ଼ିଶାର ଏକ ଉନ୍ନତ ଶିକ୍ଷାକେନ୍ଦ୍ର ଭାବରେ ପ୍ରତିଷ୍ଠା ଲାଭ କରିଥିଲା । ଏହି ଅନୁଷ୍ଠାନରେ ଡ. କୃଷ୍ଣଚରଣ ବେହେରାଙ୍କ ସମେତ ଅନ୍ୟ ଅଧ୍ୟାପକଙ୍କୁ ସହକର୍ମୀ ଭାବେ ପାଇବାର ମହାର୍ଘ୍ୟ ସୁଯୋଗ ମୋତେ ମିଳିଥିଲା ।

ଅବଶ୍ୟ ଦୀର୍ଘଦିନ ଧରି ଏକତ୍ର ଏକ ନିର୍ଦ୍ଦିଷ୍ଟ ପରିବେଶରେ ଚଳପ୍ରଚଳ ହେବା ଦ୍ୱାରା ସମୟ ସମୟରେ ମତାନ୍ତର, ଏପରିକି ମନାନ୍ତର ମଧ୍ୟ ଦେଖାଯାଏ । ଏ ପ୍ରକାର ସାମୟିକ ମନୋମାଳିନ୍ୟ କିଛି ସମୟ ଭିତରେ ମନକୁ ମନ ସମାଧାନ ହୋଇଯାଏ । ପୁନଶ୍ଚ ସମୟ କ୍ରମେ ସଂହତି ସ୍ୱତଃ ପୁନଃ ପ୍ରତିଷ୍ଠିତ ହୁଏ । ହୁଏତ ଏହି ସ୍ୱାଭାବିକ ପ୍ରକ୍ରିୟାରେ ସଂହତି ସୁଦୃଢ଼ ହୁଏ । ଅନୁଷ୍ଠାନର ବିକାଶ ସହିତ କେମ୍ପସରେ ଅନ୍ତେବାସୀମାନଙ୍କ ଭିତରେ ସମୟ କ୍ରମେ ଏକତ୍ୱ ଭାବ ପ୍ରତିଷ୍ଠା ହୁଏ । ଏକଦା ବେସରକାରୀ ପରିଚାଳନାଧୀନ ଏହି ଅନୁଷ୍ଠାନର ଛାତ୍ରଛାତ୍ରୀ ଓ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କ ସଂଖ୍ୟା ଓ ପାଠ୍ୟ ବିଷୟ ଗୁଡ଼ିକର ସଂଖ୍ୟା ଦୃଷ୍ଟିରୁ ରେଭେନ୍ସା କଲେଜ ପଛକୁ ଭଦ୍ରକ ଓଡ଼ିଶାର ଦ୍ୱିତୀୟ ବୃହତ୍ତମ କଲେଜ ଭାବେ ଗୌରବ ଅର୍ଜନ କରିଥିଲା । ଡ. ବେହେରଙ୍କ

ସହିତ କେମ୍ପସରେ ବେଶ୍ କିଛି ବର୍ଷ ଅବଧି ସହକର୍ମୀଭାବେ କାର୍ଯ୍ୟ କରିବାର ସୁଯୋଗ ପାଇଥିଲି । ଭଦ୍ରକ କଲେଜରେ ୧୯୫୩ରେ ଯୋଗଦେବାର ପ୍ରାୟ ତିନିବର୍ଷ ପରେ ଡ. ବେହେରା ମୋର ସେ ସହକର୍ମୀ ଭାବରେ ଯୋଗଦେଇଥିଲେ । କଲେଜରେ ଏ ପ୍ରକାର ଆନ୍ତରିକ ପରିବେଶ ସୃଷ୍ଟି କରିଥିଲେ ତତ୍କାଳୀନ କଲେଜ କର୍ତ୍ତୃପକ୍ଷ, ବିଶେଷତଃ କଲେଜ ପରିଚାଳନା କମିଟିର ସମ୍ପାଦକ ସ୍ୱର୍ଗତ ନରେନ୍ଦ୍ର ପ୍ରସାଦ ଦାସ । ସେ ଅଧ୍ୟାପକମାନଙ୍କ ପାଇଁ ଗୁଡ଼ିଏ ଷ୍ଟାଫ୍ କ୍ୱାଟର ଏବଂ ଛାତ୍ରଛାତ୍ରୀମାନଙ୍କ ପାଇଁ ଗୁଡ଼ିଏ ଛାତ୍ରାବାସ ନିର୍ମାଣ କରିଥିଲେ । ଆମ୍ଭେମାନେ କଲେଜରେ ଏକ ପରିବାର ସଦୃଶ ରହୁଥିଲୁ । ସେତେବେଳେ କଲେଜ ପରିସର ସକାଳରୁ ବିଳମ୍ବିତ ସନ୍ଧ୍ୟା ପର୍ଯ୍ୟନ୍ତ ଗହଳ ଚହଳ ହେଉଥିଲା । ଛାତ୍ରଛାତ୍ରୀ କଲେଜ ଲାଇବ୍ରେରୀରେ ଅଥବା ସେମିନାର କ୍ଲାସରେ ଯୋଗଦେଇ ଶୈକ୍ଷିକ ପରିବେଶକୁ ଉପଭୋଗ କରୁଥିଲେ ସେ ପ୍ରକାର ଶୃଙ୍ଖଳା ତଥା ପରିବେଶ ଏବେ ସ୍ମରଣକୁ ଆସିଲେ ଆନନ୍ଦରେ ମନ ଭରିଯାଏ ।

ଡ. କୃଷ୍ଣଚରଣ ବେହେରା, ତାଙ୍କର ଛାତ୍ରାବସ୍ଥାରୁ ସାହିତ୍ୟାନୁରାଗୀ ଥିଲେ । ଦୋଳସାହି ରାମନାରାୟଣ ହାଇସ୍କୁଲରେ ଅଧ୍ୟୟନ କାଳରେ ତାଙ୍କର ଶିକ୍ଷାଗୁରୁ ତଥା ସାରସ୍ୱତ ସାଧକ କବି ଗଗନବିହାରୀ ମହାନ୍ତିଙ୍କର ପ୍ରିୟ ଛାତ୍ରଥିଲେ ଏବଂ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଭଦ୍ରକ କଲେଜରେ ଅଧ୍ୟାପନା କାଳରେ ସେ ସେହିଭଳି ସାହିତ୍ୟ ସାଧନା ପ୍ରତି ଶ୍ରଦ୍ଧା ଥିବା କେତେଗୁଡ଼ିଏ ଛାତ୍ର ସୃଷ୍ଟି କରିଥିଲେ । ତାଙ୍କର ସେହି ଛାତ୍ରମାନେ ପରବର୍ତ୍ତୀ କାଳରେ ସାରସ୍ୱତ ସାଧନାରେ ତାଙ୍କର ସହଯୋଗୀ ହୋଇଥିଲେ । ସ୍ୱର୍ଗତ କ୍ଷେତ୍ରବାସୀ ନାୟକ ଓ କୈଳାଶ ଚନ୍ଦ୍ର ପଣ୍ଡାଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଡ. ବେହେରା ଏକ ଗବେଷଣା ଧର୍ମୀ ସାରସ୍ୱତ ଅନୁଷ୍ଠାନ ଗଢ଼ିଥିଲେ । ସ୍ୱର୍ଗତ କ୍ଷେତ୍ରବାସୀ ନାୟକ ପ୍ରମୁଖ ତାଙ୍କର ସହଯୋଗୀ ଥିଲେ । ସେହି ଅନୁଷ୍ଠାନ ଦ୍ୱାରା ଏଷଣା ନାମରେ ଏକ ଗବେଷଣା ଧର୍ମୀ ପତ୍ରିକା ପ୍ରକାଶିତ ହେଉଥିଲା । ଡ. ବେହେରାଙ୍କ ଦେହାନ୍ତ ପରେ ଏଷଣାକୁ ତାଙ୍କ ପ୍ରିୟ ଛାତ୍ର ତଥା ଅନୁଗାମୀମାନେ ବଞ୍ଚାଇ ରଖିବେ ବୋଲି ଆଶା କରାଯାଏ । ସେହିପରି ତାଙ୍କର ଅନ୍ୟତମ ପ୍ରିୟ ଛାତ୍ର ଶ୍ରୀ କୈଳାଶଚନ୍ଦ୍ର ପଣ୍ଡାଙ୍କ ସଂପାଦନାରେ ଗତ କିଛି ବର୍ଷ ହେଲା 'ପ୍ରେମପୃଥିବୀ' ନାମରେ ଏକ ପତ୍ରିକା ଭଦ୍ରକରୁ ପ୍ରକାଶିତ ହେଉଅଛି । ଡ. ବେହେରା ଜୀବିତାବସ୍ଥାରେ ସେହି ପତ୍ରିକାର ବିକାଶ ପାଇଁ ଦିଗ୍‌ଦର୍ଶନ ଦେଉଥିଲେ । ❖

'ଦିବ୍ୟମ୍'
ଜାନୁଗଞ୍ଜ, ମାଧବନଗର, ଭଦ୍ରକ

# ଆଚାର୍ଯ୍ୟଦେବଙ୍କ ପ୍ରତି

ପ୍ରାଧ୍ୟାପକ ବିପିନ ବିହାରୀ ବିଶ୍ୱାଳ

'ମହାକାଳର ରଥଚକ୍ରର' ଆବର୍ତ୍ତନରେ ଓ ଜଗତର ଶାଶ୍ୱତ ନିୟମ ଅନୁସାରେ ସୃଷ୍ଟିଲଗ୍ନଠାରୁ ଅଗଣିତ ମନୁଷ୍ୟଙ୍କର ଯିବା ଆସିବା ଅବିରାମ ଭାବରେ ଚାଲିଛି । ଏହି ଜୀବନସ୍ରୋତର ଅଗ୍ରଗମଣର ରାସ୍ତାରେ ଏଭଳି କିଛି ବ୍ୟତିକ୍ରମୀ ମଣିଷ ଅଛନ୍ତି, ଯେଉଁମାନେ ନିଜର ପ୍ରତିଭା ଓ କୀର୍ତ୍ତିର ସ୍ୱାକ୍ଷର ରଖି ଅମର ଗୌରବ ଲାଭ କରନ୍ତି । ଆମ ହୃଦୟ ସିଂହାସନରେ ଚିର ଆସୀନ ସେଭଳି ଜଣେ ମହିମାମୟ ପୁରୁଷ- ହେଉଛନ୍ତି ପରମ ଆରାଧ୍ୟ ଶିକ୍ଷାଗୁରୁ, ପ୍ରଥିତଯଶା ସାରସ୍ୱତ ସାଧକ ଡକ୍ଟର କୃଷ୍ଣଚରଣ ବେହେରା ।

ମୋର ପ୍ରାତଃସ୍ମରଣୀୟ ଗୁରୁଦେବଙ୍କ ଉଦ୍ଦେଶ୍ୟରେ କିଛି ଦୁଇପଦ ଲେଖି ବସିଲା ବେଳକୁ କାହିଁକି କେଜାଣି ଭାଷା- ଶବ୍ଦସବୁ ହୁଡ଼ିଯାଉଛି । ଅକ୍ଷୟ ମନୁଷ୍ୟତ୍ୱ ଋଷିତୁଲ୍ୟ ମୋର ପିତୃପ୍ରତିମ ଗୁରୁଙ୍କ ନେଇ ମୋର ବହୁମୁଖୀ ଅନୁଭବ ଅଛି । ସବୁ ଲେଖିବସିଲେ ଏକ ପ୍ରକାଣ୍ଡ ଗ୍ରନ୍ଥ ହୋଇଯିବ । ସାର୍ ବହୁ ଦିଗରୁ ମୋର ଆଦର୍ଶ । କେବଳ ମୋର ଆଦର୍ଶ ଗୁରୁ ଭାବରେ ଯେତିକି ନୁହେଁ, ତାଙ୍କୁ ମୋର ଫ୍ରେଣ୍ଡ, ଫିଲୋସଫର ଏଣ୍ଡ ଗାଇଡ୍ ଭାବରେ ଗ୍ରହଣ କରି କୃତାର୍ଥ ହୋଇଛି, ବାଟ ଖୋଜି ଆଗେଇ ଚାଲିବାର ସାହସ ପାଇଛି-

ମୁଁ ଭଦ୍ରକ ବଙ୍କ ଇଉ.ପି. ବିଦ୍ୟାଳୟରେ ୧୯୬୦-୬୧ ମସିହାରେ ଶିକ୍ଷକତା କରୁଥିବା ଅବସରରେ ଦ୍ୱିତୀୟ ଶ୍ରେଣୀରେ ପଢୁଥିବା ଛାତ୍ର ଦୀପୁ(ଦୀପଙ୍କର ରାୟ)ଠୁ ପ୍ରଥମେ ଭଦ୍ରକ କଲେଜର ଓଡ଼ିଆ ବିଭାଗର ଅଧ୍ୟାପକମାନଙ୍କର ନାମ ଜାଣି ଯାଇଥିଲି । ଦୀପୁ ଥିଲେ ଓଡ଼ିଆ ଅଧ୍ୟାପକ ସୁଧାଂଶୁ ଶେଖର ରାୟଙ୍କର ପୁତ୍ର- ମୁଁ ଶିକ୍ଷକତା ଛାଡ଼ି ଭଦ୍ରକ କଲେଜରେ ପଢ଼ିବାବେଳେ ସୁଧାଂଶୁ ସାର୍‌ଙ୍କୁ ଜାଣିବାର ଅବକାଶ ମିଳିଲା ଓ ତାଙ୍କଠୁ ଅକୃତ୍ରିମ ସ୍ନେହ ଆଦର ବି ପାଇଲି । ଅବଲୀଳାକ୍ରମେ ସେ ଆଜି ଆଉ ଇହଧାମରେ ନାହାନ୍ତି ।

ଯୋଗକୁ ମୁଁ ଚାକିରି ଛାଡ଼ି କଲେଜରେ ଭର୍ତ୍ତି ହେଲା ବେଳକୁ ବନ୍ଧୁ ଅଧ୍ୟାପକମାନଙ୍କୁ

ମୁଁ ଜାଣିଯାଇଥିଲି । ମୁଁ ପି.ୟୁ. ଏବଂ ପ୍ରଥମ ବର୍ଷ ପଢ଼ିଲା ବେଳେ କୃଷ୍ଣସାର୍‌ଙ୍କୁ ଚିହ୍ନି ସାରିଥିଲି । ହେଲେ ସେତେବେଳେ ସାର୍‌ମାନଙ୍କ ପାଖକୁ ଯାଇଯାଇ ସାମ୍ନାରେ କହିବାକୁ ସାହସ ହୁଏ ନାହିଁ ।

ମୁଁ ବି.ଏ. ରେ ଓଡ଼ିଆ ଅନର୍ସ ନେଇ ପଢ଼ିଲା ବେଳେ ଓଡ଼ିଆ ଅଧ୍ୟାପକମାନଙ୍କ ସହିତ କଥାବାର୍ତ୍ତା କରିବାର ଭୟ କ୍ରମେ ଭାଙ୍ଗିଗଲା- ମୁଁ ଯାହା ଦେଖିଲି ସେମାନେ ଜଣେ ଜଣେ ସ୍ନେହର ଅବତାର । ଦେବୋପମ ଗୁରୁ । ଅଧ୍ୟାପକ ନରେନ୍ଦ୍ର ମୋହନ ବେହେରା ଆମର ଭାଷା ପେପର, ଅଧ୍ୟାପକ ବୈଷ୍ଣବଚରଣ ବଳ 'ଶାସ୍ତି' ଉପନ୍ୟାସ, ଅଧ୍ୟାପିକା ବେଲାରାଣୀ ଚାନ୍ଦ 'ଲଛମା', ଅଧ୍ୟାପକ କମଳାକାନ୍ତ ଲେଙ୍କା ମଧୁସୂଦନ ରାଓଙ୍କ 'କୁସୁମାଞ୍ଜଳି, ଅଧ୍ୟାପକ ସୁଧାଂଶୁ ଶେଖର ରାୟ 'ତପସ୍ୱିନୀ' ପଢ଼ାଉଥିଲେ କୃଷ୍ଣସାର୍ । ବିଦଗ୍ଧ ଚିନ୍ତାମଣି', 'ଧର୍ମପଦ' ଏବଂ ରସ, ରୀ, ଗୁଣ, ଛନ୍ଦ ଆଦି ପଢ଼ାଉଥିଲେ । ସାର୍‌ଙ୍କ ସେବେଳର ପଢ଼ାଉଥିବା ମୋର କ୍ଲାସ୍ ନୋଟ୍ ବୁକ୍ ଏବେ ବି ମୋ ପାଖରେ ସାଇତା ହୋଇ ରହିଛି- ତାକୁ ନେଇ ମୁଁ ୩୦ବର୍ଷ କାଳ, ଅନର୍ସ ପଢ଼ାଇବା କାମରେ ତଥା ଲେଖାଲେଖି କର୍ମରେ ଲଗାଇଛି, ସାର୍ ଅନର୍ସ ଟ୍ୟୁଟୋରିଆଲ୍ କ୍ଲାସ୍ ସପ୍ତାହକୁ ଗୋଟାଏ କରି ନେଉଥାଆନ୍ତି । ସେ ପ୍ରଥମଥର ପାଇଁ 'ସାହିତ୍ୟ ଓ ସମାଜ' ବିଷୟରେ ଘରୁ ଲେଖି ଆଣିବାକୁ କହିଲେ, ସାର୍ ମୋ ଖାତାରେ ୧୦ରୁ ୭ ନମ୍ବର ଦେଇ କହିଲେ ବିପିନ ତୁମ ଅକ୍ଷର ଭାରି ସୁନ୍ଦର- ଆମ ବସାକୁ ଆସ । ସାର୍ ଓଡ଼ିଆ ଉପନ୍ୟାସ ଉପରେ ଗବେଷଣା କରୁଥିଲେ ଓ ମୋତେ କାରବନ ପକାଇ ତିନିକପି କରି ଉତାରିବାକୁ କହିଲେ । ମୁଁ ଗୁରୁମା'ଙ୍କୁ ଚିହ୍ନି ନ ଥିଲି । ସେ ହଠାତ୍ ବିପିନ୍ ବୋଲି ଡାକି ଗୋଟାଏ ପ୍ଲେଟ୍‌ରେ ଜଳଖିଆ ଓ ପାଣିଗ୍ଲାସ୍ ଧରି ଆସି ଖାଅ ଖାଅ ବୋଲି କହିଲେ । କହିବା ବାହୁଲ୍ୟ ସେବେଠୁ ମୁଁ ସେ ଘରର ପୁଅ ପାଲଟି ଯାଇଥିଲି । ସେତେବେଳେ ସାର୍‌ଙ୍କ ଝିଅ ଓ ଦୁଇ ପୁଅ ଛୋଟ ହୋଇଥାଆନ୍ତି, ବିପିନ୍ କାକୁ ବୋଲି ଡାକନ୍ତି । ଏବେବି ସେମାନଙ୍କ ତୁଣ୍ଡରୁ ବିପିନ୍ କାକୁ ଡାକ ଶୁଣିଲେ ମନ ଆନନ୍ଦରେ ଭରିଯାଏ, 'ଟୁଟୁ' ଅକାଳରେ ଚାଲିଗଲା । ସାର୍‌ଙ୍କ ନାମ ରଖିଲା- ହେଲେ ଭଗବାନ ତାକୁ ଭାରି ଭଲ ପାଉଥିଲେ ବି କ'ଣ କଞ୍ଚା ବୟସରେ ତାକୁ ନିଜ ପାଖକୁ ନେଇଗଲେ । ବଡ଼ପୁଅ 'ବାପୁ' କୁ ସାର୍ ନିଜ ପାଖରେ ରଖିଥିଲେ । ଆଉ ସାର୍‌ଙ୍କ ଏକମାତ୍ର ଝିଅ 'ଚନି' ଅଧ୍ୟାପିକା ହୋଇ ଭଦ୍ରକରେ ଘର ତୋଳୁଛି । ସାର୍‌ଙ୍କ ଜୀବିତାବସ୍ଥାରେ ଗୁରୁମା ବେମାରୀରେ ପଡ଼ି ଇହଧାମରୁ ବିଦାୟ ନେଇଗଲେ । ସାର୍‌ଙ୍କ ଉପରେ ଦଇବ ଏଭଳି ଦାଉ କାହିଁକି ଯେ ସାଧିଲା, ଭାବି ଭାବି ହତ୍‌ବାକ ହୋଇଯାଉ । ଶେଷରେ ସାର୍‌ଙ୍କୁ ବି କାଳ ଝାମ୍ପିନେଲା । ବିରାଟ ଶୂନ୍ୟତା ସୃଷ୍ଟି ହୋଇଯାଇଛି । ହେଲେ ସାର୍ ହଜାର

ହଜାର ଛାତ୍ରଛାତ୍ରୀଙ୍କ ହୃଦୟରେ ବଞ୍ଚି ରହିଛନ୍ତି । ତାଙ୍କର ମୃତ୍ୟୁ ଅଛି ସତ କିନ୍ତୁ ବିନାଶ ଅସମ୍ଭବ, ଅକ୍ଷୟ ମନୁଷ୍ୟତ୍ୱ ଋଷିତୁଲ୍ୟ ମୋ ସାର୍‌ଙ୍କୁ କାଳର ବିଲୋପ କରିବାର କ୍ଷମତା ନାହିଁ ।

ଏ ବେଳରେ ମୋର ବହୁ ସ୍ମୃତି ମନ ମୂକୁ ଆସି ଯାଉଛି । ମୋତେ ସେ ପୁତ୍ରବତ୍ ସ୍ନେହ-ଶ୍ରଦ୍ଧାରେ ବାନ୍ଧି ରଖିଥିଲେ । ସମସ୍ତ ଛାତ୍ରଛାତ୍ରୀଙ୍କୁ ସେ ସ୍ନେହ ରଜ୍ଜୁରେ ବାନ୍ଧି ରଖୁଥିଲେ । ସେମାନଙ୍କ ଭଲ ମନ୍ଦ ବୁଝୁଥିଲେ । 'ସ୍ନେହ ବାଣ୍ଟିଲେ ବଢ଼େ'ର ଦର୍ଶନ ସାର୍‌ଙ୍କ ଠାରେ ମୁଁ ଦେଖି ଅଭିଭୂତ ହେଉଥିଲି । ସାର୍‌ଙ୍କ ଛାତ୍ରଛାତ୍ରୀ କେହି ଗୋଟାଏ ଭଲ କାମ କଲେ, ଗ୍ରନ୍ଥ ଖଣ୍ଡିଏ ପ୍ରକାଶ କଲେ, ଗବେଷଣା କାମ କଲେ, ସାର୍‌ଙ୍କ ଆନନ୍ଦର ସୀମିତ ରହେ ନାହିଁ ।

ସାର୍ ଅର୍ଥବଳ ଅପେକ୍ଷା ପାରମାର୍ଥିକ ବଳ ଉପରେ ସର୍ବଦା ପ୍ରାଧାନ୍ୟ ଦେଇ ଆମମାନଙ୍କୁ ପ୍ରେରଣା ଦେଇଥାଆନ୍ତି ସାର୍ ନିଜେ ମଧ୍ୟ ସେ ଦିଗକୁ ଯାଇ ବିଜୟଶ୍ରୀ ମଣ୍ଡିତ ହୋଇଛନ୍ତି, ସୁନାମର ସ୍ୱାକ୍ଷର ରଖିଯାଇଛନ୍ତି ।

୧୯୮୦ ମସିହାରୁ ପ୍ରତିଷ୍ଠିତ ଓଡ଼ିଆ ଗବେଷଣା ପରିଷଦର ସଭାପତି ଭାବରେ ଆମୃତ୍ୟୁ ରହି ଯେଉଁ ଦୁଃସାହସିକ କାର୍ଯ୍ୟମାନ କରି ଯାଇଛନ୍ତି- ତାହା ବାସ୍ତବିକ ଅତୁଳନୀୟ । ପରିଷଦର ମୁଖପତ୍ର 'ଏଷଣା' ନିଆରା ସଂପାଦନା ଏକ ଐତିହାସିକ ଦଲିଲ୍ ହୋଇ ରହିବ । ସାର୍‌ଙ୍କ ଅଦ୍ୱିତୀୟ ସାଂଗଠନିକ ଶକ୍ତି ଗବେଷଣା ପରିଷଦକୁ ରାଜ୍ୟରେ ଏକ ଅଗ୍ରଣୀ, ମର୍ଯ୍ୟାଦାବନ୍ତ ଅନୁଷ୍ଠାନରେ ପରିଣତ କରିଛି ସାହିତ୍ୟର ପ୍ରାୟ ସବୁ ବିଭାଗରେ ସାର୍ ଲେଖନୀ ଚାଳନା କରିଥିଲେ ହେଁ, ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଅଧିବାସୀ ହୋଇ ରହିଥିଲେ ଓ ରହିବେ ମଧ୍ୟ ।

ବିଭିନ୍ନ ସମୟରେ ସାର୍‌ଙ୍କ ପୁତ୍ରବତ୍ ସ୍ନେହ, ପ୍ରେରଣା ଓ ସାହାଯ୍ୟ ଯେ, ମୋତେ କେତେ ମାତ୍ରାରେ ଉଦ୍‌ବୁଦ୍ଧ କରିଛି, ତାହା ଲେଖି ହେବ ନାହିଁ ।

ସହସ୍ର ସହସ୍ର ଛାତ୍ରଛାତ୍ରୀଙ୍କ ଚିନ୍ତା, ଚେତନା ଓ ଚରିତ୍ର ଉପରେ ମୋର ପ୍ରାତଃସ୍ମରଣୀୟ ଗୁରୁଙ୍କର ଆଶୀର୍ବାଦ କେତେ ତାହା କଳି ହେବ ନାହିଁ ।

ସେହି ଆଚାର୍ଯ୍ୟଦେବଙ୍କ ମୋର କୋଟି ପ୍ରଣାମ । ❖

'ଶ୍ରୀନିକେତନ', ଜଳେଶ୍ୱର

# ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର

ଡ. ମନୋରମା ବିଶ୍ୱାଳ ମହାପାତ୍ର

ପ୍ରଫେସର କୃଷ୍ଣଚରଣ ବେହେରା କେବଳ ମୋର ଶିକ୍ଷାଗୁରୁ ନଥିଲେ, ସେ ମୋର ଦୀକ୍ଷାଗୁରୁ ମଧ୍ୟ ଥିଲେ। ତାଙ୍କର ବ୍ୟକ୍ତିତ୍ୱ ଥିଲା ବହୁମୁଖୀ। ଜଣେ ସାହିତ୍ୟ ସମାଲୋଚକ ଭାବରେ ଯେପରି ପ୍ରତିଭାବାନ, ଜଣେ ସୃଜନଶୀଳ ସ୍ରଷ୍ଟା ଭାବରେ ମଧ୍ୟ ସେତିକି ମହିମାମଣ୍ଡିତ। ତାଙ୍କର 'ସୃଷ୍ଟିର ସ୍ୱପ୍ନ', 'ଗୋପନପତ୍ର', 'ଉଭା ଓ ପୋତା', 'ନାରୀମେଧ', 'ମାଟି ମାଗୁଣି' ଆଦିକଣ୍ଠ, ଦର୍ପକ ଦର୍ପଣ ଆଦି ଗଳ୍ପ ସଂକଳନର ସେ ସାର୍ଥକ ସ୍ରଷ୍ଟା। ଅନେକ 'ଲିମେରିକ୍' ମଧ୍ୟ ସେ ଲେଖିଛନ୍ତି। ସାର୍‌ଙ୍କର ସାରସ୍ୱତ କୃତିର ତୁଳନା ହୋଇ ପାରିବ ନାହିଁ। ଦୀର୍ଘବର୍ଷ ଧରି ଗବେଷଣା ଭିତ୍ତିକ ପତ୍ରିକା 'ଏଷଣା'ର ସଂପାଦନା କଥା ଭାବିଲେ ବିସ୍ମିତ ନ ହୋଇ ରହି ହୁଏ ନାହିଁ। ବହୁ ଦୁର୍ଲ୍ଲଭ ଗୁଣର ସେ ଅଧିକାରୀ ଥିଲେ। ପରିଣତ ବୟସରେ ମଧ୍ୟ ନିରବଛିନ୍ନ ଭାବରେ ଲେଖିବା ଏବଂ ପଢ଼ିବା ଥିଲା ତାଙ୍କର ଅଭ୍ୟାସ। ସାର୍‌ଙ୍କ ସହିତ ଏବଂ ମାଉସୀଙ୍କ ସହିତ ଆମର ପାରିବାରିକ ସଂପର୍କ ନିବିଡ଼ ଥିଲା। ସେ ସଂପର୍କରେ ସାର୍ ଲେଖିଛନ୍ତି- "ମନୋରମାଙ୍କ ବାପା ପ୍ରାଣକୃଷ୍ଣ ବାବୁ ମୋର ଖୁବ୍ ଭଲ ବନ୍ଧୁ ଥିଲେ। ଶାନ୍ତିନିକେତନସ୍ଥ ବିଶ୍ୱ ଭାରତୀରେ ମନୋରମାଙ୍କ ସ୍ନାତକୋତ୍ତର ଶିକ୍ଷା ପାଇଁ ଆଗ୍ରହୀ ହୋଇ ସେ ମୋ ସହିତ ପରାମର୍ଶ କଲେ। ଶାନ୍ତିନିକେତନରେ ଉଚ୍ଚ ଶିକ୍ଷାଲାଭ ପାଇଁ ମନୋରମା ମଧ୍ୟ ଚାହୁଁଥିଲେ। ସେତେବେଳେ କବି ରବୀନ୍ଦ୍ରନାଥ ନଥିଲେ, କିନ୍ତୁ ତାଙ୍କ କବି ହୃଦୟ ଓ ଶିକ୍ଷାଗତ ଆଦର୍ଶର ସ୍ପର୍ଶ ଶାନ୍ତିନିକେତନର ଚାରିଆଡ଼େ ଲାଗି ରହିଥିଲା। ପରିବେଶଟି ଥିଲା ମନୋରମାଙ୍କ ପାଇଁ ବେଶ୍ ଅନୁକୂଳ। ସେଠାରେ ଯେଉଁ ଦୁଇ ବର୍ଷ ସେ ରହିଲେ, ତହିଁରେ ତାଙ୍କର ଚିତ୍ତବୃତ୍ତି ପରିମାର୍ଜିତ ହେଲା। କବି ପ୍ରାଣ ହେଲା ନାନା ଭାବରେ ସମୃଦ୍ଧ ଓ ସଂପ୍ରସାରିତ। ଭାଷା ସାହିତ୍ୟର ଅଧ୍ୟୟନ ସହିତ କବିତା ରଚନା କରି ଚାଲିଲେ। କବିତାର ମିନି ପତ୍ରିକା 'ରତ' ମଧ୍ୟ ପ୍ରକାଶ କଲେ। ଦୂରରେ ଥାଇ ସାହିତ୍ୟ କର୍ମରେ ତାଙ୍କର କ୍ରମୋନ୍ନତି ଲକ୍ଷ୍ୟ କରି ମୁଁ ଖୁବ୍ ଆନନ୍ଦ ଲାଭ କରୁଥିଲି। ଆଜି ତାଙ୍କର ଅନେକ କବିତା ପୁସ୍ତକ ବିଭିନ୍ନ

ଭାରତୀୟ ଭାଷାରେ ଅନୂଦିତ ହୋଇ ସର୍ବଭାରତୀୟ ସ୍ତରରେ ଖ୍ୟାତି ଆଣିଦେଇଛି । କବି ଭାବରେ ସେ ଯଶସ୍ୱିନୀ ।"

ସାର୍‌ଙ୍କର ଆଶୀର୍ବାଦର ହାତ ମୋ ଉପରେ ସବୁବେଳେ ରହିଥିବାର ମୁଁ ଅନୁଭବ କରୁଥିଲି । ସାର୍ ଥିଲେ ଖବୁ ଛାତ୍ରବତ୍ସଳ । ତାଙ୍କ ଦୃଷ୍ଟିରେ ସବୁ ଛାତ୍ରଥିଲେ ସମାନ । ଯେକୌଣସି ଛାତ୍ର ତାଙ୍କ ଘରକୁ ଗଲେ ନ ଖାଇ ଫେରୁ ନଥିଲେ । ସାର୍ ଶାନ୍ତିନିକେତନର ଛାତ୍ର ଥିଲେ । ଏହି ଛାତ୍ରବତ୍ସଳତା ସେ ଶାନ୍ତିନିକେତନରୁ ଆହରଣ କରିଥିଲେ । ଆମ ପରିବାରର ସଦସ୍ୟ ପରି ଥିଲେ ସାର୍‌ଙ୍କ ପୁଅ ଝିଅ । ସାର୍‌ଙ୍କ ବଡ଼ ଝିଅ 'ଚୁନି'ର ପିଲାଦିନ ଖେଳଘର ଥିଲା ଆମ ବାପାଙ୍କ ଘର । ମାଉସୀଙ୍କୁ ମୋ ମାଆ ଅତ୍ୟନ୍ତ ସମ୍ମାନ କରୁଥିଲା । ମାଉସୀ ଥିଲେ ଖୁବ୍ ସ୍ନେହୀ ଏବଂ ଶାଳୀନ । ଡ. କୁଞ୍ଜବିହାରୀ ଦାଶ, ଚିତ୍ତ ଭାଇ ଏବଂ ପ୍ରଫେସର ନରେନ୍ଦ୍ର ମିଶ୍ର, କଳା ଭବନର ବିନୋଦ ରାଉତରାୟ ପ୍ରଭୃତିଙ୍କ ସହିତ ସାର୍‌ଙ୍କର ଶାନ୍ତିନିକେତନରେ ହିଁ ସଂପର୍କ ଗଢ଼ି ଉଠିଥିଲା । ଶାନ୍ତିନିକେତନର ଶାନ୍ତ ସୁନ୍ଦର ପ୍ରକୃତି ସହିତ ଶିକ୍ଷକ, ଶିକ୍ଷାର୍ଥୀଙ୍କ ସୌହାର୍ଦ୍ଦ୍ୟ ଓ ସହଯୋଗ ତାଙ୍କ ମନକୁ ଖୁବ୍ ପ୍ରଭାବିତ କରିଥିଲା ।

ସାର୍ ତାଙ୍କର "ଶାନ୍ତିନିକେତନ ଅନୁଭୂତି"ରେ ଲେଖିଛନ୍ତି "ଯେଉଁ ଅଢେଇ ବର୍ଷକାଳ ମୁଁ ଶାନ୍ତିନିକେତନରେ ଥିଲି ସେତେବେଳେ ବିଖ୍ୟାତ ସାହିତ୍ୟିକ ଶ୍ରୀ ଅନ୍ନଦାଶଙ୍କର ରାୟ ସପରିବାର ସେଠାରେ ରହୁଥିଲେ । ସବୁଜ ଗୋଷ୍ଠୀର ଏହି ସାଧକ ଓଡ଼ିଆରେ ଲେଖାଲେଖି କରୁ ନଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ କର୍ମର ଖବର ରଖୁଥିଲେ ଏବଂ ଆମ ସହିତ ସେ ବିଷୟରେ ଆଲୋଚନା କରୁଥିଲେ । ଅନ୍ନଦାବାବୁ ଏବଂ ଲୀଳାଦି' ମୋର କିଛି ସ୍ୱରଚିତ କବିତା ଶୁଣି କବିତାର ପରିମାର୍ଜନ ପାଇଁ ପରାମର୍ଶ ଦେଉଥିଲେ । ମୋର ପ୍ରଥମ କବିତା ବହି "ଚା' କପ୍‌ରେ ଝଡ଼" (୧୯୫୩) ଉପରେ ଅନ୍ନଦାବାବୁ ଏକ ଉପଲବ୍ଧି ମୂଳକ ମନ୍ତବ୍ୟ ଲେଖି ଦେଇଥିଲେ; ଯାହା ମୋତେ ବିଶେଷ ପ୍ରୋତ୍ସାହନ ଯୋଗାଇଥିଲା ।

ବିଶ୍ୱଭାରତୀର ପ୍ରାୟ ସମସ୍ତ ବଡ଼ ବଡ଼ ଅଧ୍ୟାପକ ଗବେଷକ ପଣ୍ଡିତ ଫଳନ୍ତି ବୃକ୍ଷ ଭଳି ଥିଲେ ନମ୍ରନତ ଓ ଅନହଂକାରୀ । ସାରଙ୍କ ବ୍ୟକ୍ତିତ୍ୱରେ ଏହାର ପ୍ରତିଫଳନ, ଆମେ ଦେଖିଛୁ ।

ଆଜି ଆମ ଗହଣରେ ସାର୍ ନାହାନ୍ତି ସତ, ହେଲେ ନିରବଧିକାଳ ବିପୁଳାଚ ପୃଥ୍ୱୀ ଭିତରେ ତାଙ୍କ ଉପସ୍ଥିତି ସବୁବେଳେ ଆମେ ଅନୁଭବ କରିବୁ । ❖

ପ୍ରୀତମପୁରୀ, ୧୨୫, ଆଚାର୍ଯ୍ୟବିହାର, ଭୁବନେଶ୍ୱର
ଫୋନ୍-୦୯୪୩୭୦୧୧୦୦୩

# ପୁଞ୍ଜିବାଦର ପ୍ରତିକ୍ରିୟା ଓ କୃଷ୍ଣଚରଣଙ୍କ ଗଳ୍ପମାନସ

ଡ. ହରେକୃଷ୍ଣ ପାତ୍ର

କୃଷ୍ଣଚରଣ ଥିଲେ ଓଡ଼ିଆ ସାହିତ୍ୟରେ ସବ୍ୟସାଚୀ । ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗ- କାବ୍ୟକବିତା, ନାଟକ ଏକାଙ୍କିକା, ଶିଶୁ କିଶୋର ସାହିତ୍ୟ ଓ ଗଳ୍ପ ରଚନା ସହିତ ପ୍ରାଚୀନ ସାହିତ୍ୟ ସମ୍ପାଦନା ଓ ପ୍ରବନ୍ଧ- ସାହିତ୍ୟାଲୋଚନା ପୁଣି ତାଙ୍କର ପ୍ରତ୍ୟେକ ପଦକ୍ଷେପରେ ସଫଳତାର ସ୍ୱର ସ୍ପଷ୍ଟ । ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା କ୍ଷେତ୍ର ପରେ ଯଦି ଅନ୍ୟ କେଉଁ କ୍ଷେତ୍ରରେ ସେ ଅଜସ୍ରସ୍ରାବୀ ଥିଲେ ତାହା ହେଉଛି ତାଙ୍କର ଗଳ୍ପରଚନା । ସବୁ ଯୁବସ୍ରଷ୍ଟାମାନଙ୍କ ଭଳି କବିତାରୁ ହିଁ ସେ ତାଙ୍କର ପ୍ରଥମ ସାହିତ୍ୟସୃଷ୍ଟି ଆରମ୍ଭ କରିଥିଲେ । ଅବଶ୍ୟ ଆଦ୍ୟ କୈଶୋର କାଳରେ ନାଟକ ରଚନାରେ ହାତଦେଇ ସେ ସାହିତ୍ୟ ରଚନାର ପ୍ରଥମ ଆମୋଦ ଲାଭ କରିଥିଲେ । ମାତ୍ର ୧୯୫୩-୫୪ ରେ କଲିକତାରୁ ପ୍ରକାଶ ପାଉଥିବା ଗଳ୍ପଭିତ୍ତିକ ଅଗ୍ରଣୀ ସାହିତ୍ୟ ପତ୍ରିକା 'ଅଗ୍ରଣୀ'ର ସମ୍ପାଦନା ମଣ୍ଡଳୀରେ ଯୋଗଦେଲା ପରେ ଗଳ୍ପରଚନା ନିମନ୍ତେ ତାଙ୍କର ମନ ଢଳିଥିବା ଦେଖାଯାଏ ।

କୃଷ୍ଣଚରଣଙ୍କ ଗଳ୍ପଜଗତ ସମାଜର ବାସ୍ତବ ଚିତ୍ରକୁ ନେଇ ରୂପାୟିତ । ସମସାମୟିକ ଦୁନିଆର ଘଟଣାବଳୀକୁ ସେ ନିଜ ଗଳ୍ପମାନଙ୍କରେ ରୂପାୟିତ କରିଛନ୍ତି । ମାତ୍ର ଏ ରୂପାୟନ ଫଟୋଗ୍ରାଫିକ୍ ନୁହେଁ, ଗାଳ୍ପିକଙ୍କର ପ୍ରତ୍ୟକ୍ଷ ଅନୁଭୂତି ତାଙ୍କର ଚିନ୍ତାରାଜ୍ୟ ସଂସ୍ପର୍ଶରେ ଆସି ଏକ ଏକ ଅସ୍ତିବାଦୀ ପରିଣତିରେ ପରିବର୍ତ୍ତିତ ହୋଇଯାଇଛି । ଏଠାରେ ବିଶିଷ୍ଟ ସାମ୍ୟବାଦୀ ସମାଲୋଚକ ପ୍ଲେଖାନୋଭ ମନେପଡ଼ନ୍ତି । ତାଙ୍କ 'ଆର୍ଟ ଆଣ୍ଡ ସୋସିଆଲ ଲାଇଫ୍' ଗ୍ରନ୍ଥରେ ସେ ଉଲ୍ଲେଖ କରିଛନ୍ତି ଯେ, ସ୍ରଷ୍ଟାର ସ୍ଥିତି ଭିତର ନିଷ୍ପନ୍ନ ହେଉଥିବା ମନସ୍ତତ୍ତ୍ୱ ତା'ର କଳା-ପରିସ୍ଫୁଟନକୁ ନିୟନ୍ତ୍ରଣ କରିଥାଏ । ସ୍ରଷ୍ଟାର ମନସ୍ତତ୍ତ୍ୱ ଯେଉଁ ସ୍ଥିତିକୁ ଭିତ୍ତିକରି ସୃଷ୍ଟି ହୋଇଥାଏ, ସେହି ସ୍ଥିତି ସମକାଳୀନ ସମାଜର ଉତ୍ପାଦନ ଶକ୍ତି ଏବଂ ଉତ୍ପାଦନର ଦ୍ୱନ୍ଦ୍ୱାତ୍ମକ ସମ୍ବନ୍ଧରୁ ସୃଷ୍ଟି ହୋଇଥାଏ । ଯେଉଁମାନେ ଉପର

ଠାଉରିଆ ଭାବେ ସମାଜର ଘଟଣାବଳୀକୁ ଦେଖିଥାଆନ୍ତି, ସେମାନେ ଏହି ଦ୍ୱନ୍ଦ୍ୱକୁ ଅନୁଭବ କରିପାରି ନଥାନ୍ତି । ତେଣୁ ତାଙ୍କ ସୃଷ୍ଟିର ଆଭିମୁଖ୍ୟ କେବଳ ସ୍ଥୁଳ ଆନନ୍ଦ ପ୍ରଦାନରେ ସୀମିତ ରହିଥାଏ□ । ମାତ୍ର କୃଷ୍ଣଚରଣ ଥିଲେ ନିଆରା ଦ୍ରଷ୍ଟା । ଭଦ୍ରକ କଲେଜରେ ଛାତ୍ରଥିବା ସମୟରୁ ସେ ସାମ୍ୟବାଦୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ ଜୀବନର ବିଶେଷ କରି ଶାନ୍ତି ନିକେତନ ସେ ଉପାଧ୍ଯୁତ୍ତର ଶିକ୍ଷା ଲାଭବେଳେ ଏହି ସଂପୃକ୍ତି ଗାଢ଼ରୁ ଗାଢ଼ତର ହୋଇଥିଲା । ତେଣୁ ତାଙ୍କର ଅଧିକାଂଶ ଗଳ୍ପରୁ ସମକାଳୀନ ସମାଜର ବାସ୍ତବଚିତ୍ର ଅନୁଭବ କରିହୁଏ । ଏହିପ୍ରକାର ବାସ୍ତବତାକୁ ସେ 'ପ୍ରଗତିବାଦ' ବୋଲି ଚିହ୍ନିତ କରିଛନ୍ତି । ୧୯୭୦ ମସିହାରେ ପ୍ରକାଶିତ 'ପ୍ରଗତି ସାହିତ୍ୟ' ପୁସ୍ତକରେ ସେ ଉଲ୍ଲେଖ କରିଛନ୍ତି- "ମଣିଷ ବା ମଣିଷ ଜୀବନ ବୋଇଲେ ଖାଲି ଗୋଟିଏ ଏକକ ଶକ୍ତି ବା ସତ୍ତା ବୁଝାଏନା, ଏହା ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ଅଛି ସମାଜ ଓ ରାଷ୍ଟ୍ର ।××× ଆଜି ସମାଜର ବଡ଼ କଥା ହେଉଛି ସାମାଜିକ ବାସ୍ତବତା ××× ବାସ୍ତବତା ପ୍ରଗତି ସାହିତ୍ୟର ଏକ ବିଶେଷ ଲକ୍ଷଣ । ଜୀବନ, ସମାଜ ତଥା ରାଷ୍ଟ୍ରପତି ସଦାବେଳେ ବାସ୍ତବବାଦୀ ଦୃଷ୍ଟିକୋଣ ପ୍ରଗତି ସାହିତ୍ୟରେ ମିଳିଥାଏ । ନିରର୍ଥକ ସ୍ୱପ୍ନବିଳାସ, ଅସାର କଳ୍ପନା ପ୍ରବଣତାର ସ୍ଥାନ ଏଥିରେ ନାହିଁ ।"

'ପ୍ରଗତି ସାହିତ୍ୟ' କହିଲେ ମାର୍କ୍ସ-ଦର୍ଶନ ପ୍ରଭାବିତ ସାହିତ୍ୟିକ ଧାରା ଓ ବିଶ୍ଳେଷଣକୁ ବୁଝାଇଥାଏ । ଏହି ଦର୍ଶନ ଅନୁସାରେ ମଣିଷର ସମାଜ ସମ୍ପର୍କ ହେଉଛି ଉତ୍ପାଦନ ସମ୍ପର୍କ ବା production relation । ମଣିଷ ନିଜର ଜୀବନ ନିର୍ବାହ ନିମନ୍ତେ ଉତ୍ପାଦନ କରେ । ମଣିଷର ସମାଜ ସମ୍ପର୍କ ତତ୍କାଳୀନ ଉତ୍ପାଦନ ପ୍ରଣାଳୀରୁ ଜନ୍ମ ନେଇଥାଏ । ମଣିଷର ଏହି ସମାଜସମ୍ପର୍କ ହେଉଛି 'ସଂସ୍କୃତି' । ଏହି ତତ୍କାଳୀନ ଉତ୍ପାଦନ ପ୍ରଣାଳୀ ମଣିଷର ସାଂସ୍କୃତିକ ଓ ଭାବଗତ ଜଗତ ସହିତ ମନନଶୀଳତାକୁ ନିୟନ୍ତ୍ରଣ କରିଥାଏ । ଯେତେବେଳେ ସମାଜର ଉତ୍ପାଦନ ପ୍ରଣାଳୀ ବଦଳିଯାଏ, ସେତେବେଳେ ତା'ର ସମାଜ-ସମ୍ପର୍କ ବା 'ସଂସ୍କୃତି'ର ରୂପ ବଦଳେ, ବଦଳେ ମୂଲ୍ୟବୋଧ, ଭାବନାର ଧାରା ଓ ମନନଶୀଳତା । ଏହି ପରିବର୍ତ୍ତନର କାରଣ ହେଉଛି ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ (Dialectical Materialism) । ଦାର୍ଶନିକ ହେଗେଲ ପ୍ରଥମେ ଦ୍ୱନ୍ଦ୍ୱମୂଳକ-ଆଦର୍ଶବାଦ (Dialectical Idealism) କଥା କହିଥିଲେ । ତାଙ୍କ ମତରେ ମଣିଷ ମନ ଭିତରେ ଅହରହ ପରସ୍ପର ବିରୋଧୀ ଚିନ୍ତା ଓ ଯୁକ୍ତିର ଦ୍ୱନ୍ଦ୍ୱ ଲାଗିରହିଛି । ଏହି ଦ୍ୱନ୍ଦ୍ୱର ଫଳହେଉଛି ନୂତନ ଚିନ୍ତା ସୃଷ୍ଟି । ମଣିଷ ମନ ଭିତରେ ଅନୁକ୍ଷଣ ଏ ଭଳି ନୂତନ ଚିନ୍ତା ଓ ଭାବନା ସୃଷ୍ଟି ହେଉଥାଏ । ମାର୍କ୍ସ ଏହି କଥାକୁ ବସ୍ତୁବାଦ ସହିତ ସଂପୃକ୍ତ କରି ସମାଜ ବିକାଶର ଧାରା ଦର୍ଶାଇଲେ । ତାଙ୍କ ମତରେ ମଣିଷ ପ୍ରକୃତିର ଦାସ ନହୋଇ ତାହାକୁ ବିଜୟ କରିବା ପାଇଁ ଅବିରତ

ଉଦ୍ୟମ କରୁଥାଏ । ମଣିଷ ସଭ୍ୟତା ଓ ସଂସ୍କୃତିର ମୂଳପ୍ରେରଣା ହେଉଛି ପ୍ରକୃତି ଦାସତ୍ୱର ନିଜକୁ ମୁକ୍ତ କରିବାର ପ୍ରୟାସ । ସଂସ୍କୃତିକୁ ତେଣୁ ପ୍ରକୃତି କବଳରୁ ମଣିଷର ମୁକ୍ତି ଓ ସ୍ୱାଧୀନତା ଲାଭର ଉଦ୍ୟମ ବୋଲି କୁହାଯାଇପାରେ । ଏଭଳି ମୁକ୍ତି ପାଇଁ ପ୍ରଚେଷ୍ଟା ସବୁବେଳେ ଚାଲିଛି । ତେଣୁ ସଂସ୍କୃତି ସବୁବେଳେ ବଦଳି ଚାଲିଛି । ମଣିଷ ଅନ୍ୟ ଜୀବମାନଙ୍କ ଭଳି ପ୍ରକୃତିର ପରାଧୀନତା ସ୍ୱୀକାର କରେ ନାହିଁ । ସେ ପ୍ରତିନିୟତ ଜୀବିକାର୍ଜନର ନୂତନ ଓ ପ୍ରଗତ୍ୟାତ୍ମକ ଉପାୟ ସୃଷ୍ଟି କରିଚାଲୁଥାଏ । ତେଣୁ ଅସ୍ପଷ୍ଟ ଭାବେ ହେଲେ ବି ଜୀବିକାର୍ଜନର ଉପାୟ ସବୁବେଳେ ପରିବର୍ତ୍ତିତ ହୋଇଚାଲିଥାଏ । ପୁଣି ଜୀବିକାର୍ଜନ ପାଇଁ ପ୍ରକୃତି ଉପରେ ବିଜୟ ହାସଲ ନିମନ୍ତେ ଏହି ସଂଗ୍ରାମର ଧାରା ମ୍ଧ ବଦଳି ବଦଳି ଚାଲିଥାଏ । ଫଳରେ ସଂସ୍କୃତିର ବିବର୍ତ୍ତନ ଘଟୁଥାଏ ।

ଏହି ଧାରାରେ ଉତ୍ପାଦନ ପ୍ରଣାଳୀର ପରିବର୍ତ୍ତନ ଘଟାଇ ମଣିଷ ନିଜ ଜୀବନଧାରଣ ନିମନ୍ତେ ଆବଶ୍ୟକୀୟ ବସ୍ତୁର ସୁଲଭ ପ୍ରାପ୍ତି ପାଇଁ ଉଦ୍ୟମ କରି ଚାଲିଛି । ସଚେତନ ଭାବରେ ନ ହେଲେ ମଧ୍ୟ ଏହି ଉଦ୍ୟମ ଅହରହ ଚାଲିଛି । ଜୀବନଯାତ୍ରା ପ୍ରଣାଳୀକୁ ସୁଗମ କରିବାକୁ, ପ୍ରାଣଧାରଣ ପ୍ରକ୍ରିୟାକୁ ସହଜ କରିବାକୁ ମଣିଷକୁ ପ୍ରକୃତି ସହିତ ଅବିରତ ସଂଗ୍ରାମ କରିବାକୁ ପଡୁଛି । ସେ ପ୍ରକୃତି ଉପରେ ଯେତେ ବିଜୟଲାଭ କରୁଛି, ତା' ଜୀବନଧାରଣ ପ୍ରଣାଳୀର ସେତିକି ପରିବର୍ତ୍ତନ ଘଟୁଛି, ସଂସ୍କୃତିର କ୍ରମ ବିବର୍ତ୍ତନ ଘଟୁଛି । ଏହିଭଳି ଭାବେ ଦିନେ ପଶୁମାନଙ୍କ ଭଳି ପ୍ରକୃତିକୋଳରୁ ଖାଦ୍ୟ ସଂଗ୍ରହ କରୁଥିବା ମଣିଷ ଶିକାରି, କୃଷିଜୀବୀ ଆଦି ଅବସ୍ଥା ଦେଇ କ୍ରମବିକଶିତ ପଥରେ ଆଗେଇ ଚାଲିଛି, ସମାଜତତ୍ତ୍ୱ ଦୃଷ୍ଟିରୁ ବିଚାର କଲେ ମଣିଷ ପ୍ରାଚୀନ ଯୁଗ, ନୂତନ ପ୍ରସ୍ତର ଯୁଗ, ପଶୁଚାରଣ ଯୁଗ ଓ କୃଷି ଯୁଗର ସମାଜ ବ୍ୟବସ୍ଥା ଅତିକ୍ରମ କରି ଦାସ ସମାଜ, ସାମନ୍ତ ତାନ୍ତ୍ରିକ ସମାଜ ଦେଇ ପୁଞ୍ଜିବାଦୀ ସମାଜରେ ପହଞ୍ଚିଛି ।

ଗୋଟିଏ ସମାଜ ବ୍ୟବସ୍ଥାରୁ ଅନ୍ୟ ଏକ ସମାଜ ବ୍ୟବସ୍ଥାରେ ଉପନୀତ ହେବା ହିଁ ହେଉଛି ପ୍ରଗତିର ନିଦର୍ଶନ । ତେଣୁ ପ୍ରଗତିର ରଥଚକ୍ର ଅବିରତ ଗଡ଼ିଚାଲିଛି । ସମ୍ପ୍ରତି ଆମେ ପ୍ରତ୍ୟକ୍ଷ କରୁଥିବା ପୁଞ୍ଜିବାଦୀ ସମାଜର ସୃଷ୍ଟି ସମ୍ପର୍କରେ ସୂଚନା ଦେଇ ଡକ୍ଟର ବେହେରା କହିଛନ୍ତି- "ଦିନେ ସମାଜର ସାମନ୍ତବାଦୀ, ସୌଦାଗରୀ ସଭ୍ୟତାର ନିପୀଡ଼ନରୁ ମଣିଷ ଜାତିକୁ ଉଦ୍ଧାର କରିବାପାଇଁ ପ୍ରଗତିବାଦୀ ରୁଷୋ, ଭଲ୍‌ଟେୟାର ମୁକ୍ତି, ସାମ୍ୟ ଓ ବନ୍ଧୁତ୍ୱର ଆହ୍ୱାନ ଦେଇଥିଲେ । ଫଳରେ ଫ୍ରାନ୍ସରେ ହେଲା ରାଷ୍ଟ୍ରବିପ୍ଳବ ଏବଂ ଏହି ବିପ୍ଳବ ପରେ ପରେ ସୌଦାଗରୀ ସଭ୍ୟତାର ଧ୍ୱଂସ ସ୍ତୂପ ଉପରେ ମଥା- ଟେକିଲା- ଏକ ବିଶ୍ୱବ୍ୟାପି ବୁର୍ଜୋୟା ସଭ୍ୟତା । ଏହି ସଭ୍ୟତାର ନାନା କୁଫଳ ଆମେ ବର୍ତ୍ତମାନ ଅଙ୍ଗେ ନିଭାଇଛୁ ।" (ପ୍ରଗତିସାହିତ୍ୟ, ୧୯୭୦ପୃ-୧୩)

ୟୁରୋପରେ ଶିଳ୍ପ-ବିପ୍ଳବ ପରେ ପରେ ହିଁ ସମାଜର ସାମନ୍ତବାଦୀ-ଗଠନଶୈଳୀ (feudal-structure) ର ବିଘଟନ ଘଟି ଉଚ୍ଚବର୍ଗ, ମଧ୍ୟବର୍ଗ ଓ ନିମ୍ନବର୍ଗ ଏଭଳି ତିନୋଟି ଶ୍ରେଣୀ ସୃଷ୍ଟି ହେଲା । ଏହି ପୁଞ୍ଜିବାଦୀ-ବୁର୍ଜୋୟା ସମାଜ ବ୍ୟବସ୍ଥା ଗଢ଼ି ଉଠିବାର ଦୁଇଟି କାରଣ ରହିଛି । ପ୍ରଥମଟି ହେଉଛି ୟୁରୋପର ଶିଳ୍ପ ବିପ୍ଳବ, ଦ୍ୱିତୀୟଟି ହେଉଛି ଆମେରିକା ଆବିଷ୍କାର । ଶିଳ୍ପ-ବିପ୍ଳବ ଫଳରେ ଉତ୍ପାଦନର ହାର ବହୁଗୁଣିତ ହେଲା । ବାଣିଜ୍ୟ ବ୍ୟବସାୟର ପ୍ରସାର ଘଟିଲା ଫଳରେ ଶିଳ୍ପପତି ଓ ବ୍ୟବସାୟୀଙ୍କ ହାତକୁ ପ୍ରଚୁର ମୁନାଫା ଆସିଲା । ଆମେରିକା ଆବିଷ୍କାର ପରେ ପେରୁରୁ ପ୍ରଚୁର ସୁନା ଲୁଣ୍ଠନ କରି ୟୁରୋପର ବଣିକମାନେ ମାଲାମାଲ ହୋଇଗଲେ । ଶିଳ୍ପପତି ଓ ବ୍ୟବସାୟୀମାନଙ୍କ ମୁନାଫା ଏବଂ ଲୁଣ୍ଠନକାରୀ ବଣିକମାନଙ୍କ ସହଜଲବ୍ଧ ଧନ ବଜାରକୁ ନିୟନ୍ତ୍ରିତ କଲା । ଏ ଯାବତ୍ ସମାଜର ମୁଖ୍ୟ ବୋଲି ପରିଗଣିତ ସାମନ୍ତ-ଭୂମ୍ୟାଧିକାରୀମାନଙ୍କ ଗୁରୁତ୍ୱ କମିଗଲା । ସମାଜରେ ନୂତନ ପୁଞ୍ଜିପତି ଧନିକମାନଙ୍କର ଗୁରୁତ୍ୱ ବୃଦ୍ଧି ପାଇଲା । ସେମାନେ କ୍ରମେ କ୍ରମେ ସାମନ୍ତବାଦୀ ସମାଜବ୍ୟବସ୍ଥାକୁ ଧ୍ୱସ୍ତ କରିଦେଲେ । ଏହା ମଧ୍ୟ ପୁଞ୍ଜିବାଦର ବିକାଶ ପାଇଁ ଆବଶ୍ୟକ ଥିଲା । କଳକାରଖାନା ପରିଚାଳନା ଏବଂ ନୂତନ ବାଣିଜ୍ୟ ବ୍ୟବସାୟ ପାଇଁ ନୂତନ ଉତ୍ପାଦନ ଶକ୍ତି ଦରକାର ଥିଲା । ମାର୍କ୍ସଙ୍କ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ନିୟମାନୁସାରେ ଏହି ନୂତନ ଉତ୍ପାଦନ ଶକ୍ତି ତତ୍‌ପୂର୍ବବର୍ତ୍ତୀ ସମାନ୍ତ-ଭୌମିକ ଉତ୍ପାଦନ ଶକ୍ତିକୁ ସ୍ଥାନଚ୍ୟୁତ କରିବା ଏକ ଆଲଂଘ୍ୟ ଆବଶ୍ୟକତା ଥିଲା । ଏହି ସ୍ଥାନଚ୍ୟୁତି ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲା ଇଂଲଣ୍ଡରେ କମ୍‌ୱେଲଙ୍କ ନେତୃତ୍ୱରେ ସଂଘଟିତ ଫରାସୀ ବିପ୍ଳବ । ଫଳରେ ପୂର୍ବର ସାମନ୍ତ-ଦାସ ସମ୍ପର୍କ ବଦଳରେ ସମାଜରେ ସୃଷ୍ଟି ହେଲା ମାଲିକ-ଶ୍ରମିକ; ଥିଲାବାଲା- ନଥିଲାବାଲା (Haves & Havenots) ଗୋଷ୍ଠୀ । ଥିଲା ବାଲା ମଧ୍ୟ ଦୁଇଭାଗରେ ବିଭକ୍ତ । ସେମାନଙ୍କ ମ୍ନରୁ ପ୍ରଥମଗୋଷ୍ଠୀ ହେଉଛନ୍ତି ପୁଞ୍ଜିପତି, ଦୁଇଭାଗରେ ବିଭକ୍ତ । ସେମାନଙ୍କ ମଧ୍ୟରୁ ପ୍ରଥମଗୋଷ୍ଠୀ ହେଉଛନ୍ତି ପୁଞ୍ଜିପତି, ସେମାନେ ବିଭିନ୍ନ ଉପାୟରେ ପୁଞ୍ଜି ସଂଗ୍ରହ କରି ଶିଳ୍ପ-ପ୍ରତିଷ୍ଠା ଓ ବାଣିଜ୍ୟ ପାଇଁ ଏହି ପୁଞ୍ଜିକୁ ବ୍ୟବହାର କରିଥାନ୍ତି । ପୁଞ୍ଜି ଆହୁରି ପୁଞ୍ଜି ସୃଷ୍ଟି କରେ, ଦ୍ୱିତୀୟ ଗୋଷ୍ଠୀ ହେଉଛନ୍ତି ବିନା ପୁଞ୍ଜିରେ ମୁନାଫା ସୃଷ୍ଟି କରୁଥିବା ଗୋଷ୍ଠୀ । ସମାଜର ଅଧିକାଂଶ ବୁଦ୍ଧିଜୀବୀ ହେଉଛନ୍ତି ଏହି ଗୋଷ୍ଠୀର । ବୁଦ୍ଧିବଳରେ ପୁଞ୍ଜିପତିମାନଙ୍କୁ ସହାୟତା ଦେଇ ଏମାନେ ଶ୍ରମିକ ଶୋଷଣ ତ୍ୱରକ (catalyst) ସାଜନ୍ତି । ନିଜର ସହଜ ଜୀବନ ନିର୍ବାହ ପାଇଁ ଆବଶ୍ୟକୀୟ ଅର୍ଥ ଏମାନଙ୍କ ହାତକୁ ଆସେ । ଏମାନେ ହେଉଛନ୍ତି ବୁର୍ଜୋୟା । ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ ଏହି ପୁଞ୍ଜିପତି-ବୁର୍ଜୋୟା-ଗୋଷ୍ଠୀ ସାଧାରଣ ଲୋକ ବା ନଥିଲାବାଲାଙ୍କ ଶ୍ରମମୂଲ୍ୟକୁ ଲୁଣ୍ଠନ କରିଥାନ୍ତି ।

ଶିଳ୍ପବିପ୍ଲବ ଫଳରେ ଉତ୍ପାଦନ କ୍ଷେତ୍ରରେ ଦ୍ରୁତ ପ୍ରଗତି ଘଟିଲା । ଯନ୍ତ୍ର ବ୍ୟବହାର କରି କମ୍ ସମୟରେ, କମ୍ ପରିଶ୍ରମରେ ଏବଂ ଆନୁପାତିକ ଭାବେ କମ୍‌ବ୍ୟୟରେ ଅଧିକ ଜିନିଷ ଉତ୍ପାଦିତ ହେଲା । ସାମନ୍ତତାନ୍ତ୍ରିକ ସମାଜରେ ପ୍ରଚଳିତ କୁଟୀର ବା ହସ୍ତଶିଳ୍ପ ଯନ୍ତ୍ରଶିଳ୍ପର ନୂତନ ଉତ୍ପାଦିକା ଶକ୍ତି ସହିତ ଟକ୍କର ଦେଇ ନ ପାରି କ୍ରମେ କ୍ରମେ ଅପସରି ଯିବାକୁ ବାଧ ହେଲା । ହସ୍ତଶିଳ୍ପର ଶିଳ୍ପୀ ଓ କର୍ମୀମାନେ ବାଧ ହୋଇ ନୂତନ ବୃହତ ଶିଳ୍ପ କାରଖାନାମାନଙ୍କରେ ଶ୍ରମିକଭାବେ କାମ କରିବାକୁ ଲାଗିଲେ । ଏହି ବ୍ୟବସ୍ଥାରେ ଯନ୍ତ୍ର ରହିଲା ବ୍ୟକ୍ତି-ମାଲିକ-ହାତରେ କିନ୍ତୁ କାରଖାନାର ଦ୍ରବ୍ୟ ତିଆରି ହେଲା ଗୋଷ୍ଠୀଶ୍ରମ (Socialised labour) ଦ୍ୱାରା । କାରଖାନା ଉତ୍ପାଦିତ ଦ୍ରବ୍ୟ ଲବ୍ଧ ଅର୍ଥରୁ ଖୁବ୍ କମ୍‌ଯାଏ ଶ୍ରମିକ ନିକଟକୁ, ସିଂହ ଭାଗ ଯାଏ ମାଲିକପାଖକୁ । ପ୍ରାଥମିକ ସ୍ତରରେ ଶ୍ରମିକ ନିଜର ପୂର୍ବ ରୋଜଗାରଠାରୁ କାରଖାନାଲବ୍ଧ ରୋଜ ଅଧିକ ହୋଇଥିବା ଦେଖି ଖୁସି ହୁଏ । ଏହି ଅର୍ଥରୁ ତା'ର ମୌଳିକ ଆବଶ୍ୟକତା ନିମନ୍ତେ ଦରକାର ହେଉଥିବା ଅର୍ଥ ବାଦ୍ ଗଲାପରେ କିଛି ଉଦ୍‌ବୃତ୍ତ ଅର୍ଥ ରହିଯାଏ । ତେଣୁ ମୌଳିକ ଖର୍ଚ୍ଚ ପରେ ତା'ର ପାରିବାରିକ ଖର୍ଚ୍ଚରେ କିଛି ପରିଚର୍ଯ୍ୟାତ୍ମକ ଓ ବିନୋଦାତ୍ମକ ଖର୍ଚ୍ଚ ଯୋଗହୁଏ । କ୍ରମେ ଏହି ଦ୍ୱିତୀୟ ଧରଣର ଖର୍ଚ୍ଚ ବଢ଼ି ବଢ଼ି ଯାଏ । ଏଣେ କାରଖାନା ଲବ୍ଧ ମୋଟ ଅର୍ଥ ବଜାର ଉପରେ ପ୍ରଭାବ ପକାଏ । ତେଣୁ ଉଭୟ ନିତ୍ୟବ୍ୟବହାର୍ଯ୍ୟ ଓ ସୌଖିନ ପଦାର୍ଥର ଦର ବଢ଼ିଚାଲେ । ଏହି ପରିପ୍ରେକ୍ଷୀରେ ଶ୍ରମିକର ଅଧିକ ରୋଜଗାର କରିବା ଆବଶ୍ୟକ ହୁଏ । ସାଧାରଣତଃ ଶରୀର ସହ୍ୟ କରିପାରୁ ନଥିବା ଅଧିକ ପରିଶ୍ରମ ପାଇଁ ତା'କୁ ନିଶାଭଳି ଉତ୍ତେଜକ ପଦାର୍ଥର ଆଶ୍ରା ଗ୍ରହଣ କରିବାକୁ ହୁଏ । ପୁଣି କ୍ରମାଗତ ସ୍ୱାସ୍ଥ୍ୟର ଅବନତି ଘଟି ତା'ର ଉତ୍ପାଦନ କ୍ଷମତା କମି କମି ଯାଇଥାଏ । ଏହା ଶ୍ରମଶୋଷଣର ଜାଲକୁ ଆହୁରି ଟାଣ କରେ । କାରଖାନାର ପ୍ରକୃତ ଆୟରୁ ଶ୍ରମିକକୁ ଦିଆଯାଇଥିବା ଅର୍ଥ ବାଦ ଦେଲେ ଯାହା ବଳି ପଡ଼େ ମାର୍କ୍ସଙ୍କ ଭାଷାରେ ତାହା ହେଉଛି ଉଦ୍‌ବୃତ୍ତ ଶ୍ରମମୂଲ୍ୟ । ଏହି ଉଦ୍‌ବୃତ୍ତ ଶ୍ରମମୂଲ୍ୟ ବହୁ ସମୟରେ ପୁଣି ପୁଞ୍ଜି ହୋଇ ଅଧିକ କଳକାରଖାନା ସ୍ଥାପନ ଓ ଅଧିକ ଶ୍ରମିକ ସୃଷ୍ଟି କରିବା ନିମନ୍ତେ ବ୍ୟୟିତ ହୁଏ । ମୋଟାମୋଟି ଏହା ହିଁ ହେଉଛି ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା । ଏହି ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା ଫଳରେ ପୂର୍ବ ପ୍ରଚଳିତ ସାମନ୍ତବାଦୀ ସମାଜରେ ପ୍ରଚଳିତ ବ୍ୟବସ୍ଥାର କ୍ରମ ବିଘଟନ ଘଟି ନୂତନ ସଙ୍କଟଜନକ ସାମାଜିକ ବ୍ୟବସ୍ଥାର ଆବିର୍ଭାବ ଘଟେ ।

ସମସାମୟିକ ସମାଜରେ ପରିଦୃଷ୍ଟ ଏଭଳି ସାମାଜିକ ବିଘଟନର ଚିତ୍ର ସମାଜ ସଚେତନ କଳାଶିଳ୍ପୀ କୃଷ୍ଣଚରଣଙ୍କ ଆଖିରୁ ଆଡ଼େଇ ଯାଇନାହିଁ, ତାଙ୍କର ବିଭିନ୍ନ ଗଳ୍ପରେ ପୁଞ୍ଜିବାଦୀ ସମାଜ ଅବସ୍ଥାର ବିଭିନ୍ନ ବିଘଟିତ ରୂପ ପ୍ରକାଶ ପାଇଛି ।

ପୁଞ୍ଜିବାଦୀ ସଂସ୍କୃତି ପୂର୍ବପ୍ରଚଳିତ ସାମନ୍ତବାଦୀ ସଂସ୍କୃତିର ଏକ ବିଶିଷ୍ଟ ବ୍ୟବସ୍ଥା 'ପିତୃକୈନ୍ଦ୍ରିକ ଭାବୁକତା'କୁ ନିର୍ମମଭାବେ ନଷ୍ଟ କରିଛି । ଫଳରେ ବହୁକୁଟୁମ୍ବୀ ପରିବାର ଭାଙ୍ଗିଗୁଡ଼ି ଐକ-କୈନ୍ଦ୍ରିକ ପରିବାର ଗଢ଼ି ଉଠିଛି । ପୁଅମାନେ ନିଜ ଜନ୍ମକଲା ବାପ-ମା'ଙ୍କୁ ପଚାରୁନାହାନ୍ତି । ଧନ ସେମାନଙ୍କ ପାଇଁ ମୁଖ୍ୟ ଆକର୍ଷଣ ପାଲଟିଯାଇଛି । ରୋଜଗାର କ୍ଷମତା ହରାଇଥିବା ବାପ ମା'ମାନେ ସେମାନଙ୍କ ଉପରେ ବୋଝ ମନେ ହେଉଛନ୍ତି । ନିଜ ସ୍ତ୍ରୀ ଓ ପିଲମାନଙ୍କ ଭବିଷ୍ୟତ ସୁଖସୁବିଧା ଚିନ୍ତାକରି ସେମାନେ ନୂଆ ଛୋଟ ପରିବାର ଗଢ଼ିବାକୁ ଚାହାନ୍ତି । ଏହି ବିବର୍ତ୍ତିତ ମୂଲ୍ୟବୋଧ 'କନକ' ଗଳ୍ପରେ ପ୍ରକାଶ ପାଇଛି । ସାମନ୍ତବାଦୀ ପରିବାରର ମୁଖିଆର କର୍ତ୍ତୃତ୍ୱ ଅବିସମ୍ବାଦିତ ଥିଲା । ତେଣୁ କନକର ଚାଲିଚଳଣକୁ ଶାଶୂବୁଢ଼ୀ ନିୟନ୍ତ୍ରଣ କରିଛି । ମାତ୍ର ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ ପରିବାର ମୁଖିଆଙ୍କ ଏ କର୍ତ୍ତୃତ୍ୱ ମାନିନେବାକୁ କନକ ପ୍ରସ୍ତୁତ ନୁହେଁ, ତେଣୁ ସେ ଶାଶୂଙ୍କ ବିରୁଦ୍ଧରେ ଅଭିଯୋଗ କରି ପ୍ରବାସୀ ସ୍ୱାମୀଙ୍କ ନିକଟକୁ ପତ୍ର ଲେଖେ । ଶାଶୂର ଅତ୍ୟାଚାର ଓ କଟକଣା ପରିପ୍ରେକ୍ଷରେ ପୁଞ୍ଜିବାଦୀ ସମାଜ ବ୍ୟବସ୍ଥା ଭିତରେ ଥିବା ପାଠକ କନକ ପ୍ରତି ସହାନୁଭୂତିଶୀଳ ହେବା ସ୍ୱାଭାବିକ, ପୁଅପାଖକୁ ବୋହୂର ପତ୍ର ବିଷୟ ଶାଶୂ ଜାଣେ ନାହିଁ । ତେଣୁ ବିନା ପୂର୍ବଖବରରେ ପ୍ରବାସରୁ ଫେରି ଆସିଥିବା ପୁଅକୁ ମାଆର ସରାଗଭରା ପ୍ରଶ୍ନ- 'କିରେ ଧନିଆ ହାଲ୍ କ'ଣ ? ଭାଷା ନାହିଁ କି ପତର ନାହିଁ, ଇମିତି କ'ଣ ଖାଲି ଖାଲି ଅଇଲୁ ଭାରି ?' ଏଥିରେ ପୁଅର ଅଭାବ ଅସୁବିଧା ସମ୍ପର୍କରେ ମାଆର ଆଶଙ୍କା ପ୍ରକାଶ ପାଇଛି । ମାତ୍ର ଧନିଆ ମାଆ ମନର ଏ ଉଦ୍‌ଗତ ଭାବକୁ ବୁଝିପାରିନାହିଁ । ମାଆର ପ୍ରଶ୍ନ ଶୁଣି ସେ ପାଟି କରି ଉଠିଲା- "ଆଉ କ'ଣ ଜୀବନଟା ଯାକ ଖଟି ଖଟି ମୁଁ ତେଣେ ମରୁଥାନ୍ତି, ଆଉ ତୁ ଏଣେ ମଉଜରେ ଖାଇପିଇ ଘରେ ବସି ବୋହୂ ଉପରେ ଛାଞ୍ଚୁଣୀ ମାଡ଼ ଚଳାଇ ଥାନ୍ତୁ ?" ପାଠକ କନକ ଉପରେ ଅନୁକମ୍ପାଶୀଳ ହୋଇ ଧନିଆର ଏ ମନ୍ତବ୍ୟକୁ ହାଲୁକା ଭାବେ ନେଇପାରେ, କାରଣ ସେ ସ୍ୱୟଂ ଏହି ପୁଞ୍ଜିବାଦୀ ସଂସ୍କୃତିର ଭାବାବେଗ ମଧ୍ୟରେ ଆଛନ୍ନ । ମାତ୍ର ଅତୀତରେ ପୁଅକୁ ପାଳିପୋଷି ବଡ଼ କରିବା ପାଇଁ ମାଆର ତ୍ୟାଗ- "ଚାରିବରଷ ବେଳୁ ବାପ ମରିଗଲା, ପର ଘରେ ମୂଲ ଲାଗି ସେ ଧନିଆକୁ ମଣିଷ କରିଛି" ପିରପ୍ରେକ୍ଷୀରେ ଧନିଆର ରୁକ୍ଷ ଉତ୍ତର ଏକ କ୍ରମଭଙ୍ଗୁର ସମାଜ ବ୍ୟବସ୍ଥାର ଯଥାର୍ଥ ଚିତ୍ର ଦେଇଥାଏ । ଅସହାୟା ମାଆକୁ ଧନିଆ ନିଜ ପରିବାରରୁ ଅଲଗା କରିଦେବାରୁ ତା'ର ବିକଳ କ୍ରନ୍ଦନ- "ହଇରେ ଧନିଆ, ତୋତେ ମଣିଷ କଲା କିଏ ? ଦିନେ ତ ତୋ ମୁହଁରୁ ଇମିତି କଥା ଶୁଣି ନଥିଲି । ଆଜି ଆଖି ଫିଟାଇଲାକୁ- ଦି'ହାତ ହେଲାକୁ..." । ବୁଢ଼ୀ ମନର ଏ ପ୍ରଶ୍ନ କେବଳ ଧନିଆକୁ ନୁହେଁ, ପୁଞ୍ଜିବାଦୀ ସମାଜରେ ସୃଷ୍ଟି ହେଉଥିବା ବିବର୍ତ୍ତିତ ବ୍ୟବସ୍ଥା

ପ୍ରତି ଏକ ପ୍ରଶ୍ନ । ବୃଢ଼ୀର ବେଦନା ଭରା ଆକୁତି- 'ମୋ ବାପଟା, ମୋ ଧନଟା, ଯା ହେବାର ହେଲା ଏବେ ମୋ କଥା ମାନ । ରାଗ କରୁଛୁ କା' ଉପରେ ? ମୁଁ ପରା ତୋ ଜନମ କଲା ମା'...' ବିବର୍ତ୍ତିତ ସମାଜ ଆଖିରେ ମୂଲ୍ୟହୀନ । ତଥାପି ମାତ୍ର ପୁଅର ଶୁଭକାମନା କରେ- 'ହେ ଭଗବାନ, ଧନିଆକୁ ମୋର ସୁବୁଦ୍ଧି ଦିଅ, ତା'ର ମଙ୍ଗ କର' ଏ ହେଉଛି ଜନନୀ ପ୍ରାଣର ଏକ ଶାଶ୍ୱତ ଆବେଗ ।

ଉପରୋକ୍ତ ଗଳ୍ପରେ ଧନ ରୋଜଗାର ପାଇଁ ଧନିଆର ବିଦେଶ ଯାତ୍ରା ମଧ୍ୟ ପୁଞ୍ଜିବାଦୀ ବ୍ୟବସ୍ଥାର ଫଳଶ୍ରୁତି, ସାମନ୍ତବାଦୀ ବ୍ୟବସ୍ଥାରେ 'ଭୂମି' ମୌଳିକ ଏକକ ହୋଇଥିବାରୁ ଏହାକୁ କେନ୍ଦ୍ର କରି ମୁଖ୍ୟତଃ ଗ୍ରାମଗୁଡ଼ିକ ଗଢ଼ିଉଠିଥିଲା । ପୁଞ୍ଜିବାଦୀ ବ୍ୟବସ୍ଥାରେ ନୂଆନୂଆ ଶିଳ୍ପକାରଖାନା ଓ ବାଣିଜ୍ୟକେନ୍ଦ୍ର ପ୍ରତିଷ୍ଠା ହେବା ଫଳରେ ସେଗୁଡ଼ିକୁ କେନ୍ଦ୍ରକରି ନୂଆ ନୂଆ ସହରମାନ ଗଢ଼ିଉଠିଲା । ଏଣେ ଯନ୍ତ୍ରଭିତ୍ତିକ ଉତ୍ପାଦନ ସହିତ ଟକ୍କର ଦେଇ ନପାରି ଗ୍ରାମ୍ୟ-କୁଟୀର ଶିଳ୍ପର ବିଲୟ ଘଟିଲା । ଗ୍ରାମ୍ୟ କୃଷି ବ୍ୟବସ୍ଥା ସହିତ ଏହି ଗ୍ରାମ୍ୟ କୁଟୀରଶିଳ୍ପର ଏକ ପରୋକ୍ଷ ସମ୍ପର୍କ ଥାଏ । ଗ୍ରାମ୍ୟ କୁଟୀର ଶିଳ୍ପର ବିଲୟ କୃଷି ଉପରେ ମଧ୍ୟ ପ୍ରଭାବ ପକାଇଲା । ବିଶେଷତଃ ଶିଳ୍ପ-ରୋଜଗାର ତୁଳନାରେ କୃଷିକ୍ଷେତ୍ରରୁ ରୋଜଗାର ଯଥେଷ୍ଟ କମ୍ ହୋଇଯିବାରୁ ଗାଁର ଶିଳ୍ପୀକୁଳ, ଶିଳ୍ପ ଓ କୃଷି ଶ୍ରମିକ ଏବଂ କ୍ଷୁଦ୍ର ଓ ନାମମାତ୍ର ଚାଷୀମାନେ ଅଧିକ ରୋଜଗାର ଆଶାରେ ଗାଁ ଛାଡ଼ି ସହର ଅଭିମୁଖୀ ହେଲେ । ଏହି ବ୍ୟବସ୍ଥା ଅନୁପ୍ରେରିତ ହୋଇ 'କନକ' ଗଳ୍ପର ଧନିଆ, 'ସାବିତ୍ରୀ' ଗଳ୍ପର ସୁରେନ୍ଦ୍ର ବରାଳ, 'ମଇଳାକୁଣ୍ଡ' ଗଳ୍ପର ଶ୍ୟାମ ମୁଣ୍ଡା ଓ ରାଇମନୀ, 'ଆପଣା ହସ୍ତେ ଜିହ୍ୱାଛେଦି' ଗଳ୍ପର କାଳିଆ, 'ଗାନ୍ଧିଙ୍କ ଗଙ୍ଗାପ୍ରାପ୍ତି' ଗଳ୍ପର ମଧୁ, 'ଛିନ୍ନମୂଳ'ର ଦୀନା ମହାନ୍ତି ପରିବାର, 'ତାଳୁଅ ଓ କାନିସିରି'ରେ ଶଙ୍କର ପ୍ରଭୃତି ସମସ୍ତେ ଅଧିକ ରୋଜଗାର ନିମନ୍ତେ ସହରାଭିମୁଖୀ ହୋଇଛନ୍ତି । ଏହି ପୁଞ୍ଜିବାଦୀ ସଭ୍ୟତାର ସହର ପ୍ରତି ଲୋକଙ୍କ ଦୂରନ୍ତି ଆକର୍ଷଣର କାରଣ ଦର୍ଶାଇବାକୁ ଯାଇ 'ମଇଳାକୁଣ୍ଡ' ଗଳ୍ପରେ ଗାଳ୍ପିକ ସୂଚନା ଦେଇଛନ୍ତି- 'ଆପଣତ ଜାଣନ୍ତି ସହରରେ ଟଙ୍କାର କି ଭୀଷଣ ସ୍ରୋତ ଛୁଟି ଚାଲିଛି । ସେଇ ସ୍ରୋତର ଆବର୍ତ୍ତ ମଧ୍ୟରେ ପଡ଼ି ମୁହୂର୍ତ୍ତକ ମଧ୍ୟରେ ଶ୍ୟାମ ମୁଣ୍ଡାର ଶାନ୍ତ ସୁନ୍ଦର ପରିବାରଟି କୁଆଡ଼େ ଛିନ୍ନଭିନ୍ନ ହୋଇଗଲା ।" 'ଛିନ୍ନମୂଳ' ଗଳ୍ପରେ ଏହି କାରଣଟି ଆଉ ଟିକେ ସ୍ପଷ୍ଟଭାବେ ଦର୍ଶାଯାଇଛି- "ସେମାନେ ସବୁ (ସହରକୁ) ଆସିଛନ୍ତି ମଫସଲ ଗାଁମାନଙ୍କରୁ, ଯେଉଁ ଗାଆଁମାନଙ୍କୁ ଦେଶର ପ୍ରାଣକେନ୍ଦ୍ର ବୋଲାଯାଏ ××× ସେହି ମଫସଲ ଗାଁମାନଙ୍କର କିଛି କାମ ଧନ୍ଦା ନ ପାଇ ସେମାନେ ସବୁଥିଲେ ବେକାର । ସହରରେ କୌଣସି ନା କୌଣସି କାମଟାଏ କରି ପେଟ ପୋଷିବା ପାଇଁ ସେମାନେ ଆସିଛନ୍ତି । ଚାଷୀର ଚାଷ କରିବାକୁ ଜମି ନାହିଁ-ହଳ, ଲଙ୍ଗଳ, ବିହନ ଆଦି ଚାଷର ଉପକରଣ ନାହିଁ

×× ତେଣୁ ଚାଷୀ ଆସିଛି ସହରକୁ କାମଧନ୍ଦା କରି ପେଟ ପୋଷିବା ପାଇଁ । ଗଉଡ଼ର ଗାଈଗୋରୁ ବା ମଇଁଷି ନାହାନ୍ତି, ଦୁଧ ଦହି କାରବାର ବନ୍ଦ । ସେ କାମ ପାଇଁ ଆସିଛି ସହରକୁ । ଗାଁ ଲୋକେ ଏବେ ତ ମାଟିର ହାଣ୍ଡି କଳସୀ ବ୍ୟବହାର ଊଣା କରିଦେଲେଣି । କୁମ୍ଭାରର ବେଉସା ପ୍ରାୟ ବନ୍ଦ । ସେ ମଧ୍ୟ ଆସିଛି କାମ ପାଇଁ । କେଉଟର କାରବାର ବି ବନ୍ଦ । ଜାଲ ଅଛି ତ ଡଙ୍ଗା ନାହିଁ- ଡଙ୍ଗା ଅଛି ତ ଜାଲ ନାହିଁ । ବଡ଼ ବଡ଼ ଧନୀଲୋକେ ବହୁତ ମୂଳଧନ ଖଟାଇ ମାଛ- ଶୁଖୁଆ ବ୍ୟବସାୟ ଚଳେଇଲେଣି । ପ୍ରତିଯୋଗିତାରେ କେଉଟ ପାରିଉଠୁଛି କେଉଁଠି ? ସେ ବି ସହରକୁ ଆସିଛି । ××× ସେହିପରି ସହରକୁ ଆସିଛନ୍ତି ଗାଆଁର ଗୁଡ଼ିଆ, ଚମାର, ତେଲୀ, ତନ୍ତୀ, ବଣିଆ ପ୍ରଭୃତି ବିଭିନ୍ନ ଜାତିର- ବିଭିନ୍ନ ବ୍ୟବସାୟର ଲୋକ, ଗାଁରେ ସେମାନଙ୍କ ଚଳିବା ପାଇଁ କୌଣସି କାମଧନ୍ଦା ନାହିଁ-ବୃତ୍ତି ବା ଜୀବିକା ନାହିଁ ।"

ସାମନ୍ତବାଦୀ ସମାଜରେ କୌଳିକ କାର୍ଯ୍ୟପ୍ରତି ଅତି ଗୁରୁତ୍ୱ ଦିଆଯାଉଥିଲା । ଗୃହଥିଲା ପ୍ରଶିକ୍ଷଣ କେନ୍ଦ୍ର । ସାତପୁରୁଷର କୁଳବେଉସାରୁ ଲବ୍ଧ ଅର୍ଥରେ ସୁରୁଖୁରୁରେ ପରିବାରର ଗୁଜୁରାଣ ମେଣ୍ଟୁଥିଲା । ପୁଞ୍ଜିବାଦ ସାଧାରଣଜନତା ଭିତରେ ବିଳାସ-ବ୍ୟସନ ଆଣିଦେଲା । ଫଳରେ କୃତ୍ରିମ ଅଭାବ ଦେଖାଦେଲା । ତେଣୁ କୌଳିକ ବ୍ୟବସାୟକୁ ଛାଡ଼ି ଲୋକେ ଅର୍ଥକାରୀ ବ୍ୟବସାୟ ଉପରେ ଅଧିକ ଗୁରୁତ୍ୱ ଦେଲେ । କୌଣସି ବ୍ୟବସାୟ ଆଉ କୌଣସି ନିର୍ଦ୍ଦିଷ୍ଟ ଜାତି ବା ଗୋଷ୍ଠୀର ଏକଚାଟିଆ ହୋଇ ରହିଲା ନାହିଁ, କି ଅସ୍ପୃଶ୍ୟ ହୋଇ ରହିଲା ନାହିଁ । ଶିକ୍ଷିତ ଯୁବକ ଅଧିକ ରୋଜଗାର ମୋହରେ ନିଜ କୌଳିକ ବ୍ୟବସାୟରୁ ମୁହଁ ଫେରାଇ ନେଲା । କୃଷ୍ଣଚରଣଙ୍କ ଗଳ୍ପରେ ଏହି ବିବର୍ତ୍ତିତ ମୂଲ୍ୟବୋଧର ଚିତ୍ର ସୁଲଭ । 'ଆପଣା ହସ୍ତେ ଜିହ୍ୱା ଛେଦି' ଗଳ୍ପର ନାୟକ କାଳିଆ ଅଧିକ ଅର୍ଥ ଉପାର୍ଜନ ନିମନ୍ତେ କୌଳିକ ବ୍ୟବସାୟ ମଲାଗୋରୁଙ୍କ ଦେହରୁ ଚମଡ଼ା ଛେଲିବା ଓ ଢୋଲ ବଜାଇବା ବୃତ୍ତି ପରିତ୍ୟାଗ କରି ସାହେବଙ୍କ ଘରୋଇ ଚାକର ହେବା ନିମନ୍ତେ କଲିକତା ଯାଇଥିଲା । ସେଠାରୁ ଫେରି ଗାଁରେ ନିଜ ଜାତି ଭାଇଙ୍କ ସଂଗଠନ ଗଢ଼ି ସେମାନଙ୍କୁ ନିଜ ନିଜର କୌଳିକ ବ୍ୟବସାୟ ଛାଡ଼ି ଅନ୍ୟ ବ୍ୟବସାୟ କରିବାକୁ ପ୍ରବର୍ତ୍ତାଇଛି । ମାତ୍ର ଏଭଳି ବୃତ୍ତି ପରିବର୍ତ୍ତନ ସହିତ ଆର୍ଥିକ କାରଣ ସଂପୃକ୍ତ ହୋଇ ନଥିବାରୁ ତା'ପ୍ରସ୍ତାବ ସମାଜ-ପ୍ରତ୍ୟାଖ୍ୟାତ ହୋଇଛି ସେ ନିଜ ଉଦ୍ୟମରେ ବିଫଳ ହୋଇଛି । ମାତ୍ର 'ମାଟିର ପିତୁଳା ଗଢ଼ି ଥୋଇଦେଲି' ଗଳ୍ପର ନାୟକ ଶୁକର ଉଦ୍ୟମ ଏ କ୍ଷେତ୍ରରେ ସ'ଳ ହୋଇଛି । କୁମ୍ଭାରର କୌଳିକ ବ୍ୟବସାୟ ହାଣ୍ଡିଗଢ଼ା ଛାଡ଼ିଦେବା ନିମନ୍ତେ ବାପାଙ୍କୁ ପରାମର୍ଶ ଦେଲାବେଳେ ତା'ର ଯୁକ୍ତି ହେଉଛି- "କ'ଣ ଆମର ସେଥିରୁ ଲାଭ ହେଉଛି ? ଆଜିକାଲି ତ ସମସ୍ତେ ହାଣ୍ଡି ଆଟିକା ବ୍ୟବହାର ଛାଡ଼ିଦେଲେଣି । ଆଲୁମିନିୟମ,

ହିନ୍ଦୋଲିୟମ୍, ଷ୍ଟେନଲେସ ଷ୍ଟିଲ, ପ୍ଲାଷ୍ଟିକ ପାତ୍ରର ବ୍ୟବହାର ଚାରିଆଡ଼େ । କେତେଜଣ ତମର ହାଣ୍ଡିଆଟିକା, କଳସୀ, ବେକା, ପଲମ, ଠେକି ସବୁ କିଣୁଛନ୍ତି ? ××× ତମେ ଦେଖୁନ ବାବା, ନଇ ସେପାରି ଗାଁର ତେଲିମାନେ ଆଉ ତେଲ ପୋଡୁନାହାନ୍ତି । ବଢ଼େଇମାନେ କାଠକାମ ପ୍ରାୟ ଛାଡ଼ିଦେଲେଣି । ତନ୍ତୀମାନେ କ୍ୱଚିତ ଲୁଗା ବୁଣୁଛନ୍ତି, କମାରମାନେ ଲୁହାଶାଳ ବନ୍ଦ କରିଦେଲେଣି । ଗଉଡ଼ମାନେ ଆଉ ଦୁଧ ଦହି ବେଉସା କରୁ ନାହାନ୍ତି । ଖାଲି କୁଳବେଉସାରେ ଏବେ ଭରଣପୋଷଣ ହୋଇପାରୁନାହିଁ, ତେଣୁ ତମେ ଏ ଗଡ଼ାତଡ଼ା କାମ ଛାଡ଼ିଦିଅ । ଚାଷକାମରେ ମୋତେ ସାହାଯ୍ୟ କର ।"

ସାମନ୍ତବାଦୀ ସଭ୍ୟତାରେ ମାଟି ଓ ନାରୀ ଥିଲେ ସମାଜରେ ପୂଜନୀୟା ଅବଶ୍ୟ ଏ ଦୁହେଁ ପୁରୁଷକୈନ୍ଦ୍ରିକ ସମାଜ ବ୍ୟବସ୍ଥାରେ ସମ୍ପତ୍ତି ଭାବେ ଗଣା ହେଉଥିଲେ । ମାତ୍ର ବିନିମୟକ ଭାବେ ଏମାନଙ୍କୁ ବ୍ୟବହାର କରାଯାଇ ନଥିଲା । ଏମାନେ ଥିଲେ ପୁରୁଷର ପୁରୁଷାର୍ଥ, ମାନ-ସମ୍ମାନର ପ୍ରତୀକ । ମାଟି ଓ ନାରୀ ସହିତ ପୁରୁଷର ଥିଲା ଏକ ଆବେଗିକ ସମ୍ପର୍କ, ମାଟି ଗଣା ହେଉଥିଲା ମାଆ ଭାବରେ । ନାରୀ ଥିଲା ମାତା, ଭଗିନୀ, ପ୍ରିୟା ଓ କନ୍ୟା । ଅବଶ୍ୟ ଏସବୁ ଅବସ୍ଥାରେ ବେଳେବେଳେ ନାରୀର ଦାସୀରୂପ ପ୍ରକଟିତ ହେଉଥିଲା । ମାତ୍ର ପୁଞ୍ଜିବାଦୀ ବ୍ୟବସ୍ଥାଭଳି ନାରୀକୁ ପଣ୍ୟଭାବେ ବିବେଚନା କରାଯାଉ ନଥିଲା । କୃଷ୍ଣଚରଣ ପୁଞ୍ଜିବାଦୀ ସଭ୍ୟତାର ବାସ୍ତବରୂପ ଦେଖାଇବାକୁ ଯାଇ ପଣ୍ୟଭାବେ ନାରୀ ବିପଣନର ଯଥାର୍ଥରୂପ ଦେଖାଇଛନ୍ତି 'ସାବିତ୍ରୀ' ଝିଅ ହଜିଛି', 'ଘର ସଂସାରର ଶକ୍ତି', 'ଫକ୍‌କଡ଼' ପ୍ରଭୃତି ଗଳ୍ପରେ । ଏକ ଶାନ୍ତ ସରଳ ଗ୍ରାମ୍ୟନାରୀ ସାବିତ୍ରୀ, ପ୍ରବାସୀ ପତିଙ୍କ ଫେରନ୍ତା ବାଟକୁ ଚାହିଁ ଚାହିଁ ସେ ଅସହାୟ ବୋଧ କରିଛି । ତା'ର ଏହି ଅସହାୟତାର ସୁଯୋଗ ନେଇଛି ଗାଁ ଟାଉଟର ନଟ ବାରିକ । ତା'କୁ ସ୍ୱାମୀ ସହିତ ଭେଟ କରାଇଦେବାର ପ୍ରତିଶ୍ରୁତି ଦେଇ ଭୂଆସୁଣୀ ବୋହୂ ସାବିତ୍ରୀକୁ ନେଇ କଲିକତାର ବେଶ୍ୟାପଡ଼ାରେ ବିକି ଦେଇଛି । ବିଭିନ୍ନ ପ୍ରକାର ଅତ୍ୟାଚାରର ଶିକାର ହୋଇ ସାବିତ୍ରୀ ହୁଏତ ଦେହ ବିକିବାକୁ ବାଧ ହୋଇଛି, ମାତ୍ର ମନ ତା'ର ଏକକ ଭାବେ ନିଜ ସ୍ୱାମୀ ପାଖରେ ପଡ଼ିରହିଛି । ଶେଷରେ ସେ ବେଶ୍ୟାଳୟରୁ ମୁକ୍ତି ପାଇବା ସହିତ ସ୍ୱାମୀକୁ ଫେରିପାଇଛି । 'ଝିଅ ହଜିଛି' ଗଳ୍ପରେ ଥାନାବାବୁଙ୍କ ଚକ୍ରାନ୍ତରେ ସରଳ ଆଦିବାସୀ ଝିଅ ଦୁଲୀ ଦେଇ ଅପହୃତ ହୋଇଛି । ଅର୍ଥଲୋଭୀ ଥାନାବାବୁ ଦୁଲୀକୁ ବାହାର ରାଜ୍ୟରେ ବିକ୍ରି କରିଦେବାକୁ ଚକ୍ରାନ୍ତ କରିଛନ୍ତି । କିନ୍ତୁ ଦୁଲୀର ସାହସ ଓ ଉପସ୍ଥିତ ବୁଦ୍ଧିଯୋଗୁଁ ସେ ନିଜ ମୁକ୍ତି ହାସଲ କରିଛି । ଏପରିକି ସମାଜ ତା'କୁ ଗ୍ରହଣ ନକଲେ ମଧ୍ୟ ନିଜ ଉଦ୍ୟମରେ ବଞ୍ଚିଛି ଏକ ସଫଳ ଜୀବନ । 'ଫକ୍‌କଡ଼' ଗଳ୍ପରେ ପକେଟମାର ଟୋକା ନିଜ ସାଥୀ ଝିଅଟିକୁ ବାରାଙ୍ଗନା ସଜାଇ ପଇସା ରୋଜଗାର କରିଛି ।

ବେଶ୍ୟାପ୍ରଥା ପୁଞ୍ଜିବାଦୀ ସଭ୍ୟତାରେ ଆରମ୍ଭ ହୋଇଛି ବୋଲି କହିଲେ ସତ୍ୟର ଅପଳାପ ହେବ । ଏହି ପ୍ରଥା ବହୁ ପ୍ରାଚୀନ କାଳରୁ ମଣିଷ ସମାଜରେ ଚଳି ଆସିଛି । ଏପରିକି କେତେକ ସମାଜତତ୍ତ୍ୱବିଦ୍‌ଙ୍କ ମତ ହେଉଛି ଯେ ସମାଜ ସୃଷ୍ଟି ସମୟରୁ ଏହାର ଆରମ୍ଭ । କିନ୍ତୁ ସାମନ୍ତବାଦୀ ଯୁଗରେ ଏ ପ୍ରକାର ସ୍ୱୈରିଣୀ ନାରୀମାନେ ଥିଲେ ନାଗରିକା । ସେମାନେ ଉଚ୍ଚବଂଶଜ ବିଳାସୀ ନାଗରକମାନଙ୍କୁ ଖାଲି ଦେହଦାନ ନୁହେଁ ଅନ୍ୟାନ୍ୟ ବିଭିନ୍ନ ଉପାୟରେ ଆନନ୍ଦ ଦେଉଥିଲେ ଏବଂ ଉଚ୍ଚବର୍ଗଙ୍କ ସହିତ ସଂପୃକ୍ତି ଯୋଗୁଁ ସେମାନେ ଉଚ୍ଚବର୍ଗ ଭାବେ ପରିଗଣିତ ହେଉଥିଲେ । ସେମାନେ ଥିଲେ ବିଳାସର ସହଯୋଗିନୀ, ଅର୍ଥ ବଦଳରେ ଆନନ୍ଦ ଦେଉଥିଲେ ମଧ ଦାତା ଗ୍ରହିତାଙ୍କ ମ୍ନରେ ମନ ଦିଆନିଆ ଥିଲା ଗୁରୁତ୍ୱପୂର୍ଣ୍ଣ । ମାତ୍ର ପୁଞ୍ଜିବାଦୀ ସଭ୍ୟତାରେ ପୁରୁଷ ନାରୀକୁ ପଣ୍ୟଭାବେ ବିବେଚନା କରୁଥିବାରୁ ଅର୍ଥବିନିଯୋଗରେ ଖୋଜିଲା କେବଳ ତା'ର ଉଲଗ୍ନ ଦେହ, ସେଠି ପ୍ରେମ ନଥିଲା, ଅନ୍ୟାନ୍ୟ ଆକର୍ଷଣ ବି ନଥିଲା । ନାରୀ ଦେହର ମୂଲ୍ୟ ନିରୂପଣ ଏବଂ ଏହି ମୂଲ୍ୟ ବିନିମୟରେ ନିଜ ଦୈହିକ କାମନାର ପରିପୂର୍ତ୍ତି ଥିଲା ଏହି ପ୍ରକ୍ରିୟାର ମୁଖ୍ୟ ନିୟାମକ ।

ଡକ୍ଟର ବିଜୟ କୁମାର ଶତପଥୀ ପୁଞ୍ଜିବାଦୀ ସଂସ୍କୃତିର ପ୍ରଭାବ ଆଲୋଚନା କଲାବେଳେ ଅନୁଭବ କରନ୍ତି- "ପୁଞ୍ଜିବାଦୀ ସଭ୍ୟତା ଓ ସଂସ୍କୃତିର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଏହା ପାରିବାରିକ ସମ୍ପର୍କ ଉପରୁ ଭାବୁକତାର ଢାଙ୍କୁଣୀ ଖୋଲି ପରିବାରର ସମ୍ପର୍କ ପଇସା ସହିତ ଜଡ଼ିତ ବୋଲି ପ୍ରତିପାଦିତ କଲା ।"(ପ୍ରଗତିବାଦୀ କାବ୍ୟଚେତନା, ୧୯୯୨ପୃ-୧୭) । ପୁଞ୍ଜିବାଦୀ ସଭ୍ୟତାର ଏହି ଫଳଶ୍ରୁତି ଚିତ୍ରିତ ହୋଇଛି କୃଷ୍ଣଚରଣଙ୍କ 'ଗାନ୍ଧିଙ୍କର ଗଙ୍ଗାପ୍ରାପ୍ତି' ଓ 'ଖଡଗଦାରେ ପଦୁଅଁ' ଗପରେ । ପରିବାର ଚଳାଇବା ନିମନ୍ତେ ଆବଶ୍ୟକୀୟ ଅର୍ଥ ଉପାର୍ଜନ ପାଇଁ ବିଦେଶ ଯାଇଥିବା ମଧୁ ମଳିକ ନିଜ ସ୍ତ୍ରୀକୁ ବଡ଼ଭାଇ ଜିମାରେ ଛାଡ଼ି ଦେଇଯାଇଥିଲା । ମାତ୍ର 'ପାଞ୍ଚଶହ ଟଙ୍କାରେ ହାତ ଚିକ୍କଣ କରିସେଇ ଯଦୁଆ(ମଧୁର ବଡ଼ଭାଇ) ଜବରଦସ୍ତ ବୋହୂକୁ ବାବାଜି ସାଙ୍ଗରେ ପଠାଇଦେଲା ।" ପାରିବାରିବ ଜୀବନର ବିଶ୍ୱାସ ଓ ମୂଲ୍ୟବୋଧ, ଅନେକ ଉପାୟରେ ଅର୍ଥ ରୋଜଗାର ନିମନ୍ତେ ନଷ୍ଟ ହୋଇଗଲା । 'ଖଦଗଦାରେ ପଦୁଅଁ' ଗପରେ ପାରିବାରିକ ସମ୍ପର୍କ ଉପରେ ଆହୁରି ଶକ୍ତ ଆଘାତ ଲାଗିଛି । ସହଜ ଉପାୟରେ ଅର୍ଥ ରୋଜଗାର ଲୋଭରେ ବାପା ମା' ଆଠନଅବର୍ଷର ନିଜ ଝିଅ ବୁଲିକୁ ଯୌନବ୍ୟବସାୟୀଙ୍କ ହାତରେ ଟେକି ଦେଇଛନ୍ତି । ଫଳରେ ବୁଲି ଲହୁଲୁହାଣ ହୋଇଯାଇଛି, ଚେତା ନାହିଁ ××× ତାହାର ଜଙ୍ଘ ସନ୍ଧିରୁ ରକ୍ତ ବହି ପିନ୍ଧିଥିବା ପେଣ୍ଟି ଓ ଫ୍ରକ୍ ଭିଜିବାରେ ଲାଗିଛି । ଦୁଇଗାଲରେ ଦନ୍ତକ୍ଷତ । ପଦ୍ମକଢ଼ି ପର୍ି. ସ୍ତନ ଦୁଇଟି ମଧ କ୍ଷତାକ୍ତ ।"

'ପୁଞ୍ଜିବାଦ'ର ପ୍ରତିକ୍ରିୟାରୁ 'ସାମ୍ୟବାଦ'ର ଆବିର୍ଭାବ ହେବା କଥା ମାର୍କ୍ସ ଯାହା ସୂଚାଇଥିଲେ ତାହା ଆମ ସମାଜରେ ଆସିନାହିଁ । 'ରୁଷ ବିପ୍ଲବ' ପରେ ଏହି ସାମ୍ୟବାଦୀ ସମାଜର ସ୍ୱପ୍ନ ଭାରତର ବହୁ ପ୍ରଗତିଶୀଳ ଲେଖକଲେଖିକାମାନଙ୍କୁ ଆଶାନ୍ୱିତ କରିଥିଲା । ତେଣୁ ପୁଞ୍ଜିବାଦୀ ବ୍ୟବସ୍ଥାରେ ଘଟୁଥିବା ଶୋଷଣ କଷଣ ଶୀଘ୍ର ଦୂରୀଭୂତ ହୋଇ ଏକ ସାମ୍ୟବାଦୀ ସମାଜ ସ୍ଥାପନ ହେବ ବୋଲି ଆଶା ପରିଦୃଷ୍ଟ ହୁଏ କୃଷ୍ଣଚରଣଙ୍କ 'ସାବିତ୍ରୀ', 'ଝିଅ ହଜିଚି', 'ଘର ସଂସାରର ଶକ୍ତି', 'ଖଦଗଦାରେ ପଦୁଅଁ', 'ମାନବ ବୋମା' ଏବଂ 'ଡାଲୁଅ ଓ କାନସିରି' ଗଳ୍ପମାନଙ୍କରେ । ଭାରତରେ ରୁଷ୍‌ବିପ୍ଲବର ଏ ପ୍ରତିଶ୍ରୁତି ଏବେ ବି ଦୂରାହତ । ଖୋଦ୍ ଲେନିନ-ଭୂମି ରୁଷର ସାମ୍ୟବାଦୀ ଶାସନର ପତନ ପ୍ରଗତିସ୍ୱପ୍ନକୁ ଧୂଳିସାତ୍ କରିଛି । ପୁଞ୍ଜିବାଦର ବିଜୟ ଧ୍ୱଜା ଏବେ ବି ସଗର୍ବରେ ଉଡୁଛି । ମାର୍କ୍ସ-ଲେନିନ୍ ପରିକଳ୍ପିତ ରକ୍ତଝରା ଭୋର୍ ଆହୁରି କେତେ ଦୂରରେ ! ❖

# ସାଧନାର ପ୍ରସ୍ତୁତି ଭୂମିରୁ କର୍ମଭୂମି

ପ୍ରଫେସର ରବୀନ୍ଦ୍ରନାଥ ମିଶ୍ର

ସାହିତ୍ୟ ସାଧକ କୃଷ୍ଣଚରଣ ବେହେରା ଥିଲେ ଜଣେ ଅଭିଜ୍ଞ ମଣିଷ । ସେ ବୁଝିଥିଲେ ଯେ ଜୀବନ ହେଉଛି ଯାବତୀୟ ସଖ୍ୟ ଭାବର ଅନ୍ୟନାମ । ସାହିତ୍ୟ ସମୂହ ପାଇଁ ଉଦ୍ଦିଷ୍ଟ । ଏହା କୌଣସି ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ ସ୍ଥିର ନୁହେଁ । ଏହା ଗତିଶୀଳ । ବିନ୍ଦୁରୁ ସିନ୍ଧୁକୁ ପ୍ରବହମାନ । ସେଥିପାଇଁ ସାହିତ୍ୟିକର ଭାବଧାରା ସ୍ୱଚ୍ଛ ଓ ଗତିଶୀଳ । ମଣିଷପଣିଆର ପ୍ରତିଛବି ସେ ଆଙ୍କିଚାଲେ ତା'ର କୃତିରାଜିରେ । ସେ ସ୍ରଷ୍ଟା ପ୍ରଜାପତି । ସେ ପୁରୁଷ । ସଂସ୍କୃତରେ 'ପୁରୀ ଶେତେ ଇତି ପୁରୁଷଃ' ଅର୍ଥାତ୍ ପୁରୁଷ ଭିତରେ ତା'ର ସ୍ଥିତି ହେତୁ ସେ ପୁରୁଷ । ଲିଂଗ ଭେଦରେ ସେ ସ୍ତ୍ରୀ । ପ୍ରକୃତି ଓ ପୁରୁଷର ମିଳନ ପୀଠ ହେଉଛି ତା'ର ଶରୀର । ପବିତ୍ର । ଅତ୍ୟନ୍ତ ପବିତ୍ର । ସେ ଦିବ୍ୟ । ସୃଷ୍ଟିକର୍ତ୍ତାର ଭୂମିକାରେ ଅବତୀର୍ଣ୍ଣ । ତା'ର ଜୀବନ ଦିବ୍ୟତାର ଅଂଶବିଶେଷ । ସେ ସାମାଜିକ । ସଂସ୍କୃତି ନିଷ୍ଠ । ସମାଜ ହେଉଛି ତା'ର ପରୀକ୍ଷା ଭୂମି । ଭୂମାକୁ ସ୍ପର୍ଶ କରେ ତା'ର ଚିନ୍ତନ ପ୍ରକ୍ରିୟା ସେ ଅପାର ଶାନ୍ତିର ଅଧିକାରୀ । ନିର୍ମାଣ ଓ ନଷ୍ଟର ସେ ଅଧିକାରୀ । ଅଖଣ୍ଡ କ୍ଷମତା ତା' ହାତରେ । ଇଚ୍ଛାର ଅନୁକୂଳ ଓ ପ୍ରତିକୂଳ ତା'ର ଜୀବନଧାରା । ଭଲମନ୍ଦ, ସୁଖ ଦୁଃଖ, ଭଂଗାଗଢ଼ା ଭିତରେ ତା'ର ସମଗ୍ର ଜୀବନ ଜନ୍ମଠାରୁ ମୃତ୍ୟୁଯାଏ ବିଭିନ୍ନ ପରୀକ୍ଷା ନିରୀକ୍ଷା ଭିତରଦେଇ ଗତିଶୀଳ । ସେ ପ୍ରତିଭା ଓ ପ୍ରଜ୍ଞାର ମୂର୍ତ୍ତିମନ୍ତ ପ୍ରତୀକ । ବାଣୀ ଆରାଧନାର ଋଷିଟିଏ । ମନ୍ତ୍ର ସ୍ରଷ୍ଟା ଓ ଦ୍ରଷ୍ଟା । ତା'ର ମନ୍ତ୍ରରେ ମଣିଷ ଭିତରର ଦେବତା ସନ୍ତୁଷ୍ଟ ହୁଏ । ସେ ଜାଣେ ଯେ ସାହିତ୍ୟ ଆଶା ଦିଏ, ଦମ୍ଭ ଦିଏ, ସାହସ ଦିଏ, ସ୍ୱପ୍ନ ଦେଖାଏ, ଅନ୍ଧକାରକୁ ଭେଦ କରେ, ମୃତ୍ୟୁରୁ ଅମୃତକୁ ନେଇ ଚାଲେ । ସାହିତ୍ୟ ପ୍ରେମ ଶିଖାଏ । ସାହିତ୍ୟରେ ପ୍ରେମର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭଲପାଇବା ହେଉଛି ମଣିଷତ୍ୱ । ମାନବିକତା ଥିବାରୁ ସେ ମାନବ । ଅନନ୍ତ ଗୁଣର ଅଧିକାରୀ ସେ ।

କୃଷ୍ଣଚରଣ ଥିଲେ ଓଡ଼ିଆ ସାହିତ୍ୟରେ ବହୁମୁଖୀ ପ୍ରତିଭାର ଅଧିକାରୀ । ଏକାଧାରରେ ଜଣେ ପ୍ରାବନ୍ଧିକ, ରମ୍ୟରଚନାକାର, କଥାକାର, ସମାଲୋଚକ, କବି, ନାଟ୍ୟକାର, ଶିଶୁସାହିତ୍ୟକାର, ଗ୍ରନ୍ଥ ସଂପାଦକ ଓ ଗବେଷକ । ଆବିର୍ଭାବ କାଳ ୨ ଜାନ୍ ୧୯୩୨ଠାରୁ ସାଧନାପୀଠ ଶାନ୍ତିନିକେତନ ପହଞ୍ଚିବା ଯାଏ ଓ ୧୯୫୨ରୁ

୨୯ଜୁଲାଇ ୨୦୧୭ । ତାଙ୍କର ଜୀବନକୁ ୨ ଭାଗରେ ବିଭକ୍ତ କରାଯାଇ ଆଲୋଚନା କରାଯାଇପାରେ । ପ୍ରଥମ ଭାଗରେ ତାଙ୍କର ବାଲ୍ୟଜୀବନ, ଶିକ୍ଷାଦୀକ୍ଷା, 'ଆଗୁହା' ପ୍ରାଇମେରୀ ସ୍କୁଲଠାରୁ ରେଭେନ୍‌ସା କଲେଜ ବି.ଏ. ଡିଗ୍ରୀ ହାସଲ ପର୍ଯ୍ୟନ୍ତ, ଦ୍ୱିତୀୟ ଭାଗ ଏମ୍.ଏ. ପଢ଼ା ୨ବର୍ଷ ଶାନ୍ତିନିକେତନ ପଢ଼ାଠାରୁ ଆଜୀବନ ସାହିତ୍ୟ ସାଧନା ଓ କର୍ମ ଚଞ୍ଚଳତାର ଜୀବନ ପର୍ଯ୍ୟନ୍ତ । ଶାନ୍ତିନିକେତନର ଶିକ୍ଷା, ଶିକ୍ଷକ, ପୁସ୍ତକାଳୟ ଓ ଶିକ୍ଷାୟତନକୁ ସେ ବାରମ୍ବାର ସ୍ମରଣ କରିଛନ୍ତି । ତାଙ୍କ ଜୀବନର ସବୁ ଗ୍ରନ୍ଥିକୁ ଖୋଲିଦେବାରେ ସହାୟକ ହୋଇଛି ବିଶ୍ୱଗୁରୁଙ୍କ ଏଇ ଶିକ୍ଷାନୁଷ୍ଠାନ । ସର୍ଜନାତ୍ମକ ଶ୍ରଦ୍ଧାଗୁଡ଼ିକୁ ଏକ ନିର୍ଦ୍ଦିଷ୍ଟ ଆବେଦନ ଯୋଗାଇ ଦେବା ପାଇଁ ତାଙ୍କୁ ଶାନ୍ତିନିକେତନଠାରୁ ଅଧିକ ଉପଯୁକ୍ତ ପରିସରଟିଏ ମିଳିଥାନ୍ତା କେଉଁଠାରୁ ? ଭାରତବର୍ଷର ପ୍ରାୟ ସବୁଭାଷା ଓ ସାହିତ୍ୟର ଜିଜ୍ଞାସୁମାନେ ସେତେବେଳେ ଶାନ୍ତନିକେତନରେ ଥିଲେ । ଚିନ୍ତନର ଏଇ ବ୍ୟାପକତାକୁ, ପ୍ରାକୃତିକ ପରିବେଶ ମଣ୍ଡିତ ଏଇ ଆଶ୍ରମର ପରିସରକୁ ହାତପାହାନ୍ତାରେ ପାଇ ସେ ନିଜକୁ ଧନ୍ୟ ମଣୁଥିଲେ । ବିଭିନ୍ନ ବିଭାଗର ଶିକ୍ଷକମାନଙ୍କ ସାନ୍ନିଧ ଲାଭ କରି ସେ ଇଂରାଜୀ ସାହିତ୍ୟ, ଭାରତର ଷଡ଼୍‌ଦର୍ଶନ, ୟୁରୋପୀୟବୋଧ ଓ ଜ୍ଞାନ ପ୍ରତିଭା, ବିଭିନ୍ନ ଧର୍ମ ଧାରା ଓ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ । ସତେ ଯେପରି ମଣିକାଞ୍ଚନର ସଂଯୋଗ ଘଟିଥିଲା । ତାଙ୍କ ଜୀବନରେ ଏଇ ମଧୁର ଓ ଶାନ୍ତକାନ୍ତ ପରିବେଶରେ । ତାଙ୍କ ଭିତରର ମଣିଷଟିଏ ସଜାଗ ଓ ସକ୍ରିୟ ହୋଇ ଉଠିଥିଲା ଯେପରି । ଗୁରୁଦେବଙ୍କ ରଚନାବଳୀ ବିଶେଷ କରି ରବୀନ୍ଦ୍ର ସଂଗୀତ ଦ୍ୱାରା ସେ ବିଶେଷ ପ୍ରଭାବିତ ଥିଲେ । ବଂଗଳା ଭାଷାର ସେ ଥିଲେ ଅନୁରାଗୀ ଓ ବିଦଗ୍ଧପାଠକ ।

ଏଇଠି କବିତା ପ୍ରତି ସେ ଆକର୍ଷିତ ହୋଇ ଲେଖିବା ଆରମ୍ଭ କଲେ । ୧୯୫୩ରେ ତାଙ୍କର 'ଚା କପ୍‌ରେ ଝଡ଼' କବିତା ସଂକଳନ ପ୍ରକାଶିତ ହେଲା । ସେଥିରେ ତାଙ୍କର ଅଦ୍‌ଭୁତ କାବ୍ୟପ୍ରତିଭାର ପରିଚୟ ମିଳିଲା । ବିଶ୍ୱର ଅଧିକାଂଶ ସାହିତ୍ୟିକ ଜୀବନ କବିତାରୁ ହିଁ ଆରମ୍ଭ କରିଛନ୍ତି କାରଣ କବିତାପ୍ରତି ସମସ୍ତଙ୍କର ଏକ ସ୍ୱତଃସ୍ଫୂର୍ତ୍ତ ଆକର୍ଷଣ ଥାଏ । କବିତାରେ ହିଁ ତାଙ୍କର ଜୀବନଚର୍ଯ୍ୟା ଆରମ୍ଭ ହୋଇଛି । କବିତା ହିଁ ମଣିଷକୁ ସ୍ୱତଃବରଣ କରେ, କାରଣ ଏହା ମଣିଷର ଅନ୍ତର୍ନିହିତ ଭାବଜଗତକୁ ସହଜରେ ଛୁଇଁପାରେ । ମା'କୋଳରେ ସେ 'ଧୋବାୟା' ଗୀତ ଶୁଣି ଅଭିଭୂତ ହୁଏ ଓ ଶାନ୍ତିରେ ଶୋଇପଡ଼େ । ଏପରି ଲାଗେ ଯେ କବିତା ମଣିଷର ସହଜାତ । ସେ ଆଶ୍ରୟବିନା ରହିପାରେ ନାହିଁ । ମଣିଷମନର, ହୃଦୟର ଆଶ୍ରୟ ପାଇଁ ତାହା ହୁଏ ଉଦ୍ଧିମନ୍ତ । ଡକ୍ଟର ବେହେରା ପ୍ରଥମେ କବିତା ଲେଖି ଜୀବନକୁ ଭସାଇ ନେଇଛନ୍ତି ଏକ ଅଚିହ୍ନା ବନ୍ଦରକୁ ଯେଉଁଠି ତାଙ୍କୁ ପ୍ରାପ୍ତ ହୋଇଛି ଏକ ଅଲୌକିକ ମନୋଲତା ଯାହା ତାଙ୍କ ସ୍ୱପ୍ନର ନଦୀରେ ତରଙ୍ଗ ତୋଳିଛି । ପ୍ରେମରେ, ସ୍ନେହରେ ଜୀବନକୁ ଜିଇବାର ମନ୍ତ୍ର ଶିଖାଇଛି ।

ଶାନ୍ତିନିକେତନ ଅଧ୍ୟୟନ ସମୟରେ ତାଙ୍କର ପତ୍ରପତ୍ରିକା ସଂପାଦନା ସହ ସଂପୃକ୍ତି ବଢ଼ିଛି । ସେ ନେଇଛନ୍ତି 'ଅଗ୍ରଣୀ' ପତ୍ରିକାର ସଂପାଦନା ଦାୟିତ୍ୱ । ଦୁର୍ଗାଚରଣ ପରିଡ଼ାଙ୍କ ସହ ମିଶି ଏକ 'କବିତା' ସଂକଳନ କରିଛନ୍ତି । ଯେଉଁଥିରେ ପ୍ରକାଶିତ କେତେକ କବିତାର ସମୀକ୍ଷା ପାଠକୀୟ ଆଦରଲାଭ କରିଛି । ୧୯୫୫ରେ ସେ ବିଶ୍ୱଭାରତୀରୁ ଓଡ଼ିଆରେ ଏମ୍.ଡିଗ୍ରୀ ହାସଲ କରିଛନ୍ତି । ସେହିବର୍ଷ ତାଙ୍କ ବିବାହ ସଂପନ୍ନ ହୋଇଛି ଜୟନ୍ତୀ ଦେବୀଙ୍କ ସହ । ପରବର୍ତ୍ତୀ ସମୟରେ 'ଡଗର' ପତ୍ରିକାସହ ସଂପୃକ୍ତି । କେତେକ ବିଶେଷ ସଂକଳନର ପ୍ରକାଶନ ତାଙ୍କ ସଂପାଦନା ଶୈଳୀ ଓ କୃତିତ୍ୱର ଆଲେଖ୍ୟ ।

୧୯୫୫ ସେପ୍ଟେମ୍ବର ମାସରେ ତାଙ୍କର ଓଡ଼ିଆ ଅସ୍ଥାୟୀ ଅଧ୍ୟାପକ ଭାବେ କର୍ମଜୀବନ ଆରମ୍ଭ ହୋଇଛି ଭଦ୍ରକ କଲେଜରୁ । ପରେ ୧୯୫୬ ଅଗଷ୍ଟ ୬ରେ ସେହି ଭଦ୍ରକ କଲେଜରେ ସେ ସ୍ଥାୟୀ ଅଧ୍ୟାପକ ଭାବେ ଯୋଗଦେଇ ୧୯୭୧ ଯାଏ ଦୀର୍ଘ ୧୫ ବର୍ଷ କାଳ ଅଧ୍ୟାପନା କରିଛନ୍ତି । ୧୯୭୧ରୁ ୭୫ଯାଏ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଅଧ୍ୟାପନା, ୧୯୮୧ରୁ ୧୯୮୬ ଫୁଲବାଣୀ ସରକାରୀ କଲେଜରେ ଅଧ୍ୟାପନା, ୧୯୮୬ରୁ ୧୯୯୦ ଜୁନ୍ ୩୦ ଯାଏ ରେଭେନ୍ସାରେ ଅଧ୍ୟାପନା ଓ ଅବସର ଗ୍ରହଣ । ୧୯୯୦ରୁ ୧୯୯୨ ଯାଏ ଭଦ୍ରକ ମହିଳା ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱ ସୂଚାରୁ ରୂପେ ସଂପନ୍ନ । କାଞ୍ଚିକାବେରୀ ତାଙ୍କର ସାରସ୍ୱତ ସୃଷ୍ଟି । ଦୀର୍ଘ ଅଧ୍ୟାପକୀୟ ଜୀବନର ଅନୁଭୂତିକୁ ସେ ତାଙ୍କର ସାହିତ୍ୟ ସୃଷ୍ଟି ଭିତରେ ପ୍ରତିଫଳିତ କରିଛନ୍ତି । ଓଡ଼ିଶାର ଏକମାତ୍ର ଗବେଷଣା 'ପତ୍ରିକା' ଏଷଣାର ୧୯୮୦ଠାରୁ ସଂପାଦନା ଦାୟିତ୍ୱ ବହନ କରିଛନ୍ତି । ଓଡ଼ିଆ ଗବେଷଣା ପରିଷଦର ସେ ଆଜୀବନ ସଦସ୍ୟ ଓ ସଭାପତି ହୋଇ ପାଖାପାଖି ୨୩ଖଣ୍ଡରୁ ଅଧିକ ପ୍ରାଚୀନ ଓ ଆଧୁନିକ ଗ୍ରନ୍ଥ ସଂପାଦନା କରି ପ୍ରକାଶିତ କରିଛନ୍ତି । ନିୟମିତ ପାଠଚକ୍ର ଜରିଆରେ ସେ ସମଗ୍ର ଓଡ଼ିଶାରେ ଜ୍ଞାନ ବିଜ୍ଞାନର ପ୍ରଚାର ଓ ପ୍ରସାରଣ କରିଛନ୍ତି । ଦୀର୍ଘ ୩୪ ବର୍ଷ ବି.ଏ. ସମ୍ମାନରେ, ୧୧ବର୍ଷ ସ୍ନାତକୋତ୍ତର ଓ ୬ବର୍ଷ ଏମ୍.ଫିଲ୍ ଶ୍ରେଣୀରେ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନ କରି ଅନେକ ସୁଯୋଗ୍ୟ ଛାତ୍ର, ଗବେଷକ, ଅଧ୍ୟାପକ, ଅଧ୍ୟାପିକା ସୃଷ୍ଟି କରିବା ସହିତ ସେ ଗବେଷଣାର ଏକ ନୂତନ ଦିଗନ୍ତ ସୃଷ୍ଟି କରିଛନ୍ତି ।

ତାଙ୍କ ଜୀବନରେ ଦ୍ୱିତୀୟାର୍ଦ୍ଧ ସମୁଦାୟ ୮୪ବର୍ଷ ୧୦ମାସ ୧୫ ଦିନରୁ ୬୫ ବର୍ଷ(୧୯୩୨-୨୦୧୭) ସାହିତ୍ୟ ସାଧନାର ସମୟ, ଜୀବନର ସାଧନାଭୂମି ଶାନ୍ତି ନିକେତନରୁ ସ୍ୱର୍ଗଦ୍ୱାର ଯାଏ । ରୋଗଶଯ୍ୟାରେ ଅନ୍ତିମ ୨/୩ ମାସ ବାଦ ଦେଲେ ତାଙ୍କର ସମସ୍ତ ସମୟ ଭାଷା ସାହିତ୍ୟର ଗବେଷଣା ପ୍ରତି ସମର୍ପିତ ଥିଲା । ସେ ଥିଲେ ବନ୍ଧୁବତ୍ସଳ । ଜଣେ ସଚ୍ଚୋଟ ବିଦ୍ୱାନ୍ । ତାଙ୍କର ମାର୍ଗଦର୍ଶନ ଅନେକଙ୍କୁ ଆଜି ଗବେଷକ ଆସନରେ ଅଳଙ୍କୃତ କରିଛି । ଗବେଷଣାର ଅନେକ ନୂତନ ଦିଗନ୍ତ ଉନ୍ମୋଚନ କରିବାରେ

ସେ ଥିଲେ ଜଣେ ଧୂରୀଣ ପଣ୍ଡିତ । ସେ ଥିଲେ ଜଣେ ବିନମ୍ର ପାଠକ ଓ ସାହିତ୍ୟ ଅନୁରାଗୀ, ଯେ କେହି ତାଙ୍କ ଘରକୁ ଯାଇଛି ଆତିଥ୍ୟ ପାଇ ନିଜକୁ ଧନ୍ୟ ମଣିଛି । ନିରଳସ ଜୀବନ ଓ ଅନୁରାଗ ତାଙ୍କ ପାରିବାରିକ ଓ ବ୍ୟକ୍ତିଗତ ଜୀବନକୁ କରିଛି ଗରିମନ୍ତ । ଦୁଃଖ ଓ ସୁଖ ତ ଜୀବନରେ ଗତାନୁଗତିକ । ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ଭଳି । ଦୁଃଖ ଆସିଛି ତାଙ୍କ ଜୀବନରେ କିନ୍ତୁ ଜଣେ ସାଧକର ଜୀବନକୁ ଦୋହଲାଇଛି ସତ କିନ୍ତୁ ମୂଳୋତ୍ପାଟନ କରିପାରିନାହିଁ । ସ୍ଥିତପ୍ରଜ୍ଞ ହୋଇ ସେ ସାହିତ୍ୟ ସାଧନାକୁ ଜୀବନର ବ୍ରତଭାବେ ଗ୍ରହଣ କରିଛନ୍ତି । ସେଇଥିରେ ହିଁ ସେ ବ୍ରହ୍ମାସ୍ୱାଦ ସହୋଦର 'ରସ'କୁ ମର୍ମେ ମର୍ମେ ଅନୁଭବ କରିଛନ୍ତି । କବିତା 'ଚା' କପ୍‌ରେ ଝଡ଼'ଠାରୁ 'ବେଦୀ'ଗଳ୍ପ ଯାଏ ହେଉ ବା 'କାଞ୍ଚିକାବେରୀ', 'ମୋଗଲ ତାମସା'ଠାରୁ 'ଗଛଲତାର ସଂସାର' ପର୍ଯ୍ୟନ୍ତ ବା 'ଓଡ଼ିଆ ସାହିତ୍ୟରେ ଇସ୍‌ଲାମୀ ପ୍ରଭାବ' ପର୍ଯ୍ୟନ୍ତ ସବୁଥିରେ ଏକ ନୂଆ ପ୍ରୟୋଗ କରି ପାଠକୀୟ ସ୍ୱୀକୃତି ଲାଭକରିଛନ୍ତି । ଆଲୋଚନା ପ୍ରତ୍ୟାଲୋଚନାକୁ ସେ ଭ୍ରୂକ୍ଷେପ କରିନାହାନ୍ତି । ସାହିତ୍ୟ ଜଗତରେ ସେ ଅନେକ ବିରୋଧର ସମ୍ମୁଖୀନ ହୋଇଛନ୍ତି ସତ କିନ୍ତୁ ସେ କେଉଁଥିରେ ବିଚଳିତ ହୋଇ ନାହାନ୍ତି ।

'ଯା' ବିଦ୍ୟା ସା ବିମୁକ୍ତୟେ' ବୋଲି ଉପନିଷଦ୍‌ରେ କୁହାଯାଇଛି, ଯେଉଁ ବିଦ୍ୟା ଆମକୁ ମୁକ୍ତି ପ୍ରଦାନ କରେ, ଯେଉଁ ବିଦ୍ୟା ଆମକୁ ମୃତ୍ୟୁରୁ ଅମୃତ ଆଡ଼କୁ ନିଏ, ଯାହାକୁ ଲେଖିଲେ ପଢ଼ିଲେ ଆମେ ମଣିଷ ହେଉ, ଯାହାକୁ ଲେଖିଲେ ପଢ଼ିଲେ ଆମେ ମୁକ୍ତ ହେଉ, ଯାହାକୁ ଲେଖିପଢ଼ି ଆମେ ସମଗ୍ର ସଂସାରକୁ ଦେଖିଲୁ, ଯାହାଠାରୁ ଆମେ ସ୍ନେହ ପ୍ରେମ କରିବା ଶିଖିଲୁ, ଯାହାକୁ ପଢ଼ି ଲେଖି ଆମେ ମୁକ୍ତ ହୋଇ ହସି କାନ୍ଦିପାରିଲୁ, ସେଇ ସାହିତ୍ୟ ବିଦ୍ୟା ସାଧନା କରି କୃଷସାର୍‌ଙ୍କ ଜୀବନ ଧନ୍ୟ ହୋଇଛି ନିଶ୍ଚୟ, ସେ ଆମ ଗହଣରେ ନାହାନ୍ତି ସତ କିନ୍ତୁ ତାଙ୍କର ଅସଂଖ୍ୟ ଗ୍ରନ୍ଥରାଜି ଆମକୁ ଅନନ୍ତକାଳ ପର୍ଯ୍ୟନ୍ତ ଆମର ଜ୍ଞାନ ପିପାସାକୁ ଶାନ୍ତ କରିବ ନିଶ୍ଚୟ । ଭଗବଦ୍‌ଗୀତାର ଗୋଟିଏ ଶ୍ଳୋକ ଉଦାହରଣ ଦେଇ ମୋ ଲେଖାକୁ ଏଇଠି ବିରାମ ଦେଉଛି । ଯାହାକୁ ସମସ୍ତେ ଜାଣିଛନ୍ତି, ଯିଏ ସମସ୍ତଙ୍କୁ ଜାଣିଛନ୍ତି ତାଙ୍କ ବିଷୟରେ ମୁଁ ବା ଅଧିକ କ'ଣ କହିବି !

ମଚ୍ଚିତ୍ତା ମଦ୍‌ଗତ ପ୍ରାଣ । ବୋଧୟନ୍ତଃ ପରସ୍ପରମ୍ ।।
କଥୟନ୍ତଶ୍ଚ ମାଂ ନିତ୍ୟଂ । ତୁଷ୍ୟନ୍ତି ଚ ରମନ୍ତି ଚ ।। (ଗୀତା-୧୦/୯)



ହିନ୍ଦୀବିଭାଗ, ବିଶ୍ୱଭାରତୀ
ଶାନ୍ତିନିକେତନ-୭୩୧୨୩୫
ମୋ-୯୯୩୭୩୫୧୨୦୭

# ବାକି ରହିଗଲା ବହୁତ କଥା

ଡ. ମୃଣାଳ ଚାଟାର୍ଜୀ

ଓଡ଼ିଆ ସାହିତ୍ୟ ସମ୍ପର୍କରେ ଗବେଷଣା କରୁଥିବ କିମ୍ବା ଓଡ଼ିଆରେ ସର୍ଜନାତ୍ମକ ଲେଖା ଲେଖୁଥିବ ଅଥଚ ଡକ୍ଟର କେ.ସି. ବେହେରାଙ୍କୁ ଜାଣିନଥିବ- ସାମ୍ପ୍ରତିକ ସମୟରେ ଏମିତି ହୋଇ ନପାରେ । ଓଡ଼ିଆ ସାହିତ୍ୟ ଓ ଗବେଷଣା କ୍ଷେତ୍ରରେ କୃଷ୍ଣସାର୍‌ଙ୍କର ମାନ୍ୟତାଟା ଏଇ ପର୍ଯ୍ୟାୟର ଥିଲା । ଆଚ୍ଛା ସେ ଉଭୟ ଡକ୍ଟର କେ.ସି. ବେହେରା ଏବଂ କୃଷ୍ଣ ସାର୍ ନାମରେ ପରିଚିତ ଥିଲେ । ଇଏ ଏକ ବିଚିତ୍ର କଥା । ଏହାର ଅର୍ଥଟି ହେଲା ସେ ଯୁଗପତ୍ ଭଲ ପାଇବା ଏବଂ ମାନ୍ୟତା ପାଉଥିଲେ । କେହି କେହି ତାଙ୍କ ଆପାତଃ ଗମ୍ଭୀର ଚେହେରା ଦେଖି ତାଙ୍କୁ ଡକ୍ଟର କେସି ବେହେରା ପର୍ଯ୍ୟାୟରେ ରଖୁଥିଲେ । ଆଉ କେହି କେହି ତାଙ୍କର ନିକଟତର ହୋଇ ତାଙ୍କୁ କୃଷ୍ଣ ସାର୍ ପର୍ଯ୍ୟାୟକୁ ନେଇ ଆସିଥିଲେ ।

ଆଚ୍ଛା ସୃଜନ ଦୃଷ୍ଟିରୁ ଦେଖିଲେ ମଧ୍ୟ ତାଙ୍କର ଦୁଇଟି ଚେହେରା । ଗୋଟେ ହେଲା ସୃଜନାତ୍ମକ ଲେଖା । ସେ ଚମତ୍କାର ଗଳ୍ପ ଲେଖିଛନ୍ତି । ଆଉ ଗୋଟେ ଦିଗ ହେଲା: ଗବେଷଣା । ଓଡ଼ିଆ ସାହିତ୍ୟରେ ଗବେଷଣା ଦିଗଟିକୁ ଦୃଢ଼ତାର ଏବଂ ସେଥିରେ ଅଧିକ ଶୃଙ୍ଖଳା (ଇଂରାଜୀରେ ଯାହାକୁ ରିଗର ବୋଲି କୁହାଯାଇପାରେ) ଆଣିବା ଦିଗରେ ତାଙ୍କର ଅବଦାନ ଥିଲା ସର୍ବାଧିକ । ଓଡ଼ିଆ ଗବେଷଣା ପରିଷଦକୁ ସେ ଏକ ଜାତୀୟ ସ୍ତରର ଗବେଷଣା ସଂସ୍ଥାର ରୂପ ଦେଇ ପାରିଥିଲେ ।

ଗବେଷଣା କ୍ଷେତ୍ରରେ ସେ ବଡ଼ ନିଷ୍ଠାପର ଥିଲେ । ବ୍ୟକ୍ତିଗତ ଭାବେ ମୁଁ ସେ ନିଷ୍ଠା ଏବଂ ଅନୁଶାସନର ଅନେକ ଦୃଷ୍ଟାନ୍ତ ଦେଖିଛି । ମୃଣାଳ, ତଥ୍ୟ ତ ଖଞ୍ଜିଦେଲ- ତତ୍ତ୍ୱଟା କାଇଁ, ତୁମେ କ'ଣ କହିବାକୁ ଚାହୁଁଛ ସେଟା ତ ସ୍ପଷ୍ଟ ହେଲା ନାହିଁ- ତାଙ୍କର କଥା ଏବେବି ମୋର ଗୋଟି ଗୋଟି କରି ମନେ ଅଛି । ଗବେଷଣା- ଭିତ୍ତିକ ନିବନ୍ଧରେ ତଥ୍ୟ ଯେତିକି ଜରୁରୀ, ତତ୍ତ୍ୱ ଆଉ ତୁମ ନିଜର ବକ୍ତବ୍ୟ ସେତିକି ଜରୁରୀ- ନହେଲେ ଆଉ ଜ୍ଞାନଭଣ୍ଡାରକୁ ତମର ଯୋଗଦାନ କ'ଣ ରହିଲା ? ଇଏ ଥିଲା ତାଙ୍କର ବକ୍ତବ୍ୟ । ତାଙ୍କ ବକ୍ତବ୍ୟ ସହିତ ମୁଁ ସମ୍ପୂର୍ଣ୍ଣ ଏକମତ ।

ଦୈନିକ ଜନମତରେ ସେ କିଛି ମାସ ସମ୍ପାଦକ ଥିଲେ । ସେତେବେଳେ ତାଙ୍କ ଅନୁରୋଧରେ ସେଥିରେ ଗୋଟେ ସ୍ତମ୍ଭ ଲେଖୁଥିଲି । ସେ ତାକୁ ପଢୁଥିଲେ ଏବଂ ମଝିରେ ମଝିରେ ମନ୍ତବ୍ୟ ବି ଦେଉଥିଲେ । ଦିନେ ଟେଲିଫୋନ୍ କରି କହିଲେ ଆଉ କଟକ ଭୁବନେଶ୍ୱର ହୋଇ ପାରିବିନି । ଶାରୀରିକ ପରିଶ୍ରମ ଛଡ଼ା ବହୁତ ସମୟ ବି କେବଳ ଯିବା ଆସିବାରେ ଚାଲିଯାଉଛି ।

ସେ ଥିଲେ ସ୍ଥିତପ୍ରଜ୍ଞ । ସୁଖ ଓ ଦୁଃଖରେ ସମାନ ଭାବେ ଅବିଚଳିତ । ଜୀବନରେ ତାଙ୍କର ଦୁଃଖ କିଛି କମ ଆସିନି । ହେଲେ ତାହା ତାଙ୍କୁ ସୃଜନ ପଥରୁ ବିଚ୍ୟୁତ କରିପାରିନି । ବରଂ ନିଜ ଦୁଃଖକୁ ଅନ୍ତଲୀନ କରିବା ପାଇଁ ସେ ଅଧିକ କର୍ମମୁଖର ଓ ସର୍ଜନାତ୍ମକ ହୋଇ ଉଠିଥିଲେ । ଏ ଦିଗରେ ତାଙ୍କର ଆଉ ରବୀନ୍ଦ୍ରନାଥଙ୍କ ଭିତରେ ଅଦ୍ଭୁତ ସାମଞ୍ଜସ୍ୟ ରହିଛି । ଉଭୟେ ଦାରୁଣ ଦୁଃଖକୁ ସର୍ଜନ ଆଡ଼କୁ ମୁହାଁଇ ଦେଇ ପାରିଥିଲେ । ଏଥିପାଇଁ ବଡ଼ ଶକ୍ତିଶାଳୀ ହୃଦୟ ଲୋଡ଼ା । ତାହା ତାଙ୍କର ଥିଲା ।

ମୋତେ ସେ ବଡ଼ ସ୍ନେହ କରୁଥିଲେ । ମୁଁ ତାଙ୍କର ସିଧାସଳଖ ଛାତ୍ର ନ ଥିଲି । ଶ୍ରେଣୀକକ୍ଷରେ ତାଙ୍କଠୁ ପାଠ ପଢ଼ିନି କେବେ ? କଟକ ଭୁବନେଶ୍ୱରରେ ବେଶି ବର୍ଷ ରହିନି । ଓଡ଼ିଆ ଗବେଷଣା ପରିଷଦ ସହିତ ଖୁବ୍ ବେଶି ଯୋଗାଯୋଗ ବି ମୋର ନାହିଁ । ତେଣୁ ତାଙ୍କ ସହିତ ଖୁବ୍ ବେଶି ସମୟ ସାକ୍ଷାତ ଆଲୋଚନା ହୋଇନି । କିନ୍ତୁ ଗୋଟେ କଥାରେ ଅଛି- କେବେ ସମୟ ଜଣକ ସହିତ ବିତେଇଛ ସେଟା ବଡ଼ କଥା ନୁହେଁ- ବଡ଼ କଥା ହେଲା ସମୟଟା ବିତିଛି କେମିତି ! ଯେତିକି ସମୟ ତାଙ୍କ ସହିତ ସାକ୍ଷାତ ହୋଇଛି, କଥାବାର୍ତ୍ତା ହୋଇଛି ତାଙ୍କ ସ୍ନେହର ସ୍ପର୍ଶରେ ମୁଁ ଧନ୍ୟ ହୋଇଛି । ସେ ସ୍ନେହ ସ୍ପର୍ଶରୁ ଏବେ ମୁଁ ବଞ୍ଚିତ ।

ସେ ତାଙ୍କ ଜୀବନରେ ବହୁତ କାମ କରିଛନ୍ତି । ଆହୁରି ବହୁତ କାମ ତାଙ୍କର କରିବାକୁ ବାକି ରହିଗଲା । କିନ୍ତୁ ଯେତିକି କାମ ସେ କରିଛନ୍ତି (ଉଭୟ ସୃଜନାତ୍ମକ ଏବଂ ଗବେଷଣାଧର୍ମୀ ଲେଖା) ଓଡ଼ିଆ ସାହିତ୍ୟ ପାଇଁ ତାହା ଅମୂଲ୍ୟ । ଈଶ୍ୱର ତାଙ୍କ ଆତ୍ମାକୁ ଶାନ୍ତି ଦିଅନ୍ତୁ । ତାଙ୍କର ପରିବାରଜନ, ଛାତ୍ର ଏବଂ ଅନୁଗାମୀମାନଙ୍କୁ ତାଙ୍କ ପରି ସର୍ଜନଶୀଳ ହୁଅନ୍ତୁ, ଏତିକି ପ୍ରାର୍ଥନା । ❖

ସଂଚାର ମାର୍ଗ,
ଢେଙ୍କାନାଳ-୭୫୯୦୦୧

# କୃଷ୍ଣଚରଣଙ୍କ ସୃଷ୍ଟିର ନୂଆଦିଗ

ଡ. ବିଷ୍ଣୁପ୍ରିୟା ଓଟା

"ପ୍ରତିଭା ବୋଲି ଯେଉଁ ଶକ୍ତି, ତାହା ମୋ ଠାରେ ଅଛି ବୋଲି ବିଶ୍ୱାସ ହୁଏନା । ଯାହା କିଛି ଏ ପର୍ଯ୍ୟନ୍ତ ଲେଖିଛି- ନିଷ୍ଠା ଓ ଅଧ୍ୟବସାୟ ବଳରେ ।"(କୃଷ୍ଣଚରଣ ବେହେରା)

ଏ ହେଉଛନ୍ତି ପ୍ରତିଭାଦୀପ୍ତ ସାହିତ୍ୟିକ ଛାତ୍ରବତ୍ସଳ ଅଧ୍ୟାପକ, କୃଷ୍ଣଚରଣ ବେହେରା । ସମକାଳୀନ ସାହିତ୍ୟକୁ ସମୃଦ୍ଧ କରିବାରେ ଡକ୍ଟର କୃଷ୍ଣଚରଣ ବେହେରାଙ୍କର ଅନବଦ୍ୟ ଅବଦାନ ବେଶ୍ ସ୍ମରଣୀୟ । ଦୀର୍ଘକାଳ ନିରବଚ୍ଛିନ୍ନ ଭାବରେ ସାହିତ୍ୟ ସାଧନା, ଗବେଷଣା ଓ ସଂଗଠନ ଦକ୍ଷତା କେବଳ ତାଙ୍କ ନିକଟରେ ହିଁ ସମ୍ଭବ ଥିଲା । ସେ ଏକାଧାରରେ କବି, ନାଟ୍ୟକାର, କଥାଶିଳ୍ପୀ, ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ ଜୀବନ ତାଙ୍କର କଟିଥିଲା ନିରଳସ ସାରସ୍ୱତ କର୍ମରେ । ଜୀବନ ବ୍ୟାପୀ ସାରସ୍ୱତ ସାଧନା ମାଧମରେ ଓଡ଼ିଆ ସାହିତ୍ୟ ଗବେଷଣାରେ ଜଣେ ଅଗ୍ରଗଣ୍ୟ ବ୍ୟକ୍ତିତ୍ୱ ଭାବରେ ସେ ପରିଚିତ । ତାଙ୍କର ଗଦ୍ୟ ଯେଉଁଳି ମହତ୍ୱପୂର୍ଣ୍ଣ କବିତା ସେପରି ଉଜ୍ଜ୍ୱଳତାର ଭାସ୍ୱର । ତାଙ୍କର ପ୍ରବନ୍ଧ ଓ ସମାଲୋଚନା ବେଶ୍ ଗବେଷଣାଧର୍ମୀ । ନାଟକ ଏକାଙ୍କିକା ରଚନା ସହ ନିଜେ ଅଭିନୟ କରନ୍ତି । ସେ ନିଜେ କହନ୍ତି ଯେ ନାରୀଭୂମିକାରେ ମଧ ସେ ଅଭିନୟ କରିଥିଲେ । 'ମୋଗଲ ତାମସା'କୁ ସେ ପ୍ରଥମେ ଲୋକଲୋଚନକୁ ଆଣିଥିଲେ । ଓଡ଼ିଆ ଭାଷା ସାହିତ୍ୟର ଜଣେ ପ୍ରବୀଣ ଓ ନିଷ୍ଠାପର ଅଧ୍ୟାପକ ତଥା ପ୍ରାଧ୍ୟପକ ଭାବରେ ଭଦ୍ରକ, ବାରିପଦା ଓ ରେଭେନ୍ସା ମହାବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କର ବେଶ୍ ପ୍ରିୟ ଥିଲେ । ସାହିତ୍ୟ ସଂସ୍କୃତିର ଜଣେ ନିଷ୍ଠାପର ବ୍ୟକ୍ତିତ୍ୱ, ଜଣେ ସୁସଂଗଠକ ଭାବରେ ଆମ ଭାଷା ସାହିତ୍ୟରେ ବେଶ୍ ସ୍ମରଣୀୟ । ତାଙ୍କ ହାତଗଢ଼ା ବିରଳ ଅନୁଷ୍ଠାନ ଗବେଷଣା ପରିଷଦ ଆସି ସଇଁତିରିଶ ବର୍ଷରେ ପଦାର୍ପଣ କରିଛି ।

କେତେବେଳେ କବି କୃଷ୍ଣଚରଣ ବେହେରା କବି ଭାବରେ 'ଚା' କପ୍‌ରେ ଝଡ଼', 'ଯୋଜନା ଯଜ୍ଞ' ଓ '୫୪ ଭାନୁବାଈ ଲେନ୍' ପରି କବିତା ପୁସ୍ତକ ରଚନା କରନ୍ତି ତ କେତେବେଳେ 'ଲିମେରିକ୍' ବା କେତେବେଳେ ଆଧୁନିକ କବିତା ସହିତ

ସଙ୍ଗୀତ ଓ ଲଘୁକବିତା ରଚନା କରିଛନ୍ତି । କେତେବେଳେ ତାଙ୍କର କାବ୍ୟ ଜଗତ କପଟତା, ଛଳନା ପ୍ରତାରଣା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛି ତ, କେତେବେଳେ ସୃଷ୍ଟି କରିଛି ଅମୃତ ଓ ନୂତନ ଜୀବନର ସ୍ପନ୍ଦନ । ମାଟି, ଗାଁ, ମଣିଷ ବିଶେଷ କରି ଶୋଷିତ ଓ ଅସହାୟ ମଣିଷ, ପତିତା ଓ ନିର୍ଯାତିତା ନାରୀ ପ୍ରତି ସେ ପ୍ରକାଶ କରିଛନ୍ତି, ସହାନୁଭୂତି । ସମୟର ପରିବର୍ତ୍ତନ ସହ ସମାଜରେ ନୂଆ କିଛି ଆଣିବାର ସ୍ୱପ୍ନ ଦେଖିଛନ୍ତି । ତେଣୁ ତାଙ୍କର କାବ୍ୟମାନସ ସ୍ୱପ୍ନଚାରୀ ନହୋଇ ବାସ୍ତବତାର ଭିତ୍ତିଭୂମି ଉପରେ ଚାହିଁଛି ମଣିଷ ସମାଜର ଉତ୍ତରଣ ।

ସଙ୍ଗୀତ ଓ ଲଘୁକବିତାରେ ପ୍ରେମ, ଦେଶାତ୍ମବୋଧ, ବିଭୁପ୍ରୀତି, ଆଦି ଭାବନାକୁ ନେଇ ସରଳ, ସାବଲୀଳ ଭାବରେ ସଙ୍ଗୀତ ଲେଖିଛନ୍ତି । ତା' ସହିତ ଆଧୁନିକ ମଣିଷର କପଟତା, ଛଳନା, ଜୀବନ ଉପଭୋଗର ତୃଷ୍ଣା ଆଦିକୁ ନେଇ ସୃଷ୍ଟି କରିଛନ୍ତି ଛୋଟ ଛୋଟ ଲଘୁ କବିତା । ତାଙ୍କ ସଙ୍ଗୀତରେ ରହିଛି ଗାନ ଯୋଗ୍ୟତା, ଯାହିକି ଖୁବ୍ ଶ୍ରୁତି ମଧୁର । ସମାଜରେ ପ୍ରଚଳିତ ଜାତିଆଣ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ବିଦ୍ରୋହର କବିତା ଲେଖନ୍ତି ଏବଂ ଦଳିତ, ନିଷ୍ପେସିତଙ୍କ ଉଦ୍ଦେଶ୍ୟରେ ଦୁଃଖ ଓ ସୁଖରେ ଜର୍ଜରିତ ସହାନୁଭୂତିଶୀଳ କବିତା ସୃଷ୍ଟି କରନ୍ତି ଡ. ବେହେରା । ମାଟି, ମଣିଷ ସମାଜ ଓ ସଂସ୍କୃତିକୁ ନେଇ ତାଙ୍କ କବିତାଗୁଡ଼ିକ ରସାଣିତ । ତାଙ୍କର ଲଘୁକବିତା ଏକ ସ୍ୱତନ୍ତ୍ରତାର ପରିଚୟ ଦିଏ । କବିତାଗୁଡ଼ିକରେ ଯେଭଳି ଭାବାବେଗ ରହିଛି, ଭାଷା-ସରଳ ଓ ବ୍ୟଙ୍ଗାତ୍ମକ ହୋଇଉଠିଛି । ଇଂରାଜୀରେ ଏହି କିସମର କବିତାକୁ 'ଲିମେରିକ' କୁହାଯାଏ । ତାଙ୍କର ଏହି କବିତାଗୁଡ଼ିକ ନିଜସ୍ୱ ମହିମାରେ ରଦ୍ଧିମନ୍ତ । ବାହାରକୁ ସହଜ ହାସ୍ୟ-ରସର କବିତା ଭଳି ମନେହେଲେ ହେଁ ଭିତରେ ତୀବ୍ର ବ୍ୟଙ୍ଗର ସ୍ୱର ଦେଖିବାକୁ ମିଳେ । ସାଂପ୍ରତିକ କାଳର ବିଭିନ୍ନ ସମସ୍ୟା, ସାମାଜିକ ବିଶୃଙ୍ଖଳା, ଶିକ୍ଷା ବ୍ୟବସ୍ଥା, ଦୁର୍ନୀତି, ନାରୀଧର୍ଷଣ, ସାଂପ୍ରଦାୟିକତା, ସରକାରୀ ଚାକିରିରେ ଧରାଧରି ଓ ଲାଞ୍ଚ ଇତ୍ୟାଦି ସମସ୍ୟା ନିମନ୍ତେ ତାଙ୍କ ଲଘୁ କବିତାଗୁଡ଼ିକ ସାର୍ଥକ ବ୍ୟଙ୍ଗାତ୍ମକ ଭଳି ମନେହୁଏ ।

ଓଡ଼ିଆ କ୍ଷୁଦ୍ରଗଳ୍ପ ଜଗତରେ ମଧ୍ୟ ତାଙ୍କର ଲେଖନୀ ତାଙ୍କ ସ୍ୱଜନ ବ୍ୟକ୍ତିତ୍ୱର ଅନ୍ୟ ଏକ ସ୍ୱାକ୍ଷର । 'ସୃଷ୍ଟିର ସ୍ୱପ୍ନ', 'ଗୋପନ ପତ୍ର', 'ଉଭା ଓ ପୋଡ଼', 'ବେଦୀ' ଇତ୍ୟାଦି ଗଳ୍ପ ପୁସ୍ତକ ତାଙ୍କର ଗାଳ୍ପିକ ସତ୍ତାର ପରିଚୟ ବହନ କରେ । ତାଙ୍କ ଗଳ୍ପଗୁଡ଼ିକରେ ସାମାଜିକ ଜାତୀୟତାବୋଧର ସ୍ୱର ରହିଥିଲେ ହେଁ ପ୍ରତ୍ୟେକଟି ଗଳ୍ପରେ ମାନବିକ ସମ୍ବେଦନାର ସ୍ୱର ବାରି ହୋଇପଡ଼େ । ଅନେକ ଗଳ୍ପରେ ରହିଛି ନିର୍ଯାତିତ ଓ ଦଳିତଙ୍କ ପ୍ରତି ଗଭୀର ସହାନୁଭୂତି । ଗଳ୍ପରେ କଥାବସ୍ତୁ ଓ ଚରିତ୍ର ଉଭୟକୁ ସେ ବେଶ୍ ଗୁରୁତ୍ୱ ଦେଇଛନ୍ତି । ତାଙ୍କର ଲକ୍ଷ୍ୟ ହେଉଛି ସବୁରି ଭିତରେ ମାନବିକତାର ଭାବ ଉଦ୍ରେକ ସତ୍ୟ

କଥନ ଏବଂ ଆଦର୍ଶର ଛଳନା କରି ବାସ୍ତବତାକୁ ସେ ଅସ୍ୱୀକାର କରିନାହାନ୍ତି । ତାଙ୍କର ବିଭିନ୍ନ ଗଳ୍ପରେ ମଣିଷ ହିଁ ଜୀବନ୍ତ ହୋଇ ଦେଖା ଦେଇଛି । ରାଜ୍ୟ-ରାଜ୍ୟ ମଧ୍ୟରେ ସାମାଜିକତା ଓ ସାଂସ୍କୃତିକ ଭିନ୍ନତା ଥିଲେ ମଧ୍ୟ ବେଶ୍ ଉଚ୍ଚମନୋଭାବକୁ ନେଇ ସେମାନଙ୍କ ଭିତରେ ସଂହତି ଓ ସଂପର୍କ ସ୍ଥାପନ କରିଛନ୍ତି ।

ତାଙ୍କର ବହୁଚର୍ଚ୍ଚିତ ଗଳ୍ପ 'ବେଦୀ' ସଂପର୍କରେ ଆଲୋଚନା କଲେ ଜଣାଯାଏ ଯେ, ଏହି ନିର୍ଦ୍ଦିଷ୍ଟ ଗଳ୍ପଟି ପାଇଁ ଅନେକ ସମାଲୋଚନାର ଶିକାର ହୋଇଛନ୍ତି, ସେ ସୁନ୍ଦର ବକ୍ତବ୍ୟଟିଏ ପ୍ରଦାନ କରିଥିଲେ- 'ବେଦୀ ଗଳ୍ପ କ୍ଷେତ୍ରରେ ନୂଆ କଥାହେଲା ସାହିତ୍ୟ ସମାଲୋଚନା ନାମରେ ଏହି ହତଭାଗା ଦେଶରେ ଚର୍ବିତ ଚର୍ବଣ ରୀତି, ଧରାକରା ପ୍ରଚଉର ବ୍ୟବହାର ଓ ବ୍ୟକ୍ତିଗତ ବିଦ୍ୱେଷ ବଶତଃ କୁତ୍ସା କରିବାର ମନୋବୃତ୍ତି । ସବୁଠାରୁ ଦୁଃଖର କଥା ୧୨ ବର୍ଷରୁ ଅଧିକ କାଳ ଅତିକ୍ରାନ୍ତ ହୋଇଥିଲେ ହେଁ ଏ ପର୍ଯ୍ୟନ୍ତ ବେଦୀ ଗଳ୍ପର ସାହିତ୍ୟ ସମାଲୋଚନା ମୁଁ ଜାଣିବାରେ କେହି କରିନାହାନ୍ତି । ସମସ୍ତଙ୍କର ସମାଲୋଚନା ସାମାଜିକ ସମାଲୋଚନାରେ ସୀମାବଦ୍ଧ ହୋଇ ରହିଛି । ଅନେକ ସମୟରେ ତାଙ୍କ ଗଳ୍ପର ଧାରା ସ୍ୱତଃସ୍ଫୂର୍ତ୍ତ ଓ ଗଳ୍ପର ଉଦ୍ଦେଶ୍ୟ ସାଧନ ନିମନ୍ତେ ସେ ନିଷ୍ଠାପର ପରିଶ୍ରମ କଲାଭଳି ମନେହୁଏ । ତାଙ୍କର ବହୁଚର୍ଚ୍ଚିତ ଗଳ୍ପ 'ବେଦୀ'ରେ ନାୟକ ଓ ନାୟିକାଙ୍କର ଚିତ୍ର ଶୌର୍ଯ୍ୟବୀର୍ଯ୍ୟର ସବିତା, ରୂପ ରସ ଗନ୍ଧର ଗାୟତ୍ରୀ ଭାବରେ ବର୍ଣ୍ଣନା କରିଛନ୍ତି । ଗଳ୍ପଟିର ପୃଷ୍ଠଭୂମି ହେଉଛି କୋଣାର୍କ ମନ୍ଦିରର ପରିସର । ଗଳ୍ପଟିରେ ପରିଚ୍ଛନ୍ନ ଭାଷା ଥିଲା; ଯେଉଁଥିରେ କି ଅଶ୍ଳୀଳ ଶବ୍ଦ କିଛି ନଥିଲା, ଲେଖକ ନାରୀ ପୁରୁଷର ସଂପର୍କ ମିଳିତ ହେବାର ପରିବେଶକୁ ଖୁବ୍-ସୁନ୍ଦର ଶବ୍ଦର ପ୍ରୟୋଗ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । ଏଠି ଅଶ୍ଳୀଳତାର କିଛି ଚିହ୍ନ ବର୍ଣ୍ଣ ନାହିଁ ବୋଲି ନିଜେ କହିଛନ୍ତି- "ଦୁହେଁ ଦୁହିଁଙ୍କ ଏକ ଧ୍ୟାନରେ ନିଷ୍ପଲକ ନୟନରେ ବହୁକ୍ଷଣ ଚାହିଁରହିଲେ । ଆଖି ଆଗରେ ଦେହ ଏବଂ ଦେହ କୋଣାର୍କରେ ସେହି ସମଗ୍ର ପରିସର ଓ ପରିବେଶ ଖାଲି ନଗ୍ନ ଦେହ, ସବୁଜ ସତେଜ × × × ଉଜ୍ଜ୍ୱଳ ଜୀବନ × × × ଆକାଶ ପରିମୁକ୍ତ, ନିର୍ମଳ ଓ ନିରାଭରଣ; କାଳିମାର ରେଖା ନାହିଁ । ମାପର ସ୍ପର୍ଶ ନାହିଁ, ଅଶ୍ଳୀଳତାର ଚିହ୍ନବର୍ଣ୍ଣ ନାହିଁ; ନିଷ୍କଳଙ୍କ ଓ ନିର୍ମୂକ ମୁକ୍ତ ଦେହ ।

ବକ୍ତବ୍ୟର ଏଭଳି ସ୍ପଷ୍ଟତା ଓ ପରିଚ୍ଛନ୍ନତା ସତ୍ତ୍ୱେ ଏହି ଗଳ୍ପଟି ବହୁ ଜନାବୃତ ହେବା ଦ୍ୱାରା ଏହାକୁ ଗ୍ରହଣ କରିବା ପାଇଁ ଅନେକଙ୍କର ମାନସିକ ପ୍ରସ୍ତୁତି ନଥିଲା । ଗଳ୍ପଟି ବହୁ ପତ୍ରିକା ଦ୍ୱାରା ପ୍ରତ୍ୟାଖିତ ହେଲା ପରେ ଭଦ୍ରକର 'ଶତରୂପା' ପତ୍ରିକାରେ ପ୍ରକାଶ ପାଇଥିଲା । ଏହା ଡ. ବେହେରାଙ୍କର ବହୁ ଚର୍ଚ୍ଚିତ ଗଳ୍ପ । ଦୁଇ ଯୁବକ ଓ ଯୁବତୀଙ୍କ ଚରିତ୍ର ଦେଇ ମଣିଷର ଆଦିମ ଆକାଂକ୍ଷାର ଚିତ୍ର ବର୍ଣ୍ଣିତ । ଏଠାରେ ଦେହ

ଉପଭୋଗର ମାଧ୍ୟମ ନ ହୋଇ ବିବେଚିତ ହୋଇଛି, ଏକ ପବିତ୍ର ଯଜ୍ଞ ବେଦୀରେ ବାହାରୁ ଏହାକୁ ଅନେକ ଅଶ୍ଳୀଳ କହିଲେ ହେଁ ଏହାର ଭିତରେ ରହିଛି ମଣିଷର ଆଦିମ ଆକାଂକ୍ଷାର ମାଧୁର୍ଯ୍ୟ ଓ ସୃଜନର ଚିତ୍ର । ଏକ ପବିତ୍ର ଯଜ୍ଞବେଦୀ ଭାବରେ ମଣିଷର ଗଭୀର ସମ୍ଭୋଗ ଏବଂ ଆନନ୍ଦ ତଥା ସୌନ୍ଦର୍ଯ୍ୟ ଭାବରେ ଉପସ୍ଥାପନ କରିଛନ୍ତି ଲେଖା ପ୍ରସଙ୍ଗଟି ଯୌନତାର, ହେଲେହେଁ ଶିବ ଓ ଗଙ୍ଗାଙ୍କର ମିଳନର ଚିତ୍ର ପ୍ରଦାନ କରନ୍ତି ଲେଖକ । ଏଠାରେ ସମାଲୋଚନାଗୁଡ଼ିକ ସାହିତ୍ୟ ସମାଲୋଚନା ନ ହୋଇ ସାମାଜିକ ସମାଲୋଚନା ହୋଇଥିବାରୁ କ୍ଷୋଭ ପ୍ରକାଶ କରିଥିଲେ ଲେଖକ । ଅନ୍ୟାନ୍ୟ ଅନେକ ଗଳ୍ପରେ ବେଦୀ ଭଳି ବିଷୟ ପ୍ରସଙ୍ଗ ରହିଛି । ଯେପରିକି 'ଆଦିଗଳ୍ପ' ସଂକଳନରେ ସ୍ଥାନିତ ଅନେକ ଗଳ୍ପ ସେହିପରି । ଲେଖକ ତାଙ୍କର 'ଦେହ ଓ ଦେହୀ'ରେ ନାରୀର ଶରୀରକୁ ନର୍କର ଦ୍ୱାର କହୁଥିବା କଥାଟିକୁ ପ୍ରତିବାଦ କରି କହିଛନ୍ତି । ତାଙ୍କ ଗଳ୍ପର ଚରିତ୍ରର ଭାବନା ମଧ୍ୟରେ ପ୍ରକାଶ କରିଛନ୍ତି ।

କାହିଁକି ଜଣେ ଯୁବତୀର ଦେହକୁ ନେଇ ଏତେ ସନ୍ଦେହ ? ଏତେ କଦର୍ଯ୍ୟ ସଂପର୍କର ପରିକଳ୍ପନା ? ବସନ୍ତ ମନରେ ପ୍ରଶ୍ନ ଉଠିଲା ନାରୀ ଦେହ କାହିଁକି ହେବ ନରକର ଦ୍ୱାର ? କାହିଁକି ତାହା ସ୍ୱର୍ଗର ସୋପାନ ରୂପେ ବିବେଚିତ ନ ହେବ ? ଏହି ଦେହକୁ ଦେବାଳୟ କରିବା ପାଇଁ ତ ଆମ ପୂର୍ବପୁରୁଷମାନେ କେତେପ୍ରକାର ଯୋଗ ସାଧନା କେତେ ଆସନ, ପ୍ରାଣାୟାମର ବ୍ୟବସ୍ଥା କରିଯାଇଛନ୍ତି । 'ଆମ ପରମ୍ପରାରେ' କାୟା-ସାଧନା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ବେଶ୍ ଉଚ୍ଚସ୍ଥାନ ଲାଭ କରିଛି । ଆଜି କାହିଁକି ତେବେ ସେହି ଦେହ ବିଷୟରେ ଏତେ ବିକାର ଏତେ ବିସମ୍ବାନ ଏହା କହିବା ସହିତ ଶେଷରେ ସେହି ମୂଳକଥାଟିକୁ କହିଛନ୍ତି, "ଗୋପାର ସେହି ସୁନ୍ଦର ପବିତ୍ର ଦେହ ବସନ୍ତ ନିକଟରେ ପ୍ରେମର ପୂଜା-ବେଦୀ ବ୍ୟତୀତ ଆଉ କ'ଣ ହୋଇପାରେ ?" ତେଣୁ ଏଠାରେ କହିବାର କଥା ହେଉଛି ସଂସାରରେ ରହି ଶରୀର ମିଳନ ସମ୍ପର୍କରେ ସ୍ପଷ୍ଟ ଭାବରେ ଗଳ୍ପରେ ଲେଖିଥିବାର ସେ ବହୁ ଚର୍ଚ୍ଚିତ । ମାତ୍ର ପ୍ରେମ କେବଳ ମାନସିକ ସମ୍ପର୍କ ନୁହେଁ ଶାରୀରିକ ସମ୍ପର୍କ ତା' ସହିତ ଜଡ଼ିତ ହେଲେ ହେଁ ବା ଯୌନତା ମଧ୍ୟ ପ୍ରେମର ସହଯୋଗ ସହାବସ୍ଥାନ ବୋଲି କହିଛନ୍ତି । 'ଦେହରୁ ପ୍ରାଣ ପର୍ଯ୍ୟନ୍ତ ଓ ପ୍ରାଣରୁ ଦେହପର୍ଯ୍ୟନ୍ତ' ୨ଟି ଗଳ୍ପରେ ସେହି ଲେଖକ ବ୍ୟକ୍ତ କରନ୍ତି 'ଆମର ଭଲପାଇବା କ'ଣ କେବଳ ଶରୀରକୁ ଘେନି ? ଶରୀରକୁ ଭିତ୍ତି କରି ହୁଏତ ତାହା ଆରମ୍ଭ ହୁଏ ମାତ୍ର ପରେ ତାହା ପ୍ରାଣ ଓ ଆତ୍ମା ଆଡ଼କୁ ପ୍ରସାରିତ ହୋଇଥାଏ । ଯୌନତାରୁ ଯାହାର ଆରମ୍ଭ ପ୍ରେମରେ ହିଁ ତା'ର ପରିଣତି । ଅନ୍ୟ ଗଳ୍ପ 'ପ୍ରାଣରୁ ଦେହ ପର୍ଯ୍ୟନ୍ତ'ରେ ମୋହନ ଓ ମୋନାଲିସାଙ୍କର ସମ୍ପର୍କର ଘନିଷ୍ଠତାର ଅବତାରଣା କରି କହିଛନ୍ତି 'ଜଣେ ଶରୀର ହେଲେ ଅନ୍ୟଜଣକ ତା'ର ଅଳଙ୍କାର ।

ଜଣେ ମନ୍ଦିର ହେଲେ ଅନ୍ୟଜଣକ ତା'ର ମଙ୍ଗଳଦୀପ' । ମୋହନ ମୁହଁରେ ମୋନାଲିସାକୁ କହିଛି- "ଯୌନତା ମଧ୍ୟରେ ପ୍ରେମ ସୀମାବଦ୍ଧ ହୁଏନା ମୋନା ବରଂ ବିସ୍ତାରିତ ହୁଏ । ପରିପକ୍ୱତା ଲାଭକରେ । ଶରୀର ସମ୍ପର୍କକୁ ଛାଡ଼ି ପ୍ରେମର ସ୍ଥିତି କେଉଁଠି ? ଆମ ଶରୀର ହେଉଛି ସେହି ପ୍ରେମର ପୂଜାବେଦୀ । ତେଣୁ ଏହି ଗପସବୁରୁ ଅନୁଭବ କରି ହୁଏ ଯେ ବେଦୀଗପର ସମାଲୋଚନାରେ ସେ ଅବଦମିତ ନ ହୋଇ ପରବର୍ତ୍ତୀ ଗଳ୍ପ ସବୁରେ ମଧ୍ୟ ସେହି ବାସ୍ତବ ଭାବଧାରାକୁ ଭିନ୍ନ ଭିନ୍ନ ପରିବେଶ ଓ ପରିସ୍ଥିତିରେ ଉପସ୍ଥାପିତ କରିଛନ୍ତି । ସମୟର ପରିବର୍ତ୍ତନ ସହ ବହୁ ସମାଲୋଚକ ଏସବୁ ଗଳ୍ପକୁ ବେଶ୍ ଉଚ୍ଚମନୋଭାବର ଗଳ୍ପ ଭାବେ ଗ୍ରହଣ କରିନେଇଛନ୍ତି । ପ୍ରତ୍ୟେକଟି ସମାଲୋଚନାକୁ ବେଶ୍ ଆଦରର ସହ ଗ୍ରହଣ କରିନିଅନ୍ତି ଗାଳ୍ପିକ କୃଷ୍ଣଚରଣ ବେହେରା ତାଙ୍କ ଅନ୍ୟ ଏକ ଗଳ୍ପ 'ସତୀ' ସମ୍ପର୍କରେ କହନ୍ତି- ବେଦୀପରି ମୋର 'ସତୀ' ଗଳ୍ପ କଲିକତାରେ 'ନବରବି' ପତ୍ରିକାକୁ ପ୍ରଥମେ ପ୍ରେରିତ ହୋଇଥିଲା, କିନ୍ତୁ ତାହା ସେଥିରେ ପ୍ରକାଶ ପାଇଲା ନାହିଁ । ପରେ ତାହା ଝଂକାରରେ ପ୍ରକାଶିତ ହେଲା ଏବଂ ସୁଧୀମଣ୍ଡଳୀରେ ଗଳ୍ପଟିର ସପକ୍ଷ ବିପକ୍ଷଷର ବିଭିନ୍ନ ମତ ପ୍ରକାଶ ପାଇଥିଲା ଏ ଗଳ୍ପଟି ମଧ୍ୟ ମୋତେ କମ୍ ଯଶସ୍ୱୀ କରାଇନାହିଁ । ତେବେ ଏ ଗଳ୍ପଟି ସାମାଜିକ ବଡ଼ ବନ୍ଧନ ମାନିନାହିଁ ମାତ୍ର ଗଳ୍ପଟିରେ ସାହିତ୍ୟିକ ଆବେଦନ ରହିଛି ।

ଲେଖକଙ୍କ 'ଇତରାଇତରା' ଗଳ୍ପ ସଂକଳନଟିରେ ବ୍ୟକ୍ତିଚେତନା, ସାମାଜିକ ଓ ସାଂସ୍କୃତିକ ଚେତନା ବେଶ୍ ନିଛକ ଭାବରେ ପ୍ରକାଶ ଲାଭ କରିଛି । କେହି କେହି ପାଠକ ସମାଲୋଚକ ଓ ନିଜେ ସଂକଳକ ଏହି ଗଳ୍ପଗୁଡ଼ିକୁ ଗୋଷ୍ଠୀବିଜ୍ଞାନ ଭିତ୍ତିକ ନାମିତ ହେବା ଆବଶ୍ୟକ ବୋଲି ସଂକଳନଟିରେ ଭୂମିକାରେ ଉଲ୍ଲେଖ କରିଛନ୍ତି । ଗାଳ୍ପିକ ଝିଅ ହଜିଛି, ମଇଳାକୁଣ୍ଡ, ନୂଆ ମେରିଆ ପରି କେତୋଟି ଆଦିବାସୀ ଜୀବନ ଓ ସଂସ୍କୃତି ଭିତ୍ତିକ ଗଳ୍ପ ଲେଖିଛନ୍ତି । ଭଗବତୀ ଚରଣ ପାଣିଗ୍ରାହୀ ଓ ଗୋପୀନାଥ ମହାନ୍ତିଙ୍କଠାରୁ ଆରମ୍ଭ କରି କୃଷ୍ଣଚରଣଙ୍କ ପର୍ଯ୍ୟନ୍ତ ବହୁ ଗଳ୍ପ ସୃଷ୍ଟି ଲାଭ କରିଛି । ଗାଳ୍ପିକ କୃଷ୍ଣଚରଣ ଆଦିବାସୀ ମଣିଷର ସ୍ୱାଭିମାନ ଓ ସଂଗ୍ରାମର ଚିତ୍ର ଉପସ୍ଥାପନ କରିଛନ୍ତି । ନିରୀହ ସରଳ ଆଦିବାସୀ ଯୁବତୀକୁ ପ୍ରଲୋଭିତ କରି ସହରୀ କୁଟିଳ କପଟୀ ମଣିଷ ତା'ର ଯୌନଲାଳସାକୁ ଚରିତାର୍ଥ କରିବାକୁ ଖୁବ୍ ବିଦ୍ରୋହାତ୍ମକ ଶୈଳୀରେ ଉପସ୍ଥାପନ କରିଛନ୍ତି ଲେଖକ 'ମଇଳାକୁଣ୍ଡ' ଗଳ୍ପର ଉଦାହରଣରୁ ଲେଖକଙ୍କର ମତ ବେଶ୍‌ସ୍ପଷ୍ଟ ହୋଇଥାଏ । ମଇଳାକୁଣ୍ଡରେ ଆପଣ ସବୁଯାକ ମଇଳା ଜମା କରନ୍ତୁ, ମୋର ଆପତ୍ତି ନାହିଁ, କିନ୍ତୁ ମଣିଷ ଜୀବନ ଘେନି ମଇଳାକୁଣ୍ଡ ତିଆରି କରିବାକୁ ଆପଣଙ୍କର କି ଅଧିକାର ଅଛି ?- ସମାଜ ପ୍ରତି ଏହା ଥିଲା ତାଙ୍କର ସଚେତନ ଶାଣିତ ପ୍ରଶ୍ନ । ରାଇମନୀ ଚରିତ୍ର ମାଧ୍ୟମରେ

ଲେଖକ ସରଳ ଅସହାୟ ମଣିଷ ପ୍ରତି ସମବେଦନା ପ୍ରଦାନ କରି ତାକୁ ଦୃଢ଼ କରି ଛିଡ଼ା କରାଇଛନ୍ତି । ଉପଭୋଗୀ ମଣିଷମାନଙ୍କର କାମନା ଚରିତାର୍ଥ ନିମନ୍ତେ ଧର୍ଷିତା ରାଇମନୀ ପୁତ୍ର ସନ୍ତାନଟିଏର ମାଆ ହୋଇ ତା' ବିଚାରରେ ତା'ର ପାପକର୍ମ ପାଇଁ ନିଷ୍ପାପ ପୁଅ ତା'ର କାହିଁକି କଷ୍ଟ ଭୋଗିବ । ତେଣୁ ସେ ପୁଅର ନାମ ରଖିଛି ମଙ୍ଗଳ ଓ ତା'ରି ମଙ୍ଗଳ ପାଇଁ ସମାଜର ସଭ୍ୟ ନୀତିବାନ ବୋଲାଉଥିବା ମଣିଷମାନଙ୍କଠାରୁ ଟଙ୍କା ନେଇ ପୁଅକୁ ମଣିଷ କରିବ, ଦେହ ବ୍ୟବସାୟ କରି । ସେ ପ୍ରତିଜ୍ଞାବଦ୍ଧ ହୋଇଛି କାହାରି ଉପରେ ନିର୍ଭର ନକରି ନିଜେ ନିଜର ଏହି କର୍ମ ମାଧ୍ୟମରେ ହିଁ ଚଳିବ ବୋଲି । ଏଠାରେ ପ୍ରକାରାନ୍ତରେ ଲେଖକ ଦର୍ଶାଇଛନ୍ତି- ତା'ର ବେଶ୍ୟାବୃତ୍ତି ଅପରାଧ ନୁହେଁ, ବରଂ ସାମାଜିକ ବୋଲାଉଥିବା ମଣିଷମାନଙ୍କ ପ୍ରତି ଏକ ଶାଣିତ ଚେତାବନୀ । ଜଣେ ସମାଜ ସଚେତନ ତଥା ମାର୍କ୍ସୀୟ ସମୀକ୍ଷାତ୍ମକ ବାସ୍ତବତାର ଏକ ସୁନ୍ଦର ଆଲେଖ୍ୟ । ସାମାଜିକ ବିପ୍ଳବର ସ୍ୱର ଓ ସ୍ୱାକ୍ଷର ଏଥିରେ ଉପଲବ୍ଧ ହୁଏ । ତାଙ୍କର 'ଝିଅ ହଜିଛି'ର ଆଦିବାସୀ ନାରୀର ସ୍ୱାଭିମାନ 'ତୁଳସୀ'ରେ ନାରୀ ଅପହରଣ ଚିତ୍ର 'ନାରୀମେଧ'ରେ ପୁରୁଷ ସମାଜର ନାରୀ ଉପରେ ଅତ୍ୟାଚାରର କରୁଣ କାହାଣୀ ବର୍ଣ୍ଣିତ । ଏହାରି ମାଧ୍ୟମରେ ସାମାଜିକ ସ୍ତରରେ ଏକ ସଚେତନତା ସୃଷ୍ଟି ନିମନ୍ତେ ପ୍ରୟାସ ରହିଛି ।

'କୁମ୍ଭଯୋନି' ଗଳ୍ପରେ ଆଧୁନିକତାର ଚିତ୍ର ଅର୍ଥାତ୍ ପ୍ରଯୁକ୍ତି ବିଜ୍ଞାନର ଶକ୍ତି ସମ୍ପର୍କରେ ବେଶ୍ କଳାତ୍ମକ ଶୈଳୀରେ ବର୍ଣ୍ଣନା କରିଛନ୍ତି । ଗଳ୍ପଟିଏ ଟେଷ୍ଟଟ୍ୟୁବ୍ ବେବି ସମ୍ପର୍କରେ ଆଲୋଚନା କରି ପୁରାଣର ଅଗସ୍ତି ଋଷିଙ୍କର କୁମ୍ଭ ଭିତରୁ ଜନ୍ମ ପ୍ରସଙ୍ଗ ଏଠାରେ ଉପସ୍ଥାପିତ । ସନ୍ତାନ ଜନ୍ମ ନ କରି ପାରୁଥିବା ପିତାମାତାଙ୍କ ନିମନ୍ତେ ଏହା ବିଜ୍ଞାନର ଏକ ଆଶୀର୍ବାଦ । 'ଐତରେୟ' ଗଳ୍ପରେ ଆଧୁନିକ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କର ନିର୍ବାଚନ ବ୍ୟବସ୍ଥା ପ୍ରତି ତୀବ୍ର ବିଦ୍ରୂପ କରିଛନ୍ତି ଲେଖକ ।

ସର୍ବୋପରି କବି କୃଷ୍ଣଚରଣ ବେହେରା ଗବେଷଣା ଓ ପ୍ରବନ୍ଧ ସମାଲୋଚନା କ୍ଷେତ୍ରରେ ଜଣେ ବେଶ୍ ସ୍ୱନାମଧନ୍ୟ ନାମ ହେଲେହେଁ, ଟିକିଏ ନିରେଖି ଅନ୍ୱେଷଣ କଲେ ତାଙ୍କର କବିତା, ଲଘୁ କବିତା ଓ କ୍ଷୁଦ୍ରଗଳ୍ପ ସବୁରେ ବହୁମୁଖୀନତା ସହ ଜୀବନ, ଜଗତ ପ୍ରତି ଥିବା ସଚେତନ ଶିଳ୍ପୀଟିଏର ବାର୍ତ୍ତା ବେଶ୍ ଉପଲବ୍ଧ । ❖

ବିଭାଗମୁଖ୍ୟ, ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

# ଆତ୍ମଜୀବନୀର ପରିପତ୍ର - 'ଚର୍ଚ୍ଚିତ ଚିଟାଉ'ର ସମାହାର

ଅଭୟ ଦ୍ୱିବେଦୀ

ଡଃ କୃଷ୍ଣଚରଣ ବେହେରାଙ୍କ ଆତ୍ମଜୀବନୀ 'ଆଖିର ଦେଖା ପ୍ରାଣର କଥା' ଗ୍ରନ୍ଥର ଅନ୍ତିମ ଭାଗ ହେଉଛି ପରିପତ୍ର । ତାଙ୍କ ନିକଟକୁ ଆସିଥିବା ସହସ୍ରାଧିକ ପତ୍ର ମଧ୍ୟରୁ ମାତ୍ର ୧୮୫ଟି ପତ୍ର ଏହି ଅଧ୍ୟାୟରେ ସନ୍ନିବେଶିତ । ଏହାର ଚୟନ ଓ ସଂପାଦନା ଦାୟିତ୍ୱ କରିଛନ୍ତି ଡଃ ବେହେରାଙ୍କର ପ୍ରିୟତମ ଛାତ୍ର ସୁସାହିତ୍ୟିକ ସୁଧୀର ଚନ୍ଦ୍ର ବେହୁରା । ସେଥି ସକାଶେ ଆତ୍ମଜୀବନୀର ସାମାନ୍ୟ ସୂଚନାରେ କୃଷ୍ଣ ସାର୍ ସୁଧୀରବାବୁଙ୍କ ଉଦ୍ଦେଶ୍ୟରେ ଲେଖିଛନ୍ତି - "ସେଥିପାଇଁ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଶୁଭେଚ୍ଛା ଜଣାଉଛି ।" ଏହି ବିଭାଗର ପ୍ରାରମ୍ଭରେ ସୁଧୀରବାବୁ ସ୍ପଷ୍ଟୀକରଣ ଦେଇଛନ୍ତି - 'ପରିଜନ ପରିବାର ପତ୍ରକୁ ଜ୍ଞାତସାରରେ ଏଥିରୁ ବାଦ ଦିଆଯାଇଛି । କେବଳ ସମଗୋତ୍ରୀୟ ବୃତ୍ତିଜୀବୀ ଅଧ୍ୟାପକ ଅଥବା ବ୍ରତସେବୀ ସାହିତ୍ୟିକ ନୁହଁନ୍ତି ; ସାଧାରଣ ଛାତ୍ର, ଶୁଭେଚ୍ଛୁ ସହୃଦୟ ପାଠକ, ପ୍ରଶାସକ, ରାଷ୍ଟ୍ରନୀତିଜ୍ଞ, ଗବେଷକ, ସଂପାଦକ, ସର୍ବୋପରି ଅସଂଖ୍ୟ ଅଜ୍ଞାତ ବ୍ୟକ୍ତିଙ୍କର ଅନାହୂତ ଆତ୍ମବ୍ୟାଖ୍ୟାନ ଏହି ସବୁ ଚର୍ଚ୍ଚିତ ଚିଟାଉର ବକ୍ତବ୍ୟ ।' ଏହି ବିଭାଗ କେବଳ ତାଙ୍କ ନିକଟକୁ ଆସିଥିବା ପତ୍ରର ସମାହାର, କିନ୍ତୁ ସେ ଲେଖିଥିବା ଗୋଟିଏ ହେଲେ ପତ୍ର ଏଥିରେ ସ୍ଥାନ ପାଇନାହିଁ । ତା ହୋଇଥିଲେ ବିଭାଗଟି ପରିପୂର୍ଣ୍ଣ ଲାଗିଥାନ୍ତା ।

୧୯୧୭ ମସିହାରେ ପ୍ରକାଶିତ ସରସ୍ୱତୀ ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ' ଓଡିଆ ଭାଷାର ପ୍ରଥମ ଆତ୍ମଜୀବନୀର ସମ୍ମାନ ଓ ସ୍ୱୀକୃତି ହାସଲ କରିଛି । ତାହାର ସୂଚନା ପୃଷ୍ଠାରେ ଫକୀରମୋହନ ଉଲ୍ଲେଖ କରିଛନ୍ତି - 'ଅଦୂର ଭବିଷ୍ୟତରେ ଅନେକଗୁଡିଏ ଆତ୍ମଜୀବନୀ ଲେଖକ ଆମ୍ଭମାନଙ୍କର ଏହି ପବିତ୍ର ଜନ୍ମଭୂମିରେ ବିଚରଣ କରିବେ, ଏହା ମୋର ଧ୍ରୁବ ବିଶ୍ୱାସ । ମୁଁ ସେମାନଙ୍କ ପାଇଁ ମୂଳଦୂଆ ମାତ୍ର ପ୍ରସ୍ତୁତ କରୁଅଛି ।' ଆଖିର ଦେଖା ପ୍ରାଣର କଥା ଗ୍ରନ୍ଥ ସେହି ଧ୍ରୁବ ବିଶ୍ୱାସର ପ୍ରତିଫଳନ । ଫକୀରମୋହନଙ୍କ ଆତ୍ମଚରିତରେ ଗୋଟିଏ ମାତ୍ର ପତ୍ର ସ୍ଥାନ ପାଇଛି ଏବଂ ତାହା ଅତ୍ୟନ୍ତ

ବିଖ୍ୟାତ । ସେହି ପତ୍ରଟି ମାଧ୍ୟମରେ ଫକୀରମୋହନ କେଉଁଝରର ରାଜ୍ୟକୁ ସୁରକ୍ଷା ଦେଇ ପାରିଥିଲେ ।

'ଭୋଳାନାଥ ଖମାରିଆ ଜାଣିବୁ -

ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର -ଅତିଶୀଘ୍ର ଶହେ ହେଲେ ପାନ, ଦୁଇଶ ଗୁଆ ପଠାଇବୁ । ଉତ୍ତରପଟରୁ ମାହାରା କରି ଆଖୁ ବାଡ଼ିକୁ ଶୀଘ୍ର ପାଣି ବୁହାଇବୁ, ନୋହିଲେ ଆଖୁ ବାଡ଼ି ବିନାଶ ଯିବ ବୋଲି ଜାଣିବୁ ।

। ଇତି ।

ଫକୀରମୋହନ ସେନାପତି

ପତ୍ରାବଳୀ ହେଉଛି ବ୍ୟକ୍ତିତ୍ୱ ଆକଳନର ପରିମାର୍ଜିତ ମାଧ୍ୟମ । ଏହାରି ସହାୟତାରେ ଜୀବନର ବ୍ୟାପକତା ସଂପର୍କରେ ସୂଚନା ମିଳିଥାଏ । ଏ ସଂକ୍ରାନ୍ତରେ ସଂପାଦକ ସୁଧୀର ବାବୁ ପରିପତ୍ରର ପ୍ରାରମ୍ଭରେ ଉଲ୍ଲେଖ କରିଛନ୍ତି - 'ଯେଉଁମାନେ ଡକ୍ଟର ବେହେରାଙ୍କ ପୂର୍ଣ୍ଣଗର୍ଭା ଜୀବନସ୍ରୋତରେ ଶାଖା ନଦୀ ବା ଉପନଦୀ ଭାବରେ ସଂଯୁକ୍ତ ହୋଇଛନ୍ତି, ସେହିମାନଙ୍କର ଜୀବନ-ରସ ଏହି ପତ୍ରାବଳୀର ସାରତତ୍ତ୍ୱ । ମୋଟ ଉପରେ, ପୂର୍ଣ୍ଣାଙ୍ଗ ଜୀବନୀ ପାଇଁ ଉପାଦାନ-ଆକର ପ୍ରସ୍ତୁତି ଏହାର ଲକ୍ଷ୍ୟ ।' ବିଶିଷ୍ଟ ସାରସ୍ୱତ ସାଧକ ସୁରେନ୍ଦ୍ର ମହାନ୍ତିଙ୍କ ଜୀବନସ୍ମୃତି - ପଥ ଓ ପୃଥିବୀ । ଏହାର ଅନ୍ତିମ ଭାଗରେ ଅଳ୍ପ କିଛି ପତ୍ର ରହିଛି । କିନ୍ତୁ ସେଗୁଡ଼ିକ କେବଳ ତାଙ୍କ ରାଜନୈତିକ ଜୀବନର ଝଲକ ମାତ୍ର । ଏଥି ମଧ୍ୟରୁ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ, ଲାଲବାହାଦୂର ଶାସ୍ତ୍ରୀ, ଇନ୍ଦିରା ଗାନ୍ଧି, ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଉଲ୍ଲେଖନୀୟ ।

'ଆଖିର ଦେଖା ପ୍ରାଣର କଥା ଆତ୍ମଜୀବନୀ ପରିପ୍ରେକ୍ଷୀରେ ବିଖ୍ୟାତ ଦାର୍ଶନିକ ବର୍ଟାଣ୍ଡ ରସେଲ(୧୮୭୨-୧୯୭୦)ଙ୍କ ଦୁଇ ଭାଗରେ ପ୍ରକାଶିତ (୧୮୭୨-୧୯୧୪ ଓ ୧୯୧୪-୧୯୪୪) ଆତ୍ମଜୀବନୀ The Autobiography of Bertrand Russell ସ୍ମରଣକୁ ଆସିଯାଏ । ପ୍ରଥମ ଭାଗର ପୃଷ୍ଠା ସଂଖ୍ୟା ୨୪୦ ଏବଂ ଦ୍ୱିତୀୟ ଭାଗ ୪୫୨ । ପ୍ରଥମ ଭାଗ ଆଠଟି ଏବଂ ଦ୍ୱିତୀୟ ଭାଗ ଛଅଟି ଅଧ୍ୟାୟରେ ବିଭକ୍ତ । ପ୍ରଥମ ଭାଗର ତୃତୀୟ ଅଧ୍ୟାୟ - କେମ୍ବ୍ରିଜ । ଏହି ଅଧ୍ୟାୟରୁ ଆରମ୍ଭ ହୋଇ ଦୁଇ ଖଣ୍ଡରେ ବିଭକ୍ତ ଆତ୍ମଜୀବନୀର ପ୍ରତି ଅଧ୍ୟାୟର ଅନ୍ତିମ ଭାଗରେ ବର୍ଟାଣ୍ଡ ରସେଲଙ୍କର ସମସ୍ତ ପତ୍ର(ପାଇଥିବା ଏବଂ ପଠାଇଥିବା) ସ୍ଥାନ ପାଇଛି । ପ୍ରଥମ ଖଣ୍ଡର ପଞ୍ଚମ ଅଧ୍ୟାୟ ENGAGEMENT । ଏହି ଅଧ୍ୟାୟର ପୃଷ୍ଠା ସଂଖ୍ୟା ୭୯ରୁ୧୨୭ -୪୮ । ଏଥିରେ ପତ୍ରାବଳୀର ପୃଷ୍ଠା ସଂଖ୍ୟା ହେଉଛି -୩୬ । ତେଣୁ ଆତ୍ମଜୀବନୀରେ ପତ୍ରାବଳୀର ସ୍ଥାନ ଯେ କେତେ ଗୁରୁତ୍ୱପୂର୍ଣ୍ଣ , ତାହା ଏହି କ୍ରମରେ ଆକଳନ କରିହେବ ।

କେବଳ ପରିପତ୍ର ପରିପ୍ରେକ୍ଷୀରେ ନୁହେଁ, ପୁସ୍ତକର ପ୍ରସ୍ତାବନା ଦୃଷ୍ଟିରୁ ଦୁଇଟି ଆତ୍ମଜୀବନୀ ମଧ୍ୟରେ ଗଭୀର ସାମଞ୍ଜସ୍ୟ ରହିଛି । କୃଷ୍ଣ ସାର୍ ପୁସ୍ତକର ପ୍ରଥମ ପୃଷ୍ଠାରେ କହିଛନ୍ତି – ‘ ଏହା ଜଣେ ସାଧାରଣ ମଣିଷର କଥା- ଜନ୍ମସୂତ୍ରରେ ଯେ ଶୁଦ୍ର, କିନ୍ତୁ କର୍ମତନ୍ତ୍ରରେ ରୁଦ୍ର – ସାମାଜିକ ସ୍ଥିତିରେ ଯେ ଇତର କିନ୍ତୁ ଚେଷ୍ଟା ଚରିତ୍ରରେ ଐତରେୟ । କ୍ଷୁଦ୍ର ହେଲେ ହେଁ ସେ ଊର୍ଦ୍ଧ୍ୱକୁ ଉଠିବା ପାଇଁ ଉଦ୍ୟମ କରିଛି ଆର୍ଥିକ କ୍ଷେତ୍ରରେ ତଥା ପାରମାର୍ଥିକ ଦିଗରେ । ସେ କିପରି ଶମ୍ବୁକର ତପସ୍ୟା କରିଛି – କିପରି କଣ୍ଟକାକୀର୍ଣ୍ଣ ଉତ୍ତରଣର ପଥ ରକ୍ତଝରା ପାଦରେ ଅତିକ୍ରମ କରିଛି, ସେହି କାହାଣୀ ସମସ୍ତଙ୍କ ଆଗରେ ଥୋଇ ଯାଉଛି ନିଷ୍କପଟ ଭାବରେ । ଭଲ ମଣିଷଟିଏ ହୋଇ ଉପରକୁ ଉଠିବା ପାଇଁ ଚାହୁଁଥିବା ଯଦି କେହି ଏଥିରୁ ସୁସ୍ଥ ସୁନ୍ଦର ଜୀବନ ବଞ୍ଚିବାକୁ ଖିଅଟିଏ ପାଇଯାଏ....

ଏହି କ୍ରମରେ ଆସିବା ବର୍ଟାଣ୍ଡ ରସେଲଙ୍କ ଆତ୍ମଜୀବନୀର ପ୍ରଥମ ପୃଷ୍ଠା । ଏହାର ଶୀର୍ଷକ ହେଉଛି – ‘ମୋ ଜୀବନର ନିର୍ଯ୍ୟାସ’ । ଏଥିରେ ସେ ଉଲ୍ଲେଖ କରିଛନ୍ତି – ‘ତିନୋଟି ସରଳ ଅଥଚ ବଳିଷ୍ଠ ଭାବାବେଗ ମୋ ସମଗ୍ର ଜୀବନକୁ ନିୟନ୍ତ୍ରଣ କରିଛି : ପ୍ରେମ ପିପାସା, ଜ୍ଞାନ ଜିଜ୍ଞାସା ଏବଂ ଯନ୍ତ୍ରଣାରେ ଜର୍ଜରିତ ମାନବ ଜାତି ପାଇଁ ଅକପଟ ଅନୁକଂପା । ଏହି ତିନୋଟି ଭାବାବେଗ, ମହାବାତ୍ୟାର ପ୍ରଖର ବେଗରେ ମୋତେ ଇତଃସ୍ତତଃ କରି ପୀଡାର ପାରାବାରକୁ ସତେ ଯେମିତି ଠେଲି ଦେଇଛନ୍ତି । ମୁଁ ପ୍ରଥମେ ପ୍ରେମର ଅନ୍ୱେଷା କରିଛି । କାରଣ ପ୍ରେମ ମାଧ୍ୟମରେ ପରମାନନ୍ଦ ପ୍ରାପ୍ତି ସମ୍ଭବ । କିଛି ମୁହୂର୍ତ୍ତର ସେହି ଆନନ୍ଦ ନିମନ୍ତେ ମୋର ସମଗ୍ର ବାକି ଜୀବନ ଉତ୍ସର୍ଗ କରିପାରିବି । ସେହି ଆବେଗରେ ମୁଁ ଜ୍ଞାନ ପ୍ରାପ୍ତି ନିମନ୍ତେ ପ୍ରାର୍ଥନା କରିଛି । ସେଥିରୁ ମାତ୍ର କାଣିଚାଏ ପାଇଛି । ପ୍ରେମ ଓ ଜ୍ଞାନ ମୋତେ ଅମରାବତୀର ସନ୍ଧାନ ଦେଇଛନ୍ତି । କିନ୍ତୁ ଯନ୍ତ୍ରଣାରେ ବିଗଳିତ ମଣିଷର ଆର୍ତ୍ତ ଚିତ୍କାର ମୋତେ ପୁନଶ୍ଚ ପୃଥିବୀ ପୃଷ୍ଠକୁ ଟାଣି ଆଣିଛି । ଏହା ହିଁ ମୋର ଜୀବନ ଏବଂ ଏହି ଜୀବନରେ ସାର୍ଥକତା ପାଇଛି । ଆଉ ଥରେ ବଞ୍ଚିବାର ସୌଭାଗ୍ୟ ପାଇଲେ, ମୁଁ ଆନନ୍ଦରେ ହସି ହସି ଜୀବନ ବରଣ କରିନେବି ।’

ଦୁଇଟି ଜୀବନରେ ଊର୍ଦ୍ଧ୍ୱକୁ ଉଠିବା ପାଇଁ ପ୍ରବଳ ଅଭୀପ୍ସା । ଜଣେ ଆତ୍ମବିଶ୍ୱାସର ସହ ସୁସ୍ଥ ସୁନ୍ଦର ଜୀବନଟିଏ ବଞ୍ଚିଛନ୍ତି ବୋଲି ଦାବୀ କରିଛନ୍ତି ଏବଂ ଆଉ ଜଣେ ଆଉ ଥରେ ଏହି ଚମତ୍କାର ଜୀବନ ବଞ୍ଚିବା ପାଇଁ ସ୍ୱପ୍ନ ଦେଖିଛନ୍ତି ।

ପତ୍ରାଳାପ କ୍ଷେତ୍ରରେ ମଧ୍ୟ ଅସାମାନ୍ୟ ସାମଞ୍ଜସ୍ୟ । ଦୁଇଟି ଗ୍ରନ୍ଥରୁ ଗୋଟିଏ ଲେଖାଏଁ ପତ୍ରର ଦୃଷ୍ଟାନ୍ତ ନେବା । ‘ଆଖିର ଦେଖା ପ୍ରାଣୀର କଥା’ ଗ୍ରନ୍ଥର ୩୪୭ ପୃଷ୍ଠାରେ ସ୍ଥାନିତ ବିଭୂତି ପଟ୍ଟନାୟକଙ୍କ ୧୯୭୩ ମସିହା ଏପ୍ରିଲ ୨୩ ତାରିଖର ପତ୍ର-

ପ୍ରିୟ କୃଷ୍ଣବାବୁ,

ପ୍ରଣତି । 'ସପ୍ତର୍ଷି'ରେ ପ୍ରକାଶିତ 'ଓଡିଆ ଉପନ୍ୟାସ' ଶୀର୍ଷକ ପ୍ରବନ୍ଧ ପ୍ରତି ମୋର ଦୃଷ୍ଟି କେତେକ ବନ୍ଧୁ ଆକର୍ଷଣ କରାଇଛନ୍ତି । ସେ ପ୍ରବନ୍ଧରେ ଆପଣ ମୋ ସଂପର୍କରେ ଏପରି କେତେକ ମନ୍ତବ୍ୟ ଦେଇଛନ୍ତି, ଯାହା ପଢ଼ି ମୋ ମୁଣ୍ଡ ତଳକୁ ହୋଇଗଲା । ଏ ପ୍ରବନ୍ଧ ପୁଣି ହିନ୍ଦିରେ ଛପା ଯାଇଛି ?

ମୋର ଧାରଣା ଆପଣ ମୋର ସବୁ ଉପନ୍ୟାସ ପଢ଼ି ନାହାନ୍ତି । କିଶୋର ବୟସରେ ମୁଁ ଯେଉଁ ଉପନ୍ୟାସ ବହୁ ଦିନ ତଳେ ଲେଖିଥିଲି ସେ ଉପନ୍ୟାସଗୁଡିକ ସଂପର୍କରେ ଶୁଣାକଥା ଉପରେ ନିର୍ଭର କରି ଏ ଗବେଷଣାତ୍ମକ ପ୍ରବନ୍ଧ ଲେଖିଛନ୍ତି । ତିରିଶ ବର୍ଷ ବୟସରୁ କମ୍ ବୟସ ଲୋକ ଉପନ୍ୟାସ ଲେଖାରେ ହାତଦେବା ଉଚିତ ନୁହେଁ ବୋଲି ଆପଣ କାହିଁକି ଅକାରଣରେ ବିନୀତ ମତ ପୋଷଣ କରି ଆସିଛନ୍ତି ? ବଙ୍ଗଳାର ଶଙ୍କର କିମ୍ବା ଫ୍ରାନ୍ସର ସାଗାଁଙ୍କୁ ଏଭଳି ପରାମର୍ଶ ଦେଲେ ବଙ୍ଗାଳି, ଫରାସୀ ପାଠକମାନେ ଆପଣଙ୍କୁ ସହ୍ୟ କରିବେ ତ ? କଅଣ ପାଇଁ ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ ପାଇଁ ଓଡ଼ିଆ ଅଧ୍ୟାପକଙ୍କୁ ଦାୟିତ୍ୱ ନ ଦେଇ ଇଂରାଜୀ ଅଧ୍ୟାପକଙ୍କ ଉପରେ ତାହା ନ୍ୟସ୍ତ କରାଯାଇଛି, ଆପଣଙ୍କ ପ୍ରବନ୍ଧ ପଢ଼ି ବେଶ୍ ବୁଝି ପାରୁଛି । ଆଧୁନିକ ଓଡ଼ିଆ ଉପନ୍ୟାସ ବର୍ତ୍ତମାନ ସୁଦ୍ଧା ଦୁଃଖିନୀ ଅବସ୍ଥାରେ ଅଛି । ଯଦି ସୃଷ୍ଟିରେ କ୍ଷମତା ଆପଣଙ୍କର ନାହିଁ, ଆପଣ ତା'ର ଅଗ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରନ୍ତୁ ନାହିଁ , ଏତିକି ପ୍ରାର୍ଥନା ।

ଆପଣଙ୍କର　　　　　　　　　　　　　　　　　　　　ବିଭୂତି ପଟ୍ଟନାୟକ

ବର୍ତ୍ତମାନ ବର୍ଟାଣ୍ଡ ରସେଲଙ୍କ ଦ୍ୱିତୀୟ ଭାଗ ଆତ୍ମଜୀବନୀର ୨୫୯ ପୃଷ୍ଠାରେ ସ୍ଥାନିତ ମାକ୍ ନିଉମାନ୍‌ଙ୍କୁ ବର୍ଟାଣ୍ଡ ରସେଲଙ୍କ ୧୯୨୮ ମସିହା ଏପ୍ରିଲ ୨୪ ତାରିଖ ପତ୍ରର କିଛି ଅଂଶ ଅନୁଶୀଳନ କରିବା । ନିଉମାନ୍‌ଙ୍କ ସଂପର୍କରେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ - ସେ ହେଉଛନ୍ତି ବିଶ୍ୱର ଅନ୍ୟତମ ଖ୍ୟାତନାମା ଗଣିତଜ୍ଞ । ବର୍ଟାଣ୍ଡ ରସେଲଙ୍କର କୌଣସି ଏକ ସିଦ୍ଧାନ୍ତ ଉପରେ ଭିନ୍ନ ମତ ପୋଷଣ କରି ତାଙ୍କ ଉପରେ ଏକ ନିବନ୍ଧ 'ମାଇଣ୍ଡ' ପତ୍ରିକାରେ ଲେଖି ତାହା ରସେଲଙ୍କ ନିକଟକୁ ପଠାଇଥିଲେ । ସେହି ନିବନ୍ଧ ପଢ଼ିସାରିବା ପରେ ରସେଲ ଏହି ପତ୍ର ଲେଖିଛନ୍ତି ।

Dear Newman,

Many thanks for sending me the off-print of your article about me in Mind. I read it with great interest. and some dismay. You make it entirely obvious that my statements to the effect that nothing is known about the physical world except its structure are either false or

trivial and I am somewhat ashamed at not having noticed the point by myself.

.......................................

I am at the moment much too busy to give the matter proper thought, but I should be grateful if you could find time to let me know whether you have any ideas on the matter which are not merely negative, since it does not appear from your article what your own position is.

Yours sincerly

Bertrand Russel

ଦୁଇଟି ପତ୍ର ମଧ୍ୟରେ ପାର୍ଥକ୍ୟ ଏତିକି - କୃଷ୍ଣ ସାର୍ ହେଉଛନ୍ତି ନିବନ୍ଧର ଲେଖକ ଏବଂ ଅପର କ୍ଷେତ୍ରରେ ନିଉମାନ୍ ହେଉଛନ୍ତି ସମାଲୋଚକ । କିନ୍ତୁ ଉଭୟ କ୍ଷେତ୍ରରେ ସାଧକଦ୍ୱୟ ନିର୍ଦ୍ୱନ୍ଦ୍ୱରେ ପତ୍ରକୁ ଆତ୍ମଜୀବନୀରେ ସ୍ଥାନିତ କରିଛନ୍ତି । ଅନେକ ଶ୍ରଦ୍ଧାଳୁ ସାର୍‌ଙ୍କ ପ୍ରେରଣା ଓ ଦିଗ୍‌ଦର୍ଶନ କାମନା କରି ପତ୍ର ଦେଇଛନ୍ତି । ଯେମିତି ୧୦.୮.୭୮ରେ ପୂର୍ଣ୍ଣାନନ୍ଦ ଦାନୀ ଲେଖିଛନ୍ତି - 'ମୋର ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଓ ଗବେଷଣା କାର୍ଯ୍ୟରେ ଆପଣଙ୍କ ପ୍ରେରଣା ଓ ନିର୍ଦ୍ଦେଶ ହିଁ ମୋର ଆନନ୍ଦ ।' ୧୯୪୭ ମସିହାରୁ ୧୯୮୩ : ଚାରି ଦଶନ୍ଧି , ଜଣେ ବ୍ୟକ୍ତି ଜୀବନର ମହାର୍ଘ କାଳ । ଯେଉଁମାନଙ୍କୁ ସାର୍ ଅକୁଣ୍ଠରେ ଶ୍ରଦ୍ଧା ବାଣ୍ଟିଛନ୍ତି, ସେହିମାନେ ହିଁ ବାରମ୍ବାର ସାକ୍ଷାତରେ ଅବା ପତ୍ର ମାଧ୍ୟମରେ ଶ୍ରଦ୍ଧା ଭିକ୍ଷା କରିଛନ୍ତି ।

ଖ୍ୟାତନାମା କବି ଜନ୍ ଡନ୍‌ଙ୍କର ଗୋଟିଏ ଚମତ୍କାର କବିତା -TO SIR HENRY WOTTON । ହେନରୀ ଓଟନ୍ (୧୫୬୮-୧୬୩୯) ହେଉଛନ୍ତି ଜଣେ କବି ଓ କୂଟନୀତିଜ୍ଞ ଏବଂ କବି ଜନ୍ ଡନ୍‌ଙ୍କର ସମସାମୟିକ । ଏହି କବିତାର ପ୍ରଥମ ବାକ୍ୟ - SIR, more than kisses, letters mingle souls । ପତ୍ର ମାଧ୍ୟମରେ ଆତ୍ମାର ମିଳନ ଘଟିଥାଏ । କୃଷ୍ଣ ସାର୍‌ଙ୍କ ପାଖକୁ ଆସିଥିବା ସମସ୍ତ ପତ୍ର (ପରିବାରଜନଙ୍କ ମଧ୍ୟ) ଏବଂ ସେ ପଠାଇଥିବା ପତ୍ରସମୂହ ସଂଗ୍ରହ କରାଯାଇ ଗୋଟିଏ ସ୍ୱତନ୍ତ୍ର ସଙ୍କଳନ ସଂପାଦନା ଓ ପ୍ରକାଶନ ହୋଇପାରିଲେ ସେଥିରୁ ତାଙ୍କ ପ୍ରଜ୍ଞାଦୀପ୍ତ , ସରଳ, ଅମାୟିକ ବ୍ୟକ୍ତିତ୍ୱର ମହକ ଚାରିଆଡ଼େ ବିଛୁଡ଼ି ପଡ଼ିବ । ❖

ଭଦ୍ରାଣୀ, ସାଳନ୍ଦୀ ନଗର, ଭଦ୍ରକ

ସେଲ୍-୯୪୩୭୧୯୧୩୫୦

email-saiabhay19@gmail.com

# ପ୍ରେମପୁରୁଷ

କୈଳାଶ ଚନ୍ଦ୍ର ପଣ୍ଡା

ପ୍ରଫେସର ଡ. କୃଷ୍ଣଚରଣ ବେହେରାଙ୍କ ସହିତ ମୁଁ ସମ୍ପର୍କିତ ହେଲି ୧୯୬୪ ମସିହାରେ, ଭଦ୍ରକ କଲେଜର ଜଣେ ଛାତ୍ର ଭାବରେ । ଆମ କଲେଜରେ ବହୁ ଅଧ୍ୟାପକ ଥିଲେ । ସମସ୍ତେ ଥିଲେ ମୋ ପାଇଁ ଶିକ୍ଷକ । କିନ୍ତୁ ଡ. ବେହେରା ଥିଲେ ମୋର ଏକମାତ୍ର ଗୁରୁ । ସେହି ଗୁରୁଛାତ୍ରର ସମ୍ପର୍କ ମଧ ବେଶି ଦିନ ସ୍ଥାୟୀ ହୋଇ ନଥିଲା । ଘଟଣା କ୍ରମେ, କୌଣସି ଏକ ଭୁଲପାଇଁ ତାଙ୍କ ଠାରୁ ଏକ ଶକ୍ତ ଚାପୁଡ଼ା ଖାଇବା ପରେ ସେ ଗୁରୁରୁ ହୋଇଥିଲେ ବାପା । ଏହା ଥିଲା ୧୯୬୫ ମସିହାର କଥା, ସେହିଦିନ ଠାରୁ ସେ ମୋର ବାପା ଆଉ ମୁଁ ତାଙ୍କର ପୁଅ । ମୋ ବାପାଙ୍କ ଠାରୁ ବରଂ ଅଧିକ ସ୍ନେହ - ସମ୍ମାନ ମୁଁ ତାଙ୍କୁ ଦେଉଥିଲି । ତାଙ୍କର କଥା ମୋ ପାଇଁ ଥିଲା ବେଦର ଗାର । ତାଙ୍କରି ନିର୍ଦ୍ଦେଶ କ୍ରମେ ୧୯୭୦ରେ ମୋ ସଂଯୋଜନା କ୍ରମେ ପ୍ରକାଶ ପାଇଥିଲା 'ଆଧୁନିକ ପ୍ରେମ କବିତା' ସଂକଳନ । ଯାହାକୁ ପ୍ରକାଶ କରିଥିଲେ ଫ୍ରେଣ୍ଡସ ପବ୍ଲିସର୍ସ, କଟକ । ପରେ ପରେ ମୋ ଠାରୁ ପୁଣି ଆଦାୟ କରିନେଲେ 'ଆଧୁନିକ ପ୍ରେମ କାହାଣୀ'ର ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ ଏବଂ 'ପ୍ରେମରେ ପ୍ରେମରେ ପ୍ରବନ୍ଧ' ଯାହାର ପ୍ରକାଶକ ଥିଲେ ଅଗ୍ରଦୂତ କଟକ । ଏବଂ 'ଆଧୁନିକ ପ୍ରେମ କବିତା'ର ପରିମାର୍ଜ୍ଜିତ ଓ ପରିବର୍ଦ୍ଧିତ ୨ୟ ସଂସ୍କରଣ । ଯାହାର ପ୍ରକାଶକ ଥିଲେ, କବି ଗିରଜା କୁମାର ବଳୀୟାରସିଂ । ଏତିକିରେ ସେ ସନ୍ତୁଷ୍ଟ ନଥିଲେ । ମୋତେ ନିର୍ଦ୍ଦେଶ ଥିଲା ଆଉ ତିନି ଖଣ୍ଡ ବହି ପ୍ରେମ ଉପରେ କରିବା ପାଇଁ । ତାହାଥିଲା 'ଚିଠିରେ ଚିଠିରେ ପ୍ରେମ', 'ପ୍ରେମରେ ପ୍ରେମରେ ବ୍ୟଙ୍ଗ' ଏବଂ 'ପ୍ରେମରେ ପ୍ରେମରେ ନାଟିକା' । 'ଚିଠିରେ ଚିଠିରେ ପ୍ରେମ' ପ୍ରେମ ପତ୍ରର ଏକ ଅନନ୍ୟ ସଂକଳନ । ବର୍ତ୍ତମାନ ତାହା ଶେଷ ପର୍ଯ୍ୟାୟରେ । 'ପ୍ରେମ ପୃଥିବୀ' ସାହିତ୍ୟ ପତ୍ରିକାରେ ସେ ଥିଲେ ପ୍ରତିଷ୍ଠାତା ମାର୍ଗ ଦର୍ଶକ । ମୁଁ ତାଙ୍କୁ ସାହିତ୍ୟିକ ଭାବରେ ଯେତିକି ଜାଣେ, ଅଧିକ ଜାଣେ ଜଣେ ସାହିତ୍ୟିକ ସ୍ରଷ୍ଟା ଭାବରେ । ତାଙ୍କ ପରି ଜଣେ ସ୍ନେହଶୀଳ ମଣିଷ ଓଡ଼ିଆ ସାହିତ୍ୟ ଜଗତରେ ବିରଳ । ତାଙ୍କ ସମ୍ପର୍କରେ ଯିଏ ଆସିଛି, ସିଏ ବାଲି

ରେଣୁ ଟିଏ ହୋଇଥିଲେ ମଧ୍ୟ ଶାଳଗ୍ରାମଟିଏ ବନି ଯାଇଛି । ତାଙ୍କ କଥାରେ, ଚାହାଁଣିରେ ଏତେ ଆତ୍ମୀୟତା ଭାବ ଥାଏ ଯେ, ଜଣେ ଆପେ ଆପେ ତାଙ୍କ ପାଖରେ ସମର୍ପିତ ହୋଇଯାଏ ।

୨୦୧୪ ମସିହାରେ ସାର୍‌ଙ୍କୁ ପ୍ରେମପୃଥିବୀ ସାହିତ୍ୟ ପତ୍ରିକା ତରଫରୁ 'ପ୍ରେମପୁରୁଷ' ଉପାଧି ପ୍ରଦାନ ସହିତ ତାଙ୍କୁ ସମ୍ବର୍ଦ୍ଧିତ କରାଯାଇଥିଲା । ସେ ସମୟରେ ସାର୍ ବିରକ୍ତି ପ୍ରକାଶ କରି କହିଥିଲେ ଆମ୍ଭମାନଙ୍କ ଭଳି ବୁଢ଼ାମାନଙ୍କୁ ସମ୍ବର୍ଦ୍ଧନା ଦେବା ବନ୍ଦ କରି ଯୁବକ ବନ୍ଧୁମାନଙ୍କୁ ଉତ୍ସାହିତ କରିବା ଆରମ୍ଭ କର । ଆମ୍ଭମାନଙ୍କର କଲମ ତ ଆଉ ଚାଲୁନାହିଁ । ଯେଉଁମାନେ ଆଗକୁ କିଛି କରିବେ ସେମାନଙ୍କୁ ଉତ୍ସାହିତ କର । ତାଙ୍କର ଆଦେଶ ମୋ ପାଇଁ ଶିରୋଧାର୍ଯ୍ୟ ହୋଇଥିଲେ ମଧ୍ୟ ଏ ପ୍ରସଙ୍ଗରେ ମୁଁ ତାଙ୍କୁ ଗ୍ରହଣ କରିପାରି ନଥିଲି । କାରଣ 'ପ୍ରେମପୁରୁଷ ଉପାଧି' ଏକ ଯୋଗ୍ୟତାର ମାପକାଠି । ପରବର୍ତ୍ତୀ ସମୟରେ ପ୍ରେମପୃଥିବୀ ସାହିତ୍ୟ ପତ୍ରିକା ତରଫରୁ ମହାପାତ୍ର ନୀଳମଣି ସାହୁ, ପଦ୍ମଶ୍ରୀ ପ୍ରତିଭା ରାୟ, ଡ଼. ବିଭୂତି ପଟ୍ଟନାୟକଙ୍କୁ ପ୍ରେମପୁରୁଷ ଓ ପ୍ରେମପ୍ରକୃତି ଉପାଧି ପ୍ରଦାନ କରିଥିଲୁ ।

୧୯୪୨- ୪୮ କୃଷ୍ଣଚରଣଙ୍କ ସାରସ୍ୱତ ସୃଷ୍ଟିର ପ୍ରଥମ ପର୍ବ ଥିଲା "କାଞ୍ଚିକାବେରୀ" ଏବଂ 'ଏଇ ପତାକାର ତଳେ' କବିତା । କଲିକତାରୁ ଆକୁଳି ମିଶ୍ରଙ୍କ ସଂପାଦନାରେ ପ୍ରକାଶିତ 'ଆଲୁଅ'ରେ ଏହା ପ୍ରକାଶ ପାଇଥିଲା । ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ବିଚାର କଲେ ତାଙ୍କର ସୃଷ୍ଟି ଓଡ଼ିଶାର ଯେ କୌଣସି ସାହିତ୍ୟ ସ୍ରଷ୍ଟାଙ୍କ ଠାରୁ ଅଧିକ ନିଶ୍ଚୟ । ଓଡ଼ିଶାର ବିଶିଷ୍ଟ ସାହିତ୍ୟ ସ୍ରଷ୍ଟା ମାନେ ଅନେକ ସୁସାହିତ୍ୟ ସୃଷ୍ଟି କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । କିନ୍ତୁ କୃଷ୍ଣଚରଣ ଶହ ଶହ ସାହିତ୍ୟିକ ସୃଷ୍ଟିକରି ସେମାନଙ୍କ ଦ୍ୱାରା ଶତାଧିକ ସୁସାହିତ୍ୟ ସୃଷ୍ଟି କରାଇଛନ୍ତି । ଏହି ମର୍ମରେ ଗୋଟିଏ କଥା କହିବି, ପାଞ୍ଚ-ଛଅ ବର୍ଷ ତଳେ ମୁଁ ଯାଇ ସାରଙ୍କ ଘରେ ସକାଳ ୧୦ଟା ରେ ପହଞ୍ଚିଲି । ଜଣେ ଭଦ୍ରଲୋକ ସାର୍‌ଙ୍କ ପାଖରେ ବସି ଥାଆନ୍ତି । ସାର୍ ମୋ ସହିତ ତାଙ୍କର ପରିଚୟ କରାଇ ଦେଇ କହିଲେ ଇଏ ହେଉଛନ୍ତି (ନାଁ ଟି ମୋର ମନେନାହିଁ) ସମ୍ବଲପୁର ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ ଅଧ୍ୟାପକ । କିଛି ସମୟ ଆଲୋଚନା ପରେ ସାର୍ ଉଠି ଭିତରକୁ ଚାଲିଗଲେ । ମୁଁ ସେ ଭଦ୍ରବ୍ୟକ୍ତିଙ୍କୁ ତାଙ୍କ ଆସିବା ସମ୍ପର୍କରେ ପଚାରିଲି । ସେ ଯାହା ଉତ୍ତର ଦେଲେ ତାହା ମୋତେ ବିସ୍ମିତ କରିଦେଲା । ସେ କହିଲେ ମୁଁ ଏଠାକୁ ଚାର୍ଜ ହେବା ପାଇଁ ଆସେ । ଏଠାରୁ ଥରେ ଚାର୍ଯ ହୋଇ ଚାଲିଗଲେ ପ୍ରାୟ ବର୍ଷକ ପର୍ଯ୍ୟନ୍ତ ମୋ କଲମ ଚାଲେ । ସାର୍‌ଙ୍କ ପାଖରେ ୩/୪ ଘଣ୍ଟା ବସିଗଲେ ମୁଁ ଫୁଲ୍ ଚାର୍ଜ ହୋଇଯାଏ । ଏହି ଚାର୍ଜ ଅର୍ଥ ଏୟା ହୋଇପାରେ ସେ ସାର୍ ତାଙ୍କ ମନ ଭିତରେ

ଲେଖାଲେଖି କରିବା ପାଇଁ ଦୃଢ଼ ଇଚ୍ଛାଶକ୍ତି ସୃଷ୍ଟି କରି ଦିଅନ୍ତି । ସାରଙ୍କ ପାଖକୁ ଅନେକ ଅଧ୍ୟାପକ - ଅଧ୍ୟାପିକା ଏବଂ ଲେଖକ- ଲେଖିକା ଆସନ୍ତି - ଏହା ମୁଁ ସବୁବେଳେ ଦେଖିଛି । ସେବେ ମୋର ଧାରଣା ହେଲା ଯେ ଏମାନେ ସବୁ ଏଠାକୁ ଆସନ୍ତି କେବଳ ଚାର୍ଜ୍ ହୋଇ ସେମାନଙ୍କର କଲମକୁ କ୍ରିୟାଶୀଳ କରିବା ପାଇଁ ।

ସତରେ ସାର୍‌ଙ୍କ ଅତିଥିପରାୟଣତା ଅନନ୍ୟ । ତାଙ୍କ ଘରେ କେହି ପହଞ୍ଚିବା ପରେ ଯଦି ୪/୫ ମିନିଟ୍ ବିଳମ୍ବ ହୋଇଗଲା ଚା-ଜଳଖିଆ ଆସିବାରେ; ତା'ହେଲେ ଚିତ୍କାର କରି ପୁଅ-ବୋହୂଙ୍କୁ ଡାକିବେ, ଏହା ଦ୍ୱାରା ଆସିଥିବା ବ୍ୟକ୍ତିଟି ମଧ୍ୟ ଟିକେ ଅପ୍ରତିଭ ହୋଇ ପଡ଼ନ୍ତି । ଖାଇବାକୁ ଦେବା, ଶ୍ରଦ୍ଧା କରିବା, ଭଲପାଇବା, ସ୍ନେହରେ ତାଙ୍କର 'ରେ' ଡ଼ାକ ସତରେ ମନକୁ କିଣିନିଏ । ଯେ କେହି ଜଣେ ବି ନିଜର ହୋଇଥାଏ । ସାରଙ୍କ ଜୀବନର ସବୁଠାରୁ ଦୁଃଖଦ ଘଟଣାଟି କହିବାକୁ ଉଚିତ୍ ମନେ କରୁଛି । ତାଙ୍କର ସାନପୁଅ ଶୁଭକାନ୍ତ ମାତ୍ର ୫୦ବର୍ଷ ବୟସରେ ଚାଲିଗଲା । ଏପରି ପୁଅଟିଏ ଭଦ୍ରକ ଜିଲ୍ଲାରେ ଏ ଯାଏ ଜନ୍ମ ହୋଇନି । ସେହି ଦୁଃଖଦ ସମୟ ତକ ମୁଁ ତାଙ୍କ ପାଖରେ ଥିଲି । ଆଖିରେ ଲୁହ ନଥିଲା । ଆଉ ହୃଦୟ ଭିତରୁ ଯେଉଁ ଲୁହ ଝରୁଥିଲା ତାକୁ କେହି ଦେଖି ପାରୁ ନଥିଲେ । ଥରେ କହିଲେ ମୁଁ ଯଦି ଲୁହ ଗଡ଼ାଇ ଥାଆନ୍ତି, ଏମାନଙ୍କୁ ସମ୍ଭାଳି ଥାଆନ୍ତା କିଏ ? ଶୁଭକାନ୍ତର ୧୧ ଦିନ କାର୍ଯ୍ୟ ସରିଲା । ରାତି ୧୨ଟା ପରେ ସାର୍ ଓ ମୁଁ ଶୋଇବାକୁ ଗଲୁ । ଯିବା ପୂର୍ବରୁ ମୋତେ କହିଲେ ଆସନ୍ତାକାଲି ସକାଳ ୮ଟା ସମୟରେ ମୋତେ ଭୁବନେଶ୍ୱର ଯିବାକୁ ହେବ । ମୁଁ କାହିଁକି ପଚାରିବାରୁ କହିଲେ ଆସନ୍ତାକାଲି ଜୟଦେବ ଭବନରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଗୋଟେ ସଭା ଅଛି । ମୋତେ ସଭାପତିତ୍ୱ କରିବାକୁ ପଡ଼ିବ । ମୁଁ ମନାକରି କହିଲି ନାହିଁ ଆପଣ ଯାଆନ୍ତୁ ନାହିଁ । ସେ କହିଲେ ମୁଁ ତ ସ୍ୱୀକୃତି ଚାରି ମାସ ଆଗରୁ ଦେଇସାରିଛି । ଆଜି କେମିତି ମନା କରିବି । ମୁଁ ତାଙ୍କୁ ବାରମ୍ବାର ମନା କରି ଶୋଇବାକୁ ଗଲି । ତା'ପର ଦିନ ସକାଳୁ ଉଠି ମୁଁ ଦେଖେ ତ ସାର୍ ତାଙ୍କର ନିତ୍ୟକର୍ମ ସାରି, ପେଣ୍ଟ ଶାର୍ଟ ପିନ୍ଧି ପ୍ରସ୍ତୁତ ହୋଇ ଗାଡ଼ିକୁ ଅପେକ୍ଷା କରିଛନ୍ତି । କିଛି ସମୟପରେ ଗାଡ଼ି ପହଞ୍ଚିଲା ଓ ସାର୍ ଚାଲିଗଲେ । ଗଲାବେଳେ କହିଗଲେ ତୁ ଯିବୁନି ମୁଁ ଆସିବା ପର୍ଯ୍ୟନ୍ତ ଥିବୁ । ମୁଁ ଅପେକ୍ଷା କରି ରହିଲି । ୫ଟା ବେଳେ ସାର୍ ଫେରିଲେ । ପଚାରିଲି ସାର୍ ମିଟିଂ କେମିତି ହେଲା । କହିଲେ କିଛି ଅସୁବିଧା ହୋଇନି- ଚଳେଇ ଦେଲି । ସେଦିନ ଭାବିଲି ସତରେ କୃଷ୍ଣ ସାର କ'ଣ ଆମରି ଭଳି ମଣିଷ ! ନାଁ ସେ ସାଧାରଣ ମଣିଷ ନିଶ୍ଚୟ ନୁହଁନ୍ତି । କର୍ତ୍ତବ୍ୟ ନିକଟରେ ଅନ୍ୟ ସବୁକୁ ସେ ତୁଚ୍ଛ ମନେ କରନ୍ତି । କେତେ ଧୈର୍ଯ୍ୟ, କେତେ ସାହସ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସାର୍‌ଙ୍କର ଗୋଟେ ବଡ଼ ବିଶେଷତ୍ୱ ଥିଲା- ସେ ନିଜକୁ କେବେ ବୃଦ୍ଧ

ବୋଲି ଭାବୁ ନଥିଲେ । ସେ କୃହନ୍ତି ଶରୀରର ବୟସ ସବୁ ସମୟରେ ମନର ବୟସ ପାଖରେ ହାର ମାନେ । ଭୁବନେଶ୍ୱର ସା଼ର୍ ଆପୋଲୋ ହସପିଟାଲରେ ପ୍ରାୟ ୧ମାସ ରହିଲେ । ଏହି ମାସକ ମଧ୍ୟରୁ ପ୍ରାୟ ପଚିଶ ଦିନ ଆଇସିୟୁରେ ଥିଲେ । ତାଙ୍କ ମୃତ୍ୟୁର ପ୍ରାୟ ୫/୬ ଦିନ ଆଗରୁ ସେ ଖୁବ୍ ସୁସ୍ଥ ଅନୁଭବ କଲେ । ତାଙ୍କ ପାଖରେ ପ୍ରାୟ ଅନେକ ସମୟ ରହୁଥିବା ସୁଧୀର ଚନ୍ଦ୍ର ବେହୁରା ଏବଂ ଚିତ୍ତରଂଜନ ବେହେରା, ଯେଉଁମାନେ 'ଏଷଣା' ପତ୍ରିକା କଥା ବୁଝୁଥିଲେ, ତାଙ୍କୁ ପଚାରିଲେ 'ଏଷଣା' କାମ କେତେଦୂର ଗଲା ? ସେମାନେ କହିଲେ ପ୍ରାୟ ସରିଗଲାଣି, ପ୍ରେସକୁ ଯିବ । ସାର କହିଲେ ନାଇଁ ନାଇଁ ପ୍ରେସ ଯିବା ପୂର୍ବରୁ ଆଣ ମୁଁ ଟିକିଏ ଆଖି ପକାଇ ଦିଏ । ମୃତ୍ୟୁ ଶଯ୍ୟାରେ ମଧ ସେ ସାହିତ୍ୟ କଥା ଚିନ୍ତା କରୁଥିଲେ । ଏଭଳି ଚିନ୍ତା ତ ଜଣେ ସାହିତ୍ୟପ୍ରାଣ ବ୍ୟକ୍ତି ହିଁ କରିପାରେ ।

ସାର୍ ସାହିତ୍ୟର ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରିଥିଲେ । ତାଙ୍କ ଲିଖିତ ଗୋଟିଏ ଉପନ୍ୟାସ ଏ ପର୍ଯ୍ୟନ୍ତ ପ୍ରକାଶ ପାଇପାରି ନାହିଁ । ଏତଦ୍ ବ୍ୟତୀତ ତାଙ୍କ ଲିଖିତ ଅନ୍ୟ ସମସ୍ତ ପୁସ୍ତକ ପ୍ରକାଶିତ ହୋଇଛି କେବଳ ଲିଖିତ ଅଭିଭାଷଣକୁ ଛାଡ଼ି । ତାଙ୍କର ସାହିତ୍ୟିକ ଜୀବନର ପ୍ରାରମ୍ଭରେ ସେ 'ସୃଷ୍ଟିଛଡ଼ା' ଛଦ୍ମ ନାମରେ ଲେଖାଲେଖି କରୁଥିଲେ । ଦିନେ କଥା ପ୍ରସଙ୍ଗରେ ତାଙ୍କୁ ପଚାରିଥିଲି- 'ସୃଷ୍ଟିଛଡ଼ା' ଏପରି ଏକ ଛଦ୍ମନାମକୁ ଆପଣ କାହିଁକି ପସନ୍ଦ କରିଥିଲେ । ଉତ୍ତରରେ ସେ କହିଲେ "ଏହି ଛଦ୍ମନାମକୁ ମୁଁ ନିଜେ ଗ୍ରହଣ କରିନାହିଁ । ଶାନ୍ତିନିକେତନରେ ପଢ଼ିବା ସମୟରେ ମୋର ଜଣେ ପ୍ରଫେସର ଡ. ନରେନ୍ଦ୍ର ମିଶ୍ର ମୋର ସେ ସମୟର କାର୍ଯ୍ୟଧାରାକୁ ଦେଖି ମୋତେ କହିଲେ ତୁମେ ଜଣେ ସୃଷ୍ଟିଛଡ଼ା ମଣିଷ । କାହିଁକି କେଜାଣି ଏହି ନାମକରଣଟି ମୋତେ ବହୁତ ଭଲ ଲାଗିଲା । ସେହି ଦିନ ଠାରୁ ମୁଁ ଏହି ସୃଷ୍ଟିଛଡ଼ା ନାମକୁ ଆପଣେଇ ନେଲି ଓ ଏହି ନାମରେ ଲେଖାଲେଖି ଆରମ୍ଭ କଲି । ଏହାମୋର ସାହିତ୍ୟିକ ଜୀବନ ଆରମ୍ଭର କଥା ।"

ଓଡ଼ିଆ ସାହିତ୍ୟରେ ଏକ ଉଚ୍ଚମାନର ସାହିତ୍ୟ ସୃଷ୍ଟିର ସାର୍ ହେଉଛନ୍ତି ପ୍ରଥମ ସ୍ରଷ୍ଟା । ତାହା ହେଉଛି ଲଘୁପଞ୍ଚକ ବା ଲିମେରିକ୍ । 'ଲଘୁପଞ୍ଚକ' ର ଧର୍ମ ପାଠକକୁ ଆନନ୍ଦ ଦାନ କରିବା । ଏହା ଏକପ୍ରକାର ବ୍ୟଙ୍ଗ କବିତା ଯାହାକି ମାତ୍ର ପାଞ୍ଚଧାଡ଼ିରେ ଲେଖା ଯାଇଥାଏ । ମନ ଓ ପ୍ରାଣକୁ ରସାଣିତ କରି ଆନନ୍ଦ ଦାନ କରିବା ହେଉଛି ଲଘୁପଞ୍ଚକର ଧର୍ମ । ସାର୍‌ଙ୍କ ଚରିତ୍ର ହେଲା ସବୁବେଳେ କିଛି ନୂଆ ନୂଆ ଚିନ୍ତାକରିବା ଓ ସେହି ଅନୁସାରେ କାର୍ଯ୍ୟ କରିବା । ଯେଉଁଥିପାଇଁ ସେ ଓଡ଼ିଶାରେ ଜଣେ ଉତ୍ତମ ମାନର ଗବେଷକର ମାନ୍ୟତା ପାଇଛନ୍ତି ।

ଓଡ଼ିଶାରେ ଲିଖିତ ଅଭିଭାଷଣର ସ୍ରଷ୍ଟା ହେଉଛନ୍ତି କୃଷ୍ଣଚରଣ । ହାତ ହଲେଇ ବିଭିନ୍ନ ପ୍ରକାରର ଭାବ ଭଙ୍ଗୀ କରି ଭାଷଣ ଦେବାକୁ ସେ ଉଚିତ୍ ମନେକରନ୍ତି ନାହିଁ ।

ତାଙ୍କ ମତରେ ଭାଷଣ ସବୁ ପବନରେ ଉଡ଼ିଯାଏ । ସେ ସବୁ ଭାଷଣରେ ଅନେକ ତଥ୍ୟଗତ ତ୍ରୁଟି ଥାଏ । ଯେହେତୁ ମୌଖିକ ଭାଷଣ, ସମସ୍ତ ପ୍ରକାର ଭୁଲ ତ୍ରୁଟି ପବନରେ ମିଳେଇ ଯାଉ ଥିବାରୁ ଶ୍ରୋତାମାନେ ସେ ସବୁ ଭୁଲକୁ ଧରି ରଖି ପାରନ୍ତି ନାହିଁ । ଏଣୁ ସାର୍ ବିଶ୍ୱାସ କରୁଥିଲେ ଲିଖିତ ଭାଷଣରେ । ଖାଲି ସେତିକି ନୁହେଁ ଲିଖିତ ଭାଷଣ ପଢ଼ିସାରିବା ପରେ, ସେ ସବୁର କପି ମଧ୍ୟ ଶ୍ରୋତାମାନଙ୍କ ମଧ୍ୟରେ ବାଣ୍ଟି ଦିଅନ୍ତି । ସାରଙ୍କ ଲିଖିତ ଭାଷଣ- ଭାଷଣ ନୁହେଁ ବରଂ ଗୋଟେ ଗୋଟେ ଉଚ୍ଚମାନର ପ୍ରବନ୍ଧ ।

ଗଂଗାଧର ରଥ ଫାଉଣ୍ଡେସନ ପକ୍ଷରୁ ସମ୍ମାନଜନକ 'ସାହିତ୍ୟ ଭାରତୀ' ପୁରସ୍କାର ପାଇବା ପରେ, ଭଦ୍ରକର ପ୍ରାୟ ସମସ୍ତ ସାମାଜିକ ଓ ସାହିତ୍ୟିକ ଅନୁଷ୍ଠାନ ତାଙ୍କୁ ସମ୍ମାନିତ କରିବାକୁ ଚାହିଁଲେ । ସେତେବେଳେ ଭଦ୍ରକ ମହିଳା ମହାବିଦ୍ୟାଳୟରେ ଏକ ସାରସ୍ୱତ ସଭାରେ ସାରଙ୍କୁ ୩୧ଟି ମାନପତ୍ର ବିଭିନ୍ନ ଅନୁଷ୍ଠାନ ତରଫରୁ ପ୍ରଦାନ କରାଯାଇଥିଲା । ସେତେବେଳେ ତାଙ୍କୁ ଅଶୀବର୍ଷ ବୟସ ହୋଇଥିବାରୁ ଅଶୀଟି ଫୁଲତୋଡ଼ା ପ୍ରଦାନର ବ୍ୟବସ୍ଥା ହୋଇଥିଲା । କିନ୍ତୁ ଫୁଲତୋଡ଼ା ଦେଇ ତାଙ୍କୁ ସମ୍ବର୍ଦ୍ଧିତ କରିବା ବ୍ୟକ୍ତିଙ୍କର ଲାଇନ୍ ଏତେ ଲମ୍ବା ଥିଲା ଯେ ତାହା ୧୧୦କୁ ଟପି ଯାଇଥିଲା । ଗୋଟିଏ ସଭାରେ, ଗୋଟିଏ ମଞ୍ଚରେ ୩୧ଟି ମାନପତ୍ର ପାଇଥିବା ବ୍ୟକ୍ତି ସାରା ଓଡ଼ିଶା କାହିଁକି ବୋଧହୁଏ ଭାରତରେ ବିରଳ । ଏହି ପ୍ରକାରର ବିରଳ ବ୍ୟକ୍ତିତ୍ୱ ଥିଲେ ଡ. କୃଷ୍ଣଚରଣ ବେହେରା ।

ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପ୍ରାଚୀସମିତି (୧୯୨୬) ପରେ 'ଓଡ଼ିଆ ଗବେଷଣା ପରିଷଦ' ଥିଲା ଓଡ଼ିଶାର ଏକମାତ୍ର ଗବେଷଣା ପରିଷଦ, ଯାହାର ପ୍ରତିଷ୍ଠାତା ସଭାପତି ଥିଲେ କୃଷ୍ଣଚରଣ । ଏହି ପ୍ରତିଷ୍ଠାନର ମୁଖପତ୍ର ଥିଲା 'ଏଷଣା' । ଏହି ପରିଷଦ ଗଠନରେ ତାଙ୍କର ମୁଖ୍ୟ ସହଯୋଗୀ ଥିଲେ ଡ. କ୍ଷେତ୍ରବାସୀ ନାୟକ । 'ବେଦୀ' ଗଳ୍ପ ଲେଖି କୃଷ୍ଣଚରଣ ଖୁବ୍ ବିବାଦୀୟ ହୋଇପଡ଼ିଥିଲେ । ସେଥିପାଇଁ ତାଙ୍କୁ ଅନେକ ଗଂଜଣା ସହିବାକୁ ପଡ଼ିଥିଲା । ମାତ୍ର ଏହି ଗଂଜଣା ତାଙ୍କୁ ଜଣେ ସାହସୀ କଥାକାରର ମର୍ଯ୍ୟାଦା ଦେଇଥିଲା । ଖାଲି ସେତିକି ନୁହେଁ ଏହି କ୍ଷୁଦ୍ର ଗଳ୍ପଟି ପାଇଁ ସେ ଓଡ଼ିଶା ବିଖ୍ୟାତ ହୋଇଯାଇଥିଲେ । ପରବର୍ତ୍ତୀ ସମୟରେ ଏହି ଗଳ୍ପ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇ ତାଙ୍କୁ ଅନେକ୍ ପ୍ରତିଷ୍ଠା ଦେଇଛି । ଯେଉଁମାନେ ଏହି ଗଳ୍ପକୁ ଅଶ୍ଳୀଳ କହି ସମାଲୋଚନା କରୁଥିଲେ, ସେମାନଙ୍କୁ ଦିନେ ଧୂଳି ଚାଟିବାକୁ ପଡ଼ିଥିଲା । ସତ୍ୟ ଓ ଧର୍ମର ଜୟ ହୋଇଥିଲା । କୃଷ୍ଣଚରଣ ପାଲଟି ଯାଇଥିଲେ ଜଣେ ଯଶସ୍ୱୀ କଥାକାର । ଏହି ଗଳ୍ପକୁ କେନ୍ଦ୍ରକରି କିଛି ଅସହିଷ୍ଣୁ ବ୍ୟକ୍ତି ତାଙ୍କୁ ଚାକିରିରୁ ବହିଷ୍କାରର ଯୋଜନା କରିଥିଲେ । ସେତେବେଳେ ଡ. ହରେକୃଷ୍ଣ ମହତାବଙ୍କ ନିରପେକ୍ଷ ଉଦ୍ୟମ ଯୋଗୁ ସେ ସବୁ ଉଦ୍ୟମ ଫସର ଫାଟିଯାଇଥିଲା ଏବଂ ପରୋକ୍ଷରେ କୃଷ୍ଣଚରଣଙ୍କ ଉପରେ ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକମାନଙ୍କର ଶୁଭ ଆଶୀର୍ବାଦ ଅଜାଡ଼ି ହୋଇ ପଡ଼ିଥିଲା ।

କୃଷ୍ଣଚରଣଙ୍କ ଆତ୍ମ ଜୀବନୀ 'ଆଖିର ଦେଖା- ପ୍ରାଣର କଥା' ଏକ ଅଲିଭା ସ୍ୱାକ୍ଷର । ସେ ଘୋଷଣା କରନ୍ତି ତାଙ୍କ ଆତ୍ମଜୀବନୀ ଏକ ସାଧାରଣ ମଣିଷର କଥା । ସେ ନିଜେ କୁହନ୍ତି "ମୁଁ ଜନ୍ମସୂତ୍ରରେ ଶୁଦ୍ର କିନ୍ତୁ କର୍ମ ସୂତ୍ରରେ ରୁଦ୍ର, ସାମାଜିକ ସ୍ଥିତିରେ ଇତର କିନ୍ତୁ ଚେଷ୍ଟା ଚରିତ୍ରରେ ଐତରେୟ" ତାଙ୍କର ଅକପଟ ଉଚ୍ଚାରଣ ଅନ୍ୟମାନଙ୍କ ପାଇଁ ଆଶାର ଇଗଲ । ସ୍ୱୀକାରୋକ୍ତିକୁ ସାର୍ ସବୁ ସମୟରେ ଗୁରୁତ୍ୱ ଦେଇ ଥାଆନ୍ତି, ସେ କୁହନ୍ତି ପରିଶ୍ରମ ହିଁ ମଣିଷକୁ ବଡ଼ କରେ- ପରଶ୍ରୀକାତରତା ନୁହେଁ । ସତ୍ୟକୁ ସାମନା କରିବାରେ ଓ ପ୍ରକାଶ କରିବାରେ ସେ ବୀତସ୍ପୃହ ନୁହନ୍ତି । ଗୋଟେ କଥା ଏହି କ୍ରମରେ ମନେପଡ଼େ । ଆତ୍ମ ଜୀବନୀ ପ୍ରକାଶ ପାଇବାକୁ ଥାଏ । ସୁଦୂର ବିଦେଶରୁ ତାଙ୍କ ସାନପୁଅ କଟକ ଆସିଥାଆନ୍ତି । ଆତ୍ମଜୀବନୀର ପାଣ୍ଡୁଲିପିଟି ପଢ଼ିଲେ । ପଢ଼ି ସାରିବା ପରେ ବାପାଙ୍କୁ ଅନୁରୋଧ କଲେ ଗୋଟେ ନିର୍ଦ୍ଦିଷ୍ଟ ପରିଚ୍ଛେଦକୁ ପ୍ରକାଶ ନକରିବା ପାଇଁ । ସେ ଅନୁରୋଧ ସେ ରଖିଲେ ନାହିଁ ବରଂ କହିଲେ ଏହାହିଁ ତ ସତ୍ୟ । ସତ୍ୟର ଏ ଅପଳାପ କାହିଁକି ? ସତ୍ୟ କାହାକୁ କୌଣସି ସମୟରେ କେବେ ଲଜ୍ଜା ଦିଏନା । ବରଂ ସତ୍ୟକୁ ପ୍ରକାଶ ନକରିବା ଲଜ୍ଜାଜନକ ।

ପ୍ରେମ ଓ ଯୌନତାକୁ ସାର୍ କେବେ ଭିନ୍ନ ଦୃଷ୍ଟିରେ ଦେଖି ନାହାଁନ୍ତି । ସେ କୁହନ୍ତି ଏ ଦୁଇଟି ତ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ଏହାହିଁ ତ ଭଗବାନଙ୍କର ମଣିଷମାନଙ୍କ ପାଇଁ ଅପାର ଦାନ । ଏହାକୁ ଭିନ୍ନ ଦୃଷ୍ଟିରେ ଦେଖିବା ଉଚିତ୍ ନୁହେଁ । ପ୍ରେମ ଥିବ ଯୌନତା ନଥିବ ଏହା ଅସମ୍ଭବ । କିନ୍ତୁ ଏହା ଭିତରକୁ କୌଣସି ଅବିଶ୍ୱାସ୍ୟ ପ୍ରବେଶ କରିବା ଉଚିତ୍ ନୁହେଁ । ଯେଉଁମାନେ ପ୍ରେମ ଓ ଯୌନତାକୁ ଭିନ୍ନ ଦୃଷ୍ଟିରେ ଦେଖନ୍ତି ସେମାନେ ଜଣେ ଜଣେ ପ୍ରବଂଚକ । ସତ୍ୟକୁ ସମାନା କରିବା ଜାଣି ନାହାଁନ୍ତି ।

ସାର୍ ତାଙ୍କର ପ୍ରଥମ ସାହିତ୍ୟିକ ଜୀବନରେ କବିତା ଲେଖୁଥିଲେ । କିନ୍ତୁ ସେ ଦୁଃଖକରି କୁହନ୍ତି ମୋତେ ଓଡ଼ିଶାରେ କେହି କବି ବୋଲି କହିଲେ ନାହିଁ । ଏହା ହିଁ ତାଙ୍କର ଅବସୋସ ଥିଲା । ବାସ୍ତବରେ ସେ ସାହିତ୍ୟର ସମସ୍ତ ବିଭାଗରେ ଲେଖନୀ ଚାଳନା କରିଥିଲେ ମଧ୍ୟ ଓଡ଼ିଶା ତାଙ୍କୁ ଗ୍ରହଣ କରିନେଇଥିଲା ଜଣେ ଆଲୋଚକ ଓ ପ୍ରାବନ୍ଧିକ ଭାବରେ । କୃଷ୍ଣଚରଣ ଯେ ଜଣେ ଉଚ୍ଚମାନର ସମାଲୋକଚକ ଥିଲେ ଏହା ନିଃସନ୍ଦେହ । ସର୍ବମୋଟ ୧୨ଟି ଗଳ୍ପ ଗ୍ରନ୍ଥର ସେ ସ୍ରଷ୍ଟା । ମୋଟ ୨୧ଟି ପ୍ରବଂଧ ପୁସ୍ତକ ସେ ରଚନା କରିଛନ୍ତି । କୃଷ୍ଣଚରଣଙ୍କର କାବ୍ୟ-କବିତା ସଂଖ୍ୟା ସର୍ବମୋଟ ୪ଖଣ୍ଡ । ଶିଶୁକିଶୋର ରଚନା ମଧ୍ୟ ଚାରିଖଣ୍ଡ । ନାଟ୍ୟକୃତି ୨ଟି ପୁସ୍ତକ । ତାଙ୍କର ସଂପାଦିତ ଓ ସଂକଳିତ ଗ୍ରନ୍ଥ ସଂଖ୍ୟା ମୋଟ ୨୦ଟି ।

୧୯୬୬ରେ ବିଲୁପ୍ତ ହେବାକୁ ଯାଉଥିବା ଦୁଷ୍ପ୍ରାପ୍ୟ 'ମୋଗଲ ତାମସା'ର ପୂର୍ଣ୍ଣାଙ୍ଗ

ପାଣ୍ଡୁଲିପି ସାର୍‌ଙ୍କ ଦ୍ୱାରା ସଂଗୃହୀତ, ପ୍ରକାଶିତ ଓ ସଂପାଦିତ । ଏହା ଭଦ୍ରକ ସାଂସ୍କୃତିକ ଇତିହାସର ପୁର୍ନଜୀବନ ଓ ମୋଗଲ ତମସାର ସଂରକ୍ଷଣ । ସେହି ମୋଗଲ ତମସା ପୁର୍ନଜନ୍ମ ଲାଭକରି ବର୍ତ୍ତମାନ ସାରା ଭାରତରେ ଖ୍ୟାତ । ଖାଲି ସେତିକି ନୁହେଁ ଭାରତ ବାହାରକୁ ଯିବାପାଇଁ ମଧ୍ୟ ଅଣ୍ଟା ଭିଡ଼ିଛି । 'ଚଇତି ତାମସା' କୁ ମଧ୍ୟ କୃଷ୍ଣଚରଣ ସଂରକ୍ଷଣ କରି ସଂପାଦନା କରିଛନ୍ତି ।

ଗବେଷଣା କ୍ଷେତ୍ରରେ ତତ୍ତ୍ୱାବଧାରକଙ୍କର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ନହେଲେ ସମୀକ୍ଷା ଲକ୍ଷ୍ୟଚ୍ୟୁତ ହେବାର ସମ୍ଭାବନା ଯଥେଷ୍ଟ । ଏହି ଦୃଷ୍ଟିରୁ ସାର୍ ଥିଲେ ଖୁବ୍ ସକ୍ରିୟ ଓ ସଚ୍ଚୋଟ ତତ୍ତ୍ୱାବଧାରକ । ତାଙ୍କର ସବୁଠାରୁ ବଡ଼ ସମ୍ବଳ ଥିଲା ଧୈର୍ଯ୍ୟ ଓ ଧୀଶକ୍ତି । ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓଡ଼ିଶାର ୨୧ଜଣ ଗବେଷକ ବିଭିନ୍ନ କ୍ଷେତ୍ରରେ ଗବେଷଣା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

ଜୁଲାଇ ୨୯ ତାରିଖ ୨୦୧୭ ମସିହାର ଏକ ପବିତ୍ର ବ୍ରାହ୍ମ ମୁହୂର୍ତ୍ତରେ ଭୁବନେଶ୍ୱର ଆପୋଲ ହସ୍ପିଟାଲରେ ସାର୍ ଇହଲୀଳା ତ୍ୟାଗ କଲେ । ସେ ଏ ସଂସାର ତ୍ୟାଗ କଲେ ଏହା ସତ୍ୟ କିନ୍ତୁ ଆମ୍ଭମାନଙ୍କୁ ତ୍ୟାଗ କରି ନାହାନ୍ତି କିମ୍ବା ଆମ୍ଭେମାନେ ମଧ୍ୟ ତାଙ୍କୁ ତ୍ୟାଗ କରିନାହୁଁ । ସେ ଆମ୍ଭମାନଙ୍କ ଗହଣରେ ଅଛନ୍ତି ଓ ରହିବେ ଚିରକାଳ । ସାର୍ ଥିଲେ ମୋର ମାର୍ଗଦର୍ଶକ, ବନ୍ଧୁ, ଗୁରୁ, ବାପା ଏବଂ ସବୁ କିଛି । ଶେଷରେ ଏତିକି କହିବି ତାଙ୍କର ମୃତ୍ୟୁ ମୋତେ ପୁଣି ଥରେ ବାପ ଛେଉଣ୍ଡ କରିଦେଲା । ❖

ସମ୍ପାଦକ, 'ପ୍ରେମପୃଥିବୀ',
ସହିଁଆ, ଭଦ୍ରକ, ଓଡ଼ିଶା
ମୋ-୯୪୩୭୩୩୫୧୮୯

# ଗୁରୁଜୀ ପ୍ରଣାମ

ଆର୍ଯ୍ୟ ଯକ୍ଷଦତ୍ତ

ଡ. କୃଷ୍ଣଚରଣ ବେହେରା ମୋର ପିତୃପ୍ରତିମ ଥିଲେ । ଅତି ସରଳ, ସ୍ନେହୀ, ଅମାୟିକ, ଛାତ୍ରବତ୍ସଳ, ନିରଳସ ସାଧକ ଥିଲେ । ମୋ ପାଇଁ ଥିଲେ ପ୍ରେରଣାର ଉତ୍ସ । ମୋର କେତୋଟି ଗଳ୍ପ ପଢ଼ିଥିଲେ ଏବଂ ଦୁଇଟି ବହିର ସମୀକ୍ଷା 'ଏଷଣା'ରେ ପତ୍ରସ୍ଥ କରିଥିଲେ । ତାଙ୍କ ନିକଟରେ ମୁଁ ଚିରଋଣୀ । ସେ ସମ୍ପୂର୍ଣ୍ଣ ଭାବେ ସାହିତ୍ୟପ୍ରାଣ ଥିଲେ ଏବଂ ତାଙ୍କ ନିଶ୍ୱାସପ୍ରଶ୍ୱାସରେ ସାହିତ୍ୟ ହିଁ ସାହିତ୍ୟ ପ୍ରବାହିତ ହେଉଥିଲା । 'ଏଷଣା'ର ମନୋଜ୍ଞ ସମ୍ପାଦନା ନିମିତ୍ତ ସେ ଅମର ରହିବେ । ତାଙ୍କର ପୃଷ୍ଠପୋଷକତାରେ ଗଢ଼ି ଉଠିଥିଲା ଓଡ଼ିଆ ଗବେଷଣା ପରିଷଦ ।

୧୯୮୦ ମସିହାରୁ ତାଙ୍କ ସହିତ ମୋର ଆତ୍ମୀୟତା ଗଢ଼ି ଉଠିଲା । ମତେ ସେ ନିର୍ଦ୍ଦେଶ ଦେଲେ ତମେ 'ଲଘୁପଞ୍ଚକ' ଉପରେ ପ୍ରବନ୍ଧଟିଏ ଲେଖ । ସେ ଓଡ଼ିଆ ସାହିତ୍ୟରେ 'ଲଘୁପଞ୍ଚକ'ର ସ୍ମରଣୀୟ ପ୍ରବର୍ତ୍ତକ ଥିଲେ । ମତେ ସେ କିଛି ସହାୟକ ସାମଗ୍ରୀ ଦେଲେ ଏବଂ ମୋ ପାଖରେ ଥିବା ସାମଗ୍ରୀକୁ ମିଶାଇ ରଚନା କଲି 'ଲଘୁପଞ୍ଚକ- ଏକ ଅଧ୍ୟୟନ ଏବଂ ଡଗର କାର୍ଯ୍ୟାଳୟରେ ପାଠ କଲି । ସେହି ପ୍ରବନ୍ଧଟି 'ଡଗର'ରେ ପତ୍ରସ୍ଥ ହେଲା । ସାର୍ ଏ ପ୍ରବନ୍ଧ ପଢ଼ି ଗଭୀର ସନ୍ତୋଷ ପ୍ରକାଶ କଲେ ।

ତାଙ୍କର ସ୍ୱାଗତରେ ଗଦଗଦ ଭାବ କେହି ଭୁଲିପାରିବେ ନାହିଁ । ସବୁବେଳେ ଜଳପାନ କରାଇବେ । ଗୁରୁମା'ଙ୍କ ମଧୁମେହ ରୋଗ ଥିଲା, ସେ । ତାଙ୍କୁ ମୁଁ ବ୍ୟସ୍ତବିବ୍ରତ ହେବାର ଲକ୍ଷ୍ୟ କରିନାହିଁ । ଶୁଭକାନ୍ତ ଚାଲିଗଲେ ଅକାଳରେ । ସବୁ ଦୁର୍ଘଟଣାକୁ ସେ ପଥର ଭଳି ସହିଗଲେ ସାଧନାକୁ ସାଥୀ କରି ।

ମୋର ଦୁଃଖ ତାଙ୍କ ସହିତ ସାକ୍ଷାତ ହୋଇ ନ ଥିଲା ଦୀର୍ଘଦିନ ଧରି । ଫେସ୍‌ବୁକ୍‌ରୁ ଜାଣିଲି ସାର୍ ଆଉ ନାହାନ୍ତି ।

ସେ ଗଳ୍ପ, ପ୍ରବନ୍ଧ, ଲଘୁପଞ୍ଚକ, କବିତାଦି ରଚନା କରିବା ବ୍ୟତୀତ ସ୍ୱନାମଧନ୍ୟ ସମ୍ପାଦକ ଓ ସଂକଳକ ଥିଲେ । ତାଙ୍କୁ ମୋର କୋଟି କୋଟି ଦଣ୍ଡବତ । ସେ ଚିର ଅମର । ତାଙ୍କୁ ଶ୍ରଦ୍ଧାସୁମନ ଅର୍ପଣ କରି ମୁଁ ଧନ୍ୟ ମନେ କରୁଛି । ❖

ମୋ-୯୪୩୮୦୪୦୩୦୧

# ପରଶମଣି

ଡ. ପଦ୍ମଶ୍ରୀ ଦାସ

There is a greatman, who makes every man feel small, but the greatman is the man, who makes every man feel great- ନିଜ ଗୁରୁ ତଥା ମାର୍ଗଦର୍ଶକ ଡ. ପ୍ରହ୍ଲାଦ ପ୍ରଧାନଙ୍କ ପ୍ରସଙ୍ଗରେ ଜି.କେ.ଚେଷ୍ଟରଟନ (୧୮୭୪-୧୯୩୬)ଙ୍କ ଉପର୍ଯ୍ୟୁକ୍ତ ସୂକ୍ତିକୁ ଉଦ୍ଧାର କରିଛନ୍ତି ଡ. କୃଷ୍ଣଚରଣ ବେହେରା (ପରଶମଣି, ପୃ ୪୦) । ଏହି ସୂକ୍ତିଟି ଗୁରୁ ପ୍ରହ୍ଲାଦ ପ୍ରଧାନଙ୍କ ପାଇଁ ଯେପରି ପ୍ରଯୁଜ୍ୟ, ଶିଷ୍ୟ କୃଷ୍ଣଚରଣଙ୍କ ପାଇଁ ମଧ୍ୟ ସେତିକି ପ୍ରତିପାଦ୍ୟ । ଜ୍ଞାନ ମଣିଷକୁ ସ୍ଥିତପ୍ରଜ୍ଞ କରେ, ମହାନତା କରେ ସମଦର୍ଶୀ । ଜ୍ଞାନ ପିପାସୁ, ସ୍ଥିତପ୍ରଜ୍ଞ ସମଦର୍ଶୀ କୃଷ୍ଣଚରଣଙ୍କ ବ୍ୟକ୍ତିତ୍ୱରେ ତାହାହିଁ ପ୍ରତିଫଳିତ । ଶ୍ଳାଘ୍ୟ ଗୁରୁଙ୍କର ବରେଣ୍ୟ ଶିଷ୍ୟ ସେ । ପରବର୍ତ୍ତୀ କାଳରେ ଯେଉଁମାନେ ଡ. କୃଷ୍ଣଚରଣ ବେହେରାଙ୍କ ନିକଟରେ ଶିକ୍ଷା ଲାଭ କଲେ, ଗବେଷଣା କଲେ, ସମସ୍ତେ ସମସ୍ୱରରେ ଏକଥା ସ୍ୱୀକାର କରିଛନ୍ତି । ବହୁତଳ ବିଶିଷ୍ଟ ପ୍ରିଜମ୍ ଭଳି କୃଷ୍ଣଚରଣଙ୍କ ସାହିତ୍ୟିକ ପ୍ରତିଭା ଅଥବା ବ୍ୟକ୍ତିତ୍ୱର ଆକଳନ ପାଇଁ ଏ ଲେଖା ଉଦ୍ଦିଷ୍ଟ ନୁହେଁ । ସେଥିପାଇଁ ଏ ଲେଖନୀରେ ସାମର୍ଥ୍ୟ ମଧ୍ୟ ନାହିଁ । ନିଜ ଅଭିଜ୍ଞତାରୁ ଦିପଦ କହିବା ମୋର ଲକ୍ଷ୍ୟ ।

ଡ. ବେହେରା ଏମ୍.ପି.ସି. କଲେଜ, ବାରିପଦାରେ କର୍ମରତ ଥାଆନ୍ତି । ସଂସାର ଜଞ୍ଜାଳ ଭିତରେ ଜୀବନର ଗୋଟିଏ ଅଧ୍ୟାୟ କଟାଇ ସାରି ମୋ ମନର ଅବଦମିତ ଇଚ୍ଛାପୂରଣ ପାଇଁ ମୁଁ ସାର୍‌ଙ୍କ ସଙ୍ଗେ ସାକ୍ଷାତ କରିବାକୁ ଯାଇଥିଲି । ଜଣେ ସଂପୂର୍ଣ୍ଣ ଅପରିଚିତା ମହିଳା, ସଂସାର ଜଞ୍ଜାଳ ଭିତରେ ରହି, ଓଡ଼ିଆ ସାହିତ୍ୟରେ ଉଚ୍ଚତର ଡିଗ୍ରୀ ହାସଲ କରିବାକୁ ଚାହୁଁଛି, ଏ କଥା ଶୁଣି ସେ ଉପହାସ କଲେ ନାହିଁ, ନିରୁତ୍ସାହିତ କଲେ ନାହିଁ, ଏଭଳି ଇଚ୍ଛାକୁ ଅନାବଶ୍ୟକ ଭାବି ଉପେକ୍ଷା ମଧ୍ୟ କଲେ ନାହିଁ । ଧୈର୍ଯ୍ୟ ଧରି ସବୁ ଶୁଣିଲେ, କେତୋଟି ଆବଶ୍ୟକ ଉପଦେଶ ଦେଲେ । ଅଳ୍ପ କଥା, ଅଥଚ ମୋ ମନରେ ନିଜ ପ୍ରତି ପତିଆରା ଆସିଲା । ଏ ଥିଲା ତାଙ୍କ ସଂଗେ ପ୍ରଥମ ଦର୍ଶନ । ଏହାର କିଛିବର୍ଷ ପରେ, ଓଡ଼ିଆ ସାହିତ୍ୟରେ ଗବେଷଣା କରି ପିଏଚ୍.ଡ଼ି. ଡିଗ୍ରୀ ଲାଭ କରିବାର

ଅଦମ୍ୟ ଇଚ୍ଛା । କୃଷ୍ଣ ସାର୍ ସେତେବେଳେ ରେଭେନ୍ସା କଲେଜରେ କର୍ମରତ ତାଙ୍କୁ ଚିଠି ଲେଖିଲି । ଉତ୍ତର ପାଇବାରେ ବିଳମ୍ବ ହେଲା ନାହିଁ । ମୋ ଭଳି ବହୁ ଅତ୍ୟୁତ୍ସାହୀ ଛାତ୍ରଛାତ୍ରୀ ପି.ଏଚ୍.ଡ଼ି ରେଜିଷ୍ଟ୍ରେସନ ପରେ ହଠାତ୍ ବୀତସ୍ପୃହ ହୋଇ ଅଧାରୁ କାମ ବନ୍ଦ କରିଦେବାର ତିକ୍ତ ଅନୁଭୂତିରୁ ସାର୍ ପ୍ରଥମେ ମୋ ନିଷ୍ଠାର ପରୀକ୍ଷା ନେବା ପାଇଁ ମୋ ଉପରେ ଗବେଷଣାର ବିଷୟ ନିର୍ବାଚନ ଦାୟିତ୍ୱ ଦେଲେ ଏବଂ ସେହି ବିଷୟ ଉପରେ କିଛି ଲେଖି ପଠାଇବା ପାଇଁ କହିଲେ । ସେ ଔପଚାରିକତା ପରେ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ନିଖିଳ ଉତ୍କଳ ଅଧ୍ୟାପକ ସମ୍ମିଳନୀରେ ବହୁ ବ୍ୟବଧାନ ପରେ ସାର୍‌ଙ୍କ ସଂଗେ ସାକ୍ଷାତ ହେଲା । ସେତେବେଳକୁ ସାର୍‌ଙ୍କ ଚେହେରା ମୋ ସ୍ମୃତିରେ ଅସ୍ପଷ୍ଟ । ଅଡ଼ିଟୋରିୟମ୍‌ରେ ତାଙ୍କର ସ୍ପଷ୍ଟ, ପ୍ରାଞ୍ଜଳ ବକ୍ତବ୍ୟର ଉପସ୍ଥାପନ ଥିଲା ଅତ୍ୟନ୍ତ ପ୍ରଭାବଶାଳୀ । ମନର ସମସ୍ତ ସଂଶୟ କଟିଗଲା ।

ସଭା ଶେଷରେ ତାଙ୍କ ନିକଟକୁ ଯାଇଁ ପରିଚୟ ଦେଲି । ଡ. ବେହେରାଙ୍କ ଶ୍ୱଶୁରାଳୟ ମୟୂରଭଞ୍ଜରେ- ଏହା କହି ସେ ମୋତେ ହସି ହସି ସମ୍ଭାଷଣ କଲେ । ଆମର ସମ୍ପର୍କର ଆଉ ଏକ ସୂତ୍ର ବାହାରି ପଡ଼ିଲା । ସେତେବେଳେ ସେ ପ୍ରଫେସରପଡ଼ାରେ ରହୁଥାନ୍ତି । ତାଙ୍କ ଘରର ଠିକଣା ଦେଇ ଲେଖିଥିଲେ, 'ଏ ପଟେ କୁଞ୍ଜବିହାରୀ ତ୍ରିପାଠୀ, ସେ ପଟେ କୁଞ୍ଜବିହାରୀ ଦାଶ, ମଝିରେ ମୁଁ କୃଷ୍ଣଚରଣ ।' ଏହାକୁ ଆକ୍ଷରିକ ଭାବରେ ଗ୍ରହଣ କରି ମୁଁ ତାଙ୍କ ଘର ଖୋଜିବାକୁ ଚାଲିଗଲି- ବେଶ ଖୋଜା ଖୋଜି ପରେ ଘର ଠିକଣା ମିଳିଲା । ତାଙ୍କ ପତ୍ନୀଙ୍କ ସଂଗେ ପରିଚୟ ହେଲା । ଜୟନ୍ତୀ ଦେବୀଙ୍କ ସ୍ନେହରେ ମୁଁ ବନ୍ଧା ପଡ଼ିଗଲି । ମୋତେ ସେ ସାନଭଉଣୀର ସ୍ନେହ ଦେଇଥିଲେ । ତାଙ୍କର ହାତରନ୍ଧାର ସ୍ୱାଦ ଏଯାଏଁ ମୁଁ ଭୁଲିନାହିଁ । ଗବେଷଣା ସଂକ୍ରାନ୍ତରେ ତାଙ୍କ ଘରକୁ ଯିବା ଆସିବା ଲାଗିଲା । ପ୍ରଥମେ ପ୍ରଫେସରପଡ଼ା, ପରେ ରେଭେନ୍ସା କଲେଜ କ୍ୟାମ୍ପସରେ ଥିବା ତାଙ୍କ ଘରକୁ ଅସଂଖ୍ୟ ଥର ଯାଇଛି । ମୁଁ ପହଞ୍ଚିଲା ମାତ୍ରେ ସାର୍ ବଡ଼ ପାଟିରେ ପତ୍ନୀଙ୍କୁ ଜଣାଇ ଦେବେ, 'ଆରେ, ପଦ୍ମଶ୍ରୀ ଆସିଲାଣି । ତା' ପାଇଁ କିଛି ଖାଇବାକୁ ଆଣ ।' ଜୟନ୍ତୀ ଦେବୀ ହସ ହସ ମୁହଁରେ ମୋତେ ସଙ୍ଖୁଳନ୍ତି । ସାର୍‌ଙ୍କ ସଙ୍ଗେ ଆଲୋଚନା ପରେ ମାଡ଼ାମ୍‌ଙ୍କ ସଙ୍ଗେ ଘଡ଼ିଏ ଆଳାପ ଆଲୋଚନା ନ କଲେ ମନ ପୂରେନା । ପିଲାମାନଙ୍କ 'ମାଉସୀ' ଡାକରେ ମଧ୍ୟ ଅକୃତ୍ରିମ ସ୍ନେହ ଶ୍ରଦ୍ଧା ଭରି ରହିଥାଏ ।

ସଂସାରର ଦାବିକୁ ଅଗ୍ରାଧିକାର ଦେଇ ମୋର ଗବେଷଣା କାର୍ଯ୍ୟ ବିଳମ୍ବ ହେବାକୁ ଲାଗିଲା । ବହୁବାର ମୁଁ ହତାଶ ହୋଇଛି । ଭାବିଛି ଆଉ କାମ କରିବିନି, ମୋ ଦ୍ୱାରା ଗବେଷଣା କାର୍ଯ୍ୟ ସଂପାଦିତ ହେବ, ଏ ବିଶ୍ୱାସରେ ସଂଶୟ ଆସିଛି । କିନ୍ତୁ ଡ. ବେହେରାଙ୍କ ପ୍ରତ୍ୟୟଭରା କଥା ମୋର ମନୋବଳ ଫେରାଇ ଦେବାରେ ସକ୍ଷମ

ହୋଇଛି । ଶେଷରେ ମୋ ଗବେଷଣା କାର୍ଯ୍ୟ ଯେ କେବଳ ସମ୍ପୂର୍ଣ୍ଣ ହେଲା ସେତିକି ନୁହେଁ ଗବେଷଣା ପରିଷଦର ଆଜୀବନ ସଭ୍ୟା ଭାବରେ ବହୁ ଜ୍ଞାନୀଗୁଣୀଙ୍କ ମଧ୍ୟରେ ରହି ସାହିତ୍ୟ ଅନୁଷ୍ଠାନମାନଙ୍କରେ ସକ୍ରିୟ ଅଂଶଗ୍ରହଣ କରିବାରେ କୌଣସି ସଙ୍କୋଚ, କୌଣସି ଦ୍ୱିଧା ରହିଲା ନାହିଁ । ଓଡ଼ିଆରେ ଯେଉଁ ଆପ୍ତବଚନ ରହିଛି, 'ଡର କାହାକୁ, ଭୟ କାହାକୁ- ଠାକୁରେ ଅଛନ୍ତି ଚଉବାହାକୁ'- ସତେ ଯେପରି ମୋ ପାଇଁ ହୋଇଗଲା 'ଡର କାହାକୁ, ଭୟ କାହାକୁ, ମୋ ଗୁରୁ ଅଛନ୍ତି ଚଉବାହାକୁ ।' 'ଓଡ଼ିଆ ଗବେଷଣା ପରିଷଦ'ର ଆଜୀବନ ସଭ୍ୟା ହେବା, ପ୍ରଥମରୁ ଏହି ସମ୍ମାନଜନକ ଗବେଷଣା ସଂସ୍ଥାର ଅଂଶବିଶେଷ ହେବା ମୋ ପାଇଁ ଏକ ବିରଳ ଗୌରବ । ମୋର ଏଥିପାଇଁ କି ଯୋଗ୍ୟତା ଥିଲା ମୁଁ ଜାଣେନା, କିନ୍ତୁ ମହତ୍ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସିଲେ ଅକିଞ୍ଚନ ବି ମୂଲ୍ୟବାନ ହୋଇଯାଏ ।

ଡ. ବେହେରା କିନ୍ତୁ ମୋତେ ଅକିଞ୍ଚନ ଭାବିବାର ଅବକାଶ କେବେ ଦେଇ ନାହାନ୍ତି । ମୋର ମନେ ଅଛି, ଗବେଷଣା କାର୍ଯ୍ୟରେ ଉପାଦାନ ସଂଗ୍ରହ ପାଇଁ ଥରେ ଗୋଟିଏ ସଂସ୍ଥାକୁ ଯାଇଥିଲି । ସେଠାକାର ଦାୟିତ୍ୱରେ ଥିବା ଜନୈକ ବିଜ୍ଞ ବ୍ୟକ୍ତି ମୋର ଗବେଷଣାର ବିଷୟ-ବସ୍ତୁ ଶୁଣି କହିଥିଲେ, 'ଆପଣ ସହଜ ସରଳ ବିଷୟ (ଯେପିରିକି ଅନୁବାଦ ଇତ୍ୟାଦି) ନେଇ କାମ କଲେ ନାହିଁ କାହିଁକି ? ଏକେ ମହିଳା ପୁଣି ସଂସାର ଜଞ୍ଜାଳଗ୍ରସ୍ତା । ଆପଣଙ୍କ ବିଷୟଟି ପାଇଁ ବହୁ ଫିଲ୍ଡ ଓ୍ୱାର୍କ ଦରକାର, ପୁଣି ପଞ୍ଚସଖା ବିଷୟଟି ନାନା ମତାମତରେ ବିବଦମାନ । ଏଭଳି ବିଷୟରେ ଗବେଷଣା ପାଇଁ ଜଣେ ଶକ୍ତ ଗବେଷକ ଦରକାର ।' ଫେରି ଆସି ଡ. ବେହେରାଙ୍କୁ ଏକଥା କହିଲାରୁ ସେ ଚିରାଚରିତ ନିର୍ଲିପ୍ତ ଢଙ୍ଗରେ ଗମ୍ଭୀର ମୁହଁରେ ଧାରେ ହସ ଖେଳାଇ କହିଲେ, ତୁମେ ଶକ୍ତ ଗବେଷକ ନୁହଁ ବୋଲି ସେ କାହିଁକି ଭାବୁଛନ୍ତି ? ଏହି ଗୋଟିଏ ବାକ୍ୟରେ ମୋର ମନର ସବୁ ସଂଶୟ କଟିଗଲା । ଏଭଳି ଏକ ବ୍ୟକ୍ତିତ୍ୱ ସେ ।

ସେ କେବଳ ମୋର ଜ୍ଞାନଗୁରୁ ନ ଥିଲେ, ସେ ଥିଲେ ଆମ ପରିବାରର ପରମ ଶୁଭେଚ୍ଛୁ । ପଦ୍ମଶ୍ରୀ ଓ ଭାରତୀ କୁମାରଙ୍କ ମଧୁମିଳନର ସ୍ୱର୍ଣ୍ଣ ଜୟନ୍ତୀ ପାଳନ ଅବସରରେ ପ୍ରଫେସର କୃଷ୍ଣଚରଣ ବେହେରା ଶୁଭେଚ୍ଛା ବାର୍ତ୍ତାଟିଏ ଦେଇଥିଲେ-

ତୁମେ ଦୁହେଁ ବର-ବଧୂ ଏକ ଦେହେ ଦୁଇ ହାତ ଭଳି
ବାମ ଓ ଡାହାଣ ହାତ ମିଳିମିଶି ରଚିବ ଅଞ୍ଜଳି ।
ସେଇ ଅଞ୍ଜଳିରେ ସିନା ପ୍ରେମ ସୁଧା କରିହେବ ପାନ
ଜୀବନ ଦେବତା ପାଶେ ପୁଷ୍ପାଞ୍ଜଳି କରିହେବ ଦାନ ॥

କଟକ/୧୬.୧୧.୨୦୧୧ କୃଷ୍ଣଚରଣ ବେହେରା

ଇଏ ହେଲେ ଡ. କୃଷ୍ଣଚରଣ ବେହେରା- ଅନନ୍ୟ ଅସାଧାରଣ- ମୋର friend, philosopher and guide.

ମହାଶ୍ୱେତା ଦେବୀଙ୍କ ଉପନ୍ୟାସ ଝାନ୍‌ସୀରାଣୀ ଅନୁବାଦ କରି ପାଣ୍ଡୁଲିପିଟି ଯେତେବେଳେ ତାଙ୍କ ନିକଟକୁ ନେଇ ଯାଇଥିଲି, ଭଗ୍ନ ସ୍ୱାସ୍ଥ୍ୟ, ପ୍ରିୟଜନଙ୍କ ବିୟୋଗରେ ଉଦାସୀନ ମୁଖମଣ୍ଡଳରେ ତାଙ୍କର ଆନନ୍ଦାଲୋକର ବିଚ୍ଛୁରଣ ଘଟିଥିଲା । ପାଣ୍ଡୁଲିପିଟିକୁ ଦୁଇହାତରେ ଧରି କହିଥିଲେ, 'ଭଲ କାମଟିଏ ହେଲା ।' ତାଙ୍କରି ହାତରେ ପୁସ୍ତକଟିର ଉନ୍ମୋଚନ କରାଇ ପାରିଥିଲି- ଏତିକି ମାତ୍ର ସାନ୍ତ୍ୱନା । ❖

'ଗୋବିନ୍ଦ ନିବାସ'
ବାରିପଦା

# ଅଭୁଲା ସ୍ମୃତି

ଆଡ୍‌ଭୋକେଟ୍ ଗୁରୁ ମହାନ୍ତି

ସ୍ୱାଭିମାନୀ ଶିକ୍ଷକ, ଶିକ୍ଷାବିତ୍, ସାମାଜିକ ଚେତନା ବାହକ, ଭାଷା ଏବଂ ସାହିତ୍ୟର ଉନ୍ନତି ସାଧନ ପ୍ରୟାସୀ ଏବଂ ଜଣେ ଉଚ୍ଚ ସୋପାନର ଗଳ୍ପ ଲେଖକ ଆମ ଗହଣରୁ ଗତ ୨୯ ଜୁଲାଇ୨୦୧୭ରେ ଚିର ବିଦାୟ ନେଇଛନ୍ତି । ତାଙ୍କ କ୍ଷୁଦ୍ରଗଳ୍ପ ଦିନେ ଓଡ଼ିଶାର ସାହିତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେ ମୋର ଶିକ୍ଷକ ନ ଥିଲେ, ମୁଁ କିନ୍ତୁ ତାଙ୍କୁ ସାର୍ ସମ୍ବୋଧନ କରୁଥିଲି । ଓଡ଼ିଆ ଗବେଷଣା ପରିଷଦର ପତ୍ରିକା 'ଏଷଣା'ର ସେ ଥିଲେ ପ୍ରାଣ ପ୍ରତିଷ୍ଠାତା ମୁଖ୍ୟ ପରାମର୍ଶ ଦାତା ଓ ମୁଖ୍ୟ ସଂପାଦକ । ତାଙ୍କ ଆତ୍ମ ଜୀବନୀ 'ଆଖିର ଦେଖା ପ୍ରାଣର କଥା' ପାଠ କଲେ ଜଣେ ତାଙ୍କୁ ସ୍ପଷ୍ଟ ଭାବରେ ବୁଝିପାରିବ ସେ କେତେ ସ୍ୱଚ୍ଛ ତଥା ସମ୍ବେଦନଶୀଳ । ତାଙ୍କୁ ମୁଁ ଜାଣିଛି ୧୯୬୬ ମସିହାରୁ ସେ ଯେତେବେଳେ ଥିଲେ ଭଦ୍ରକ କଲେଜର ଅଧ୍ୟାପକ । ଆମେ ତିନିବନ୍ଧୁ, ସ୍ୱର୍ଗତ କୈଳାଶ ଲେଙ୍କା, ସ୍ୱର୍ଗତଃ ସତ୍ୟ ମହାପାତ୍ର ଏବଂ ମୁଁ କଲେଜ ନିକଟ ତାଙ୍କ ବସାରେ ସାହିତ୍ୟ ଆଲୋଚନା ଓ ସେଦିନ ଭିତରେ ଯୁବ ଲେଖକ ସମ୍ମେଳନର ତୃତୀୟ ବାର୍ଷିକ ଅଧିବେଶନ ଭଦ୍ରକଠାରେ କରିବାକୁ ସକ୍ଷମ ହୋଇ ପାରିଥିଲୁ । ସେ ସମସ୍ତ ସହାୟତା ଦେଇ ନ ଥିଲେ ସମ୍ମେଳନର ଅଧିବେଶନ ବାଗୁରାଇ ଉଚ୍ଚବିଦ୍ୟାଳୟ ପ୍ରାଙ୍ଗଣରେ ହେବା ସମ୍ଭବ ହୋଇପାରି ନ ଥାନ୍ତା । ଆମେ ଚାରିଜଣ ବନ୍ଧୁ ଯୁବ ଲେଖକ ସମ୍ମେଳନ ଗଢ଼ି, ୧୯୬୪ରେ ପୁରୀଠାରେ ତା'ର ପ୍ରଥମ ଅଧିବେଶନ କରାଇଥିଲୁ । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ବାର୍ଷିକ ସମ୍ମେଳନ ମାନ ଗଢ଼ିତୋଳି ସାହିତ୍ୟ ଓ ଭାଷା ତଥା ସାହିତ୍ୟିକମାନଙ୍କ ଭିତରେ ଯୋଗସୂତ୍ର ସ୍ଥାପନ କରିବାରେ ସକ୍ଷମ ହୋଇଥିଲୁ । ୧୯୬୪ ମସିହାର ପୁରୀ ବାର୍ଷିକ ସମ୍ମେଳନ, ୧୯୬୫ ମସିହାର ଭୁବନେଶ୍ୱର ବାର୍ଷିକ ଅଧିବେଶନ ପରେ ସମ୍ବଲପୁର, ରାଉରକେଲା, ବାଲେଶ୍ୱର ବୁଲି ସମ୍ମେଳନର ସ୍ଥାନ ଠିକଣା ନ କରିପାରୁଥିବା ବ୍ୟସ୍ତତା ଭିତରେ ସାର୍‌ଙ୍କ ସହ ପ୍ରଥମ ସାକ୍ଷାତରୁ ଆତ୍ମୀୟତା ଗଢ଼ି ଉଠିଥିଲା ଓ ତୃତୀୟ ବାର୍ଷିକ ସମ୍ମେଳନ ତାଙ୍କ ଯୋଗୁଁ ବିଶେଷ କରି ସେଠାରେ କରିବାର ସୁଯୋଗ

ମିଳିଥିଲା । ଅଧିବେଶନ ପୂର୍ବରୁ ଏକାଧିକ ବାର ତାଙ୍କ ବସାରେ ଆଲୋଚନା ଓ ଆଲୋଚନା ପରେ ଭୋଜନରେ ସେ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲେ । ଭଦ୍ରକର ବହୁ ବ୍ୟକ୍ତିଙ୍କ ସହିତ ବିଭିନ୍ନ ସ୍ତରର ଆଲୋଚନା ମାଧ୍ୟମରେ ତୃତୀୟ ବାର୍ଷିକ ଅଧିବେଶନ କରାଇବାରେ ସେ ସକ୍ଷମ ହୋଇ, ଆମ ଯାତ୍ରାକୁ ସୁଗମ କରିପାରିଥିଲେ ।

ସେବେଠାରୁ ସଂପର୍କ ସ୍ଥାପନର କାରଣରୁ ସେ ଯୁବଲେଖକ ସମ୍ମେଳନର ଏକ ଆଜୀବନ ସଭ୍ୟ ହୋଇ ଫୁଲବାଣୀର ୭ମ ଅଧିବେଶନରେ ସଭାପତି ଭାବରେ ନିର୍ବାଚିତ ହୋଇ ବାରିପଦା ଠାରେ ଅଷ୍ଟମ ଅଧିବେଶନ କରିବା ସହିତ ପୂର୍ବାଞ୍ଚଳ ସାହିତ୍ୟ ସମ୍ମେଳନ କଲିକତାଠାରେ କରାଇବାରେ ସଫଳତା ଲାଭ କରିଥିଲେ । ଓଡ଼ିଆ ଯୁବ ଲେଖକ ସମ୍ମେଳନ ଆନୁକୂଲ୍ୟରେ ପୂର୍ବାଞ୍ଚଳ ସାହିତ୍ୟ ସମ୍ମେଳନ କରାଯାଇଥିବାରୁ ଯୁବ ଲେଖକ ସମ୍ମେଳନର ବାର୍ଷିକ ଅଧିବେଶନର ସମୟ ଗଡ଼େଇ ଦିଆଯାଇଥିଲା । ସେଥପାଇଁ ଯୁବ ଲେଖକ ସମ୍ମେଳନର ସଭାପତିଙ୍କ ବ୍ୟକ୍ତିତ୍ୱ ଏତେ ଗୁରୁତ୍ୱପୂର୍ଣ୍ଣ ଥିଲା ଯେ, ତାଙ୍କୁ ସମସ୍ତ କାର୍ଯ୍ୟ ନିଭାଇବାକୁ ପଡୁଥିଲା ଓ ସେ ତାହା ସୂଚାରୁ ରୂପେ ନିଭାଇ ଥିଲେ । ତେଣୁ ସର୍ବସମ୍ମତି କ୍ରମେ ସେ ହିଁ ପୂର୍ବାଞ୍ଚଳ ସାହିତ୍ୟ ସମ୍ମେଳନର ଉଦ୍‌ଘାଟନ ଉତ୍ସବରେ ପ୍ରାରମ୍ଭିକ ଭାଷଣ ପ୍ରଦାନ କରିଥିଲେ । ଭାଷଣଟି ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ଓ ମୁଦ୍ରିତ ହୋଇଥିଲେ ବି ସେ ଓଡ଼ିଆ ଅଂଶତକ ମଞ୍ଚରେ ପାଠ କରିଥିଲେ ସ୍ୱାଭିମାନୀ ଓଡ଼ିଆ ଭାବରେ । ଉଦ୍‌ଯାପନ ଉତ୍ସବରେ ସେହିଁ ସଭାପତିତ୍ୱ ଆସନ ଅଳଙ୍କୃତ କରିଥିଲେ । ସେ ସବୁ ସମୟରେ ଲିଖିତ ଭାଷଣ ପାଠ କରୁଥିଲେ, ଭାଷାପ୍ରତି ଗୁରୁତ୍ୱ ଆରୋପ କରି । ସେ ଥିଲେ ଅଳ୍ପଭାଷି କିନ୍ତୁ ଭାଷଣରେ ତାଙ୍କ ସ୍ପଷ୍ଟତା ସବୁଠାରେ ପ୍ରକାଶ ପାଉଥିଲା । ସେ ସବୁ ସ୍ଥାନରେ ନିର୍ଭୟରେ ତାଙ୍କ ମତବ୍ୟକ୍ତ କରୁଥିଲେ ।

ସେ କେତେ ସ୍ୱାଭିମାନୀ ଥିଲେ ତା'ର ଗୋଟିଏ ଉଦାହରଣ ତାଙ୍କର ଗୋଟିଏ କ୍ଷୁଦ୍ର ଲେଖାରୁ ଉଦ୍ଧାର କରୁଛି । ଗୋଟିଏ ସ୍ୱାଧୀନ ଗଣତାନ୍ତ୍ରିକ ଦେଶରେ ସାଧାରଣ ଜନତା ଆଜି କାହିଁକି ଏପରି ନିଷ୍କ୍ରିୟ, ନିରୁଦ୍ୟମ ଓ ପୁରୁଷକାର ବିହୀନ ? ତାହାର ବିଭିନ୍ନ କାରଣ ମଧ୍ୟରୁ ପ୍ରଧାନ କାରଣଟି ହେଉଛି ରାଷ୍ଟ୍ରଶକ୍ତିର ଏକାଧିପତ୍ୟ, ଜନସାଧାରଣଙ୍କୁ ଶାସକ ଗୋଷ୍ଠୀର ସକଳ ପରିସ୍ଥିତିରେ ଶରଣ ରକ୍ଷଣର ଅଭୟଦାନ ଏବଂ ସବାର୍ଥ ସାଧିକା କାର୍ଯ୍ୟକ୍ରମର ପ୍ରତିଶ୍ରୁତି । ଆମେ ସବୁକାମ କରିଦେବୁ ଦାରିଦ୍ର୍ୟ, ବେକାରି ହଟାଇଦେବୁ- ଦେଶକୁ ଘିଅ ମହୁରେ ଭସାଇଦେବୁଁ- ହେ ଜନତା, ତମେ କେବଳ ଆମକୁ ଭୋଟ୍ ଦେଇ ଶାସକ ପଦରେ ବରଣ କରି ନିଶ୍ଚିନ୍ତରେ ରୁହ ! ଗତ କେଇ ବର୍ଷହେଲା ଶାସନ ବର୍ଗଙ୍କଠାରୁ ଏହିପରି ପ୍ରେୟବାଣୀ, ଆଶ୍ୱାସନା ପାଇ ଆସୁଥିବାବେଳେ ଆମର ଜନସାଧାରଣ 'ଆତ୍ମବାନ' ଉଦ୍ୟମଶୀଳ ହେବେ କିପରି ? ସେମାନେ ନିଜର ସକଳ ପୁରୁଷକାର

ହରାଇ ପର-ନିର୍ଭର ବା ଶାସନାମୁଖାପେକ୍ଷୀ ହୋଇଯାଉଛନ୍ତି । ××× ଯେଉଁ ସରକାର ଜନସାଧାରଣଙ୍କୁ ନିଜ କାନ୍ଧରେ ବସାଇ ଉପରକୁ ଉଠାଇବାକୁ ଉଦ୍ୟମ କରେ, ସେହି ସରକାର ତଥା ଶାସିତଜାତି ଉଭୟେ ନିଜର ଚରମ ବିପର୍ଯ୍ୟୟକୁ ହିଁ ଆହ୍ୱାନ କରି ଆଣନ୍ତି ।"

କୃଷ୍ଣ ସାର୍ ଫୁଲବାଣୀର ସପ୍ତମ ଅଧିବେଶନରେ ନିର୍ବାଚିତ ହୋଇ ୮ମ ଅଧିବେଶନ ବାରିପଦା ଓ ପୂର୍ବାଞ୍ଚଳ ସାହିତ୍ୟ ସମ୍ମେଳନ କଲିକତାଠାରେ ଶେଷ କରି କେବଳ ସୁନାମ ଅର୍ଜନ କରିନଥିଲେ, ସମ୍ମେଳନ ସହିତ ସଂପର୍କ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଅତୁଟ ରଖିଥିଲେ । ୧୯୭୮-୭୯ ବର୍ଷର ସାହିତ୍ୟ ସମାଚାରରେ ପ୍ରକାଶ ପାଇଥିଲା ତାଙ୍କ ଲେଖା ସର୍ଜନା ଓ ସଂଗଠନ ଶିରୋନାମାରେ । "ସଂସାରର ଆଉ ଆଉ ପାଞ୍ଚଟା ବ୍ୟାପାର ଭଳି ସାହିତ୍ୟ ବ୍ୟାପାରରେ ମଧ ଦୁଇଟି ଦିଗ ରହିଛି- ଗୋଟିଏ ସର୍ଜନାର ଏବଂ ଅନ୍ୟଟି ସଂଗଠନର । ସାହିତ୍ୟର ସର୍ଜନା ଦିଗଟିତ ମହତ୍ ଓ ଗୁରୁତ୍ୱପୂର୍ଣ୍ଣ । ସଂଗଠକ ଦିଗଟି ତହିଁରୁ କୌଣସି ମତେ ଊଣାନୁହେଁ ! କିନ୍ତୁ ଅନେକେ ସାହିତ୍ୟର ସଂଗଠନ କର୍ମପ୍ରତି ବିଶେଷ ନିଘା ଦିଅନ୍ତି ନାହିଁ । ସୃଷ୍ଟିକର୍ତ୍ତା ବ୍ରହ୍ମା ଚାରିଟାମୁଣ୍ଡ ଓ ଚାରିଟି ହାତରେ ସର୍ଜନା କ୍ରିୟା କରନ୍ତି; ପାଳନ କର୍ତ୍ତା ବିଷ୍ଣୁ ଗୋଟିଏ ମୁଣ୍ଡ ଏବଂ ଚାରିଟି ହାତ ଘେନି ସେହି ସର୍ଜନାର ସଙ୍ଗଠନ କାର୍ଯ୍ୟ କରିଥାନ୍ତି । ଦୁହିଙ୍କ ମଧ୍ୟରେ କିଏ କାହାକୁ ଊଣା ? ××× ଗତ ଶତାବ୍ଦୀର ଶେଷ ଭାଗରେ ମୟୂରଭଞ୍ଜ, ବାମଣ୍ଡା, ପାରଳାଖେମୁଣ୍ଡି ପ୍ରଭୃତି ସ୍ଥାନର ସଂସ୍କୃତିପ୍ରେମୀ ରାଜା-ମହାରାଜାମାନେ ସାହିତ୍ୟ ସଂଗଠନରେ ବିଶେଷ ଅଂଶ ଗ୍ରହଣ କରି ନ ଥିଲେ ଆଧୁନିକ ସାହିତ୍ୟ ସୃଷ୍ଟିର ଅବସ୍ଥା କ'ଣ ହୋଇ ଥାଆନ୍ତା, ଭାବି ହେଉ ନାହିଁ । ସାଂପ୍ରତିକ କାଳରେ ସାହିତ୍ୟ-ସୃଷ୍ଟି ଯେତେବେଳେ ବ୍ୟାପକ ଓ ବହୁମୁଖୀ ହୋଇପଡ଼ିଛି ସେତେବେଳେ ସାହିତ୍ୟ କ୍ଷେତ୍ରରେ ସଂଗଠନ କାର୍ଯ୍ୟର ଆବଶ୍ୟକତା ଅଧିକ ଅନୁଭୂତ ହେଉଛି ।" ସେହିପରି ୧୯୮୧ ମସିହା ଓଡ଼ିଆ ଯୁବଲେଖକ ସମ୍ମେଳନର ବିଶେଷ ଅଧିବେଶନ ସ୍ମରଣିକାରେ ସେ ସ୍ୱଳ୍ପାଲୋଚିତ ସାହିତ୍ୟିକ ଗୋପାଳବଲ୍ଲଭ ଦାସଙ୍କ ସଂପର୍କରେ ବିସ୍ତୃତ ବର୍ଣ୍ଣନା କରିଥିଲେ । ଗୋପାଳବଲ୍ଲଭ ଥିଲେ ପ୍ରାତଃ ସ୍ମରଣୀୟ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ସାନ ଭାଇ ଓ ମା' ରମାଦେବୀଙ୍କ ପିତା । "୧୮୮୨-୮୩ ମସିହାରେ ରେଭେନ୍ସା କଲେଜରେ ଏମ୍.ଏ. ଶ୍ରେଣୀ ଫିଟିବାରୁ ଗୋପାଳବଲ୍ଲଭ ସେଠାରେ ଶିକ୍ଷାଲାଭ କରି ୧୮୮୪ ମସିହାରେ ପ୍ରଥମ ଛାତ୍ର ଭାବରେ ଏମ.ଏ. ପାଶ୍ କରିଥିଲେ । ଶ୍ରୀମତୀ ରମାଦେବୀଙ୍କ ଠାରୁ ପ୍ରକାଶ ଯେ ସେ ଉଦ୍ଭିଦ ବିଜ୍ଞାନରେ ଏମ୍.ଏ. ପାଶ କରିଥିଲେ । ଶିକ୍ଷାଲାଭ ପରେ ଗୋପାଳବଲ୍ଲଭ ବ୍ରିଟିଶ୍ ସରକାରଙ୍କ ପ୍ରଶାସନିକ ବିଭାଗରେ କର୍ମଜୀବନ ଆରମ୍ଭ କରିଥିଲେ ଏବଂ କଟକ, ବାଲେଶ୍ୱର, ଗୟା,

ମୂଜାଫରପୁର, ପୁରୀ ପ୍ରଭୃତି ସ୍ଥାନମାନଙ୍କରେ ଡେପୁଟି କଲେକ୍ଟର ଭାବରେ ଅବସ୍ଥାପିତ ହୋଇ ଥିଲେ । ××× ସ୍ୱଳ୍ପାୟୁ ଓ କର୍ମଚଂଞ୍ଚଳଗ୍ରସ୍ତ ଜୀବନରେ ସେ ଏଇ କେତେଖଣ୍ଡି ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ୧. ଆତ୍ମବତ୍ ସର୍ବଭୂତେଷୁ-୧୮୮୮ ମସିହାରେ ଦେ'ଙ୍କ ଉତ୍କଳ ପ୍ରେସ୍‌ରୁ ଏହା ମୁଦ୍ରିତ ହୋଇ ପ୍ରକାଶ ପାଇଥିବାର ସନ୍ଧାନ ମିଳେ । କିନ୍ତୁ, ଗ୍ରନ୍ଥଟି ବର୍ତ୍ତମାନ ଦୁଷ୍ପ୍ରାପ୍ୟ । (୨) କବିତା ମଂଜରୀ- ୧୮୯୫-ରେ ଏହା କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ଏହି କାବ୍ୟ ସଞ୍ଚୟନଟି ହେନେରୀ ଜି.କୁକ୍, ଆଇ.ସି.ଏସ୍‌ଙ୍କୁ ଗୋପାଳବଲ୍ଲଭ ଉତ୍ସର୍ଗ କରିଥିଲେ- ଉତ୍କଳୀୟମାନଙ୍କ ପ୍ରତି ତାଙ୍କର ଗଭୀର ଆଗ୍ରହ ଓ ସହାନୁଭୂତି ପାଇଁ, (For his warm sympathy and active interest for the uriyas) ।,(୩) ଭୀମା ଭୂୟାଁ-ଆଦିବାସୀ ଜୀବନ ଓ ସମାଜ ଚିତ୍ର ଘେନି ଏହି ସର୍ବପ୍ରଥମ ଉପନ୍ୟାସଟି ୧୮୯୮ ମସିହାରେ ରଚିତ ହୋଇଥିଲେ ହେଁ ଏହା ପ୍ରାୟ ୧୦ବର୍ଷ ପରେ ୧୯୦୮ରେ କଟକ ଏଡ୍‌ୱାର୍ଡ୍ ପ୍ରେସ୍‌ରୁ ମୁଦ୍ରିତାକାରରେ ସେ ପ୍ରକାଶ ପାଇଥିଲା । ଆଧୁନିକ କଥା ସାହିତ୍ୟର ବିଷୟବସ୍ତୁ ଆହରଣ ବା ନିର୍ବାଚନରେ ଗୋପାଳବଲ୍ଲଭ ଏଥିରେ ଏକ ସଂପୂର୍ଣ୍ଣ ନୂତନ ଦିଗନ୍ତ ଉନ୍ମୋଚନ କରିଛନ୍ତି । ଏହା ବ୍ୟତୀତ (୪) ତାରକ ସଂହାର, (୫) ରାୟବାହାଦୂର ନନ୍ଦକିଶୋର ଦାସଙ୍କ ଜୀବନୀ, (୬) ଆଶୁତୋଷ ଘୋଷଙ୍କ ଦ୍ୱାରା ରଚିତ ରମେଶ ଚନ୍ଦ୍ର ଦତ୍ତଙ୍କ ଜୀବନୀର ଅନୁବାଦ,(୭) ଭକ୍ତି ରତ୍ନାବଳୀ ପ୍ରଭୃତି ଗୋପାଳବଲ୍ଲଭଙ୍କ ରଚନାବଳୀର ଅନ୍ତର୍ଭୁକ୍ତ ବୋଲି ଜଣାପଡ଼ିଛି । ମାତ୍ର ବର୍ତ୍ତମାନ ଦୁଷ୍ପ୍ରାପ୍ୟ ଥିବାରୁ ଏଠାରେ ଏଗୁଡ଼ିକ ସଂପର୍କରେ ସୂଚନାତ୍ମକ ଆଲୋଚନା ସମ୍ଭବ ହେଉନାହିଁ । ପ୍ରୀତି ସୁଧାକର (୧୯୦୬) ଶେଷୋକ୍ତ 'ଭକ୍ତି ରତ୍ନାବଳୀ' ଗୋପାଳ ବଲ୍ଲଭଙ୍କର ଏକ ସଂକଳିତ ଓ ସଂପାଦିତ ଗ୍ରନ୍ଥ ଥିବାର ଜଣାଯାଏ । ଗ୍ରନ୍ଥର ନାମଟିରୁ ମନେହୁଏ- ଏହା ହୁଏତ ଆମ ପ୍ରାଚୀନ କବିମାନଙ୍କ ଦ୍ୱାରା ରଚିତ ଭକ୍ତି-ଗୀତିକା ସମୂହର ଏକ ସଂକଳନ । ସେହି ଧାରାରେ ପ୍ରୀତି-ସୁଧାକର ଆମର ବୈଷ୍ଣବ ପ୍ରେମ-ପଦାବଳୀର ଏକ ପ୍ରାଥମିକ ପରିଚୟ ।

ସମାଜ, ଭାଷା ଏବଂ ଓଡ଼ିଆ ସାହିତ୍ୟର ଉତ୍ତରଣ ଥିଲା ସାରଙ୍କ ଜୀବନର ଉତ୍ସ । ଶ୍ୱାସ ରୋଗରେ ସଦା ପୀଡ଼ିତ, ବହୁ ମାନସିକ ଯନ୍ତ୍ରଣା ଭିତରେ ବି ଭାଷାର ଉନ୍ନତି ଥିଲା ତାଙ୍କ ଜୀବନର ବ୍ରତ । ତାଙ୍କ ସଂପର୍କରେ ଲେଖିଲେ ଗ୍ରନ୍ଥଟାଏ ହେବ । ତାଙ୍କ ପରି ଜଣେ ଭାଷା ଓ ସାହିତ୍ୟ ଅନୁରାଗୀଙ୍କୁ ଆମେ ଓଡ଼ିଶାବାସୀ ହରାଇଛେ । ତାଙ୍କ ଅବର୍ତ୍ତମାନରେ ତାଙ୍କ ପ୍ରତି ମୋର ଏଇ ସାମାନ୍ୟ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି କେବଳ । ❖

ସନ୍ଧ୍ୟାରାଗ, ହରିପୁରରୋଡ଼

କଟକ-୭୫୩୦୦୧

# ମୋ ସାର୍

ସୁସ୍ମିତା ରଥ

ଡକ୍ଟର କୃଷ୍ଣଚରଣ ବେହେରା, ଆମ ସାର୍ ଯେ ଆଉ ଆମ ପାଖରେ ନାହାନ୍ତି ଏକଥା ଏବେ ମଧ୍ୟ ମୁଁ ବିଶ୍ୱାସ କରିପାରୁନି । ସାର୍‌ଙ୍କ ସହିତ ମୋର ସଂପର୍କ ପାଖାପାଖି ଚାଳିଶ୍ ବର୍ଷର । ମୁଁ ରେଭେନ୍ସା କଲେଜରେ ପ୍ରଥମେ ଓଡ଼ିଆ ଅନର୍ସ ନେଇ ପଢ଼ିବାକୁ ଆସିଲି । ସେତେବେଳେ ହୁଏତ ସାର୍ କେବଳ ଏମ୍.ଏ. କ୍ଲାସ୍ ନେଉଥିଲେ ତେଣୁ ତାଙ୍କ ସହିତ ମୋର ପ୍ରତ୍ୟକ୍ଷ ସଂପର୍କ ଗଢ଼ିଉଠିଲା ୧୯୭୮ରୁ । ମୋର ମନେଅଛି ଆମେ ସବୁ ନୂଆପିଲାମାନେ ଅଧ୍ୟାପକ ଅଧ୍ୟାପିକାମାନଙ୍କ ସହିତ ଧବଳେଶ୍ୱର ଯାଇଥିଲୁ । ଖୁସି ଆନନ୍ଦରେ ଗୋଟିଏ ଦିନ କଟାଇବା ସହିତ ପରସ୍ପର ସହିତ ପରିଚିତ ହେବା ପାଇଁ । ମୁଁ ସେତେବେଳେ ଖୁବ୍ ଚୁପ୍‌ଚାପ୍ ରହୁଥିଲି । ବିଶେଷ କାହାସହିତ ମିଶିପାରୁ ନଥିଲି । ଯେତେବେଳେ ସାର୍ ଆମକୁ ନିଜନିଜ ପରିଚୟ ଦବାକୁ କହିଲେ ମୁଁ କେବଳ ମୋ ନିଜର ନାଁଟି କହି ବସିପଡ଼ିଥିଲି । ସାର୍ ଗୁରେଇ ତୁରେଇ ପ୍ରଶ୍ନ ପଚାରି ମୋ ସାଙ୍ଗିଆ କାହିଁକି ରାଓ, ମୁଁ କାହାର ଝିଅ ଇତ୍ୟାଦି ପଚାରି ମୋଠାରୁ ସଂପୂର୍ଣ୍ଣ ପରିଚୟ ବାହାର କରିଥିଲେ । ପରେ ମୁଁ ଯେବେ 'ସ୍ପେଶାଲ ପେପର'ରେ ଅନୁବାଦ ରଖିଲି ସାର୍ ମୋର ଗାଇଡ୍ ଅର୍ଥାତ୍ ମାର୍ଗଦର୍ଶକ ଭାବେ ମୋ ଅନୁବାଦଟିକୁ ସୁନ୍ଦର ଭାବରେ ସଂପୂର୍ଣ୍ଣ କରିବାକୁ ବହୁତ ସାହାଯ୍ୟ କରିଥିଲେ । ମୁଁ ରବୀନ୍ଦ୍ରନାଥଙ୍କର ୧୦୦ଟି ଗୀତ ଅନୁବାଦ କରିଥିଲି ସାର୍ ଶାନ୍ତି ନିକେତନରୁ ଅନୁବାଦ ପାଇଁ ମତେ ଅନୁମତି ଆଣିବାରେ ସାହାଯ୍ୟ କରିଥିଲେ ଓ ପରେ ସେଇଟିକୁ ପ୍ରକାଶ କରିବା ପାଇଁ ବାରମ୍ବାର ଅନୁରୋଧ କରିଥିଲେ । ସେତିକିବେଳେ ନାନା ପରାମର୍ଶ ନେବା ପାଇଁ ମୁଁ ବାରମ୍ବାର ତାଙ୍କ ଘରକୁ ଯାଉଥିଲି । ସାର୍ ଓ ମାଉସୀ ମୋର ଅତି ଘନିଷ୍ଠ ହେଇ ପଡ଼ିଥିଲେ । ପାଠ ସରିଲାପରେ ଏବେ ମଧ୍ୟ ସେ ସଂପର୍କ ସେମିତି ଥିଲା, ଯଦିଓ ମାଉସୀ ଆମକୁ ଓ ସାର୍‌ଙ୍କୁ ଏକୁଟିଆ କରି ଚାଲିଯାଇଥିଲେ ।

ମନେଅଛି ମୋ କାକା କବି ଭାନୁଜୀ ରାଓଙ୍କୁ ନେଇ କେତେଥର ମୁଁ ତାଙ୍କ ଘରକୁ ଯାଇଛି । କାରଣ କାକା ମସୌରୀରୁ ଆସିଲେ  ମୁଁ ତାଙ୍କୁ ଘଡ଼ିଏବି ପାଖଛଡ଼ା କରିବାକୁ ଚାହୁଁନଥିଲି । ଯଦିଓ 'ମୋ କାକା' ବୋଲି ସାର୍‌ଙ୍କ ସହିତ ପରିଚୟ କରାଇଥିଲି

କିନ୍ତୁ କାକାଙ୍କ ନାଁ ମୁଁ କହିନଥିଲି । ଯେବେ ସାର କାକାଙ୍କ ନାଁ ଶୁଣିଲେ ମତେ ତିରସ୍କାର କରିବା ସହିତ ଜଣେ କବିଙ୍କୁ ଧରି ବୁଲୁଛ ଅଥଚ ତାଙ୍କ ସହିତ ପରିଚୟ ମଧ କରାଉନ ବୋଲି କହିଥିଲେ । ସେଦିନ ବୋଧେ ପ୍ରଥମ କରି ମୁଁ ଅନୁଭବ କରିଥିଲି ଭାନୁଜୀ ରାଓ କେବଳ ମୋ କାକା ନୁହନ୍ତି, କବି ଭାବରେ ତାଙ୍କର ଅନ୍ୟ ଏକ ପରିଚୟ ମଧ ଅଛି । ମୋ ବାହାଘର କାର୍ଡ଼ ନେଇ ମୁଁ ତାଙ୍କ ଘରକୁ ସେଇ କାକାଙ୍କ ସହିତ ହିଁ ଯାଇଥିଲି । ସେତେବେଳେ ସାର୍ ଫୁଲ୍‌ବାଣୀ ଗଭର୍ଣ୍ଣମେଣ୍ଟ କଲେଜରେ ଅବସ୍ଥାପିତ ଥିଲେ । ଅସୁବିଧା ପାଇଁ ବିବାହ ଉତ୍ସବରେ ଯୋଗଦେଇ ପାରି ନଥିଲେ କିନ୍ତୁ ତାଙ୍କର ଆଶୀର୍ବାଦ ଭରା ଚିଠିଟି ଏବେ ମଧ ମୋ ପାଖରେ ସେମିତି ଅଛି । ସାର୍‌ଙ୍କର ସୁନ୍ଦର ଅକ୍ଷର ଓ ଆନ୍ତରିକ ଭାବ ପୂର୍ଣ୍ଣ ଚିଠିଟିକୁ ଏବେ ମଧ ମୋ ପାଖରେ ସାଇତି ରଖିଛି ।

ସାର୍‌ଙ୍କ କଥା କହିବାକୁ ଗଲେ ବହୁ କଥା ବହୁ ଛବି ମନକୁ ଆସିଯାଉଛି କିନ୍ତୁ ଏତେ କଥା କ'ଣ ଲେଖାଯାଇପାରେ ଏଇ ସଂକ୍ଷିପ୍ତ ସ୍ମୃତିକଥା ଭିତରେ ? କେବଳ କହିବି ଏମିତି ଥରେ ହଠାତ୍ ସାର୍‌ଙ୍କ ଘରେ ପହଞ୍ଚି ଦେଖିଥିଲି ମାଉସୀଙ୍କର ଗୋଟିଏ ଗୋଡ଼ ଡାଇବେଟିସ୍ ଯୋଗୁ ଅସ୍ତ୍ରୋପଚାର କରି ବାଦ ଦିଆଯାଇଛି । ସେଠାରେ ଏକ କୃତ୍ରିମ ଗୋଡ଼ ! ମୁଁ ସ୍ତମ୍ଭିତ ହୋଇ ଚାହିଁରହିଲି କେବଳ । କ'ଣ ବା ପଚାରିବି ଆଉ କେମିତି ? ସାର୍ ଓ ମାଉସୀ କିନ୍ତୁ ପୂର୍ବପରି ହସିହସି ମତେ ସ୍ୱାଗତ କରିଥିଲେ । ତାଙ୍କର ସଂପୂର୍ଣ୍ଣ ପରିବାର, ପୁଅ, ବୋହୂ, ନାତୁଣୀ, ସମସ୍ତଙ୍କ ନିକଟରୁ ବହୁତ ଆଦର ପାଇଛି । ସେ ସବୁ ଭୁଲିବାର ନୁହେଁ । ପରେ ଯେତେଥର ଯାଇଛି ଦେଖିଛି କ୍ରମଶଃ ସାର୍‌ଙ୍କର ଆଗ୍ରହ, ଉଚ୍ଛ୍ୱାସ ଓ ଶକ୍ତି କମି କମି ଆସୁଛି । ପଢ଼ାପଢ଼ି ଛଡ଼ା ସେ ବଙ୍ଗଳା ସିନେମା ଦେଖିବାକୁ ଭଲପାଉଥିଲେ । ପ୍ରାୟ ଚୁପ୍‌ଚାପ୍ ସେ ଟିଭି ପାଖରେ ବସି ସିନେମା ଦେଖୁଥିଲେ ।

୧୯୩୨ ମସିହା ଜୁନ୍ ୨ ତାରିଖରେ ଭଦ୍ରକରେ ସାର୍‌ଙ୍କ ଜନ୍ମ । ଦୁଃଖ, ସୁଖ, ସଂଘର୍ଷ ଓ ପ୍ରତିବନ୍ଧକକୁ ଅତିକ୍ରମ କରି ସେ ନିରବଚ୍ଛିନ୍ନ ଭାବରେ ନିଷ୍ଠାର ସହିତ ସାରସ୍ୱତ ସାଧନା ଅବ୍ୟାହତ ରଖିଥିଲେ । ତାଙ୍କ ଜୀବନର ପ୍ରତିଟି ମୁହୂର୍ତ୍ତ ସାହିତ୍ୟ କର୍ମ ପାଇଁ ନିୟୋଜିତ ଥିଲା । ଗୁରୁଗମ୍ଭୀର ପ୍ରବନ୍ଧରୁ ଆରମ୍ଭ କରି ଲଘୁପଞ୍ଚକ, ଗଳ୍ପଠାରୁ ଆରମ୍ଭ କରି ରମ୍ୟରଚନା, କବିତାଠାରୁ ଆରମ୍ଭ କରି ସମାଲୋଚନା ଯାଏଁ ପ୍ରତ୍ୟେକ କ୍ଷେତ୍ରରେ ସେ ବେଶ୍ ସାବଲୀଳ ଭାବରେ ନିଜର ଲେଖନୀଚାଳନା କରିପାରୁଥିଲେ । ବିଶେଷ କରି ଗବେଷଣା କ୍ଷେତ୍ରରେ ତାଙ୍କର ସ୍ୱାତନ୍ତ୍ର୍ୟ ବାରିହୋଇ ପଡୁଥିଲା । ଏହାର ନିଛକ ଉଦାହରଣ 'ଓଡ଼ିଆ ଗବେଷଣା ପରିଷଦ' ପ୍ରତି ତାଙ୍କର ନିଷ୍ଠାପର ଅବଦାନ । ଏହି ପ୍ରତିଷ୍ଠାନର ପ୍ରତିଷ୍ଠାତା ସଭାପତି ଭାବରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅନବଦ୍ୟ ଭୂମିକା ରହିଛି । ଦୀର୍ଘ ତିରିଶ ବର୍ଷଧରି ଗବେଷଣା ପରିଷଦର ମୁଖପତ୍ର 'ଏଷଣା'ର ସେ ସଂପାଦନା

କରିଆସିଛନ୍ତି ଓ ଏହି ପରିଷଦ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବହୁ ଗବେଷଣାକୁ ପ୍ରୋତ୍ସାହନ ଦେଇ ଆସିଛି ।

ଓଡ଼ିଆ ଭାଷା ସାହିତ୍ୟର ଜଣେ ସ୍ନେହମୟ ଅଧ୍ୟାପକ, ଗବେଷଣାର ମାର୍ଗଦର୍ଶକ ଭାବେ ସେ ବହୁ ଖ୍ୟାତି ଅର୍ଜନ କରିଛନ୍ତି । ବୟସ୍କମାନଙ୍କ କ୍ଷେତ୍ରରେ ସେ ଯେପରି ନମ୍ର ସାନମାନଙ୍କ ପ୍ରତି ସେହିପରି ସ୍ନେହବତ୍ସଳ । ବୟସକୁ ଆଦୌ ସ୍ୱୀକାର ନ କରି ସେ ସାହିତ୍ୟର ବିକାଶ ପାଇଁ କିପରି ଉଦ୍ୟମ କରି ଚାଲୁଥିଲେ ଏହା ମୁଁ ନିଜେ ଦେଖିଛି ଓ ଅନୁଭବ କରିଛି । ଯେଉଁଦିନ ଆମେ ତାଙ୍କୁ 'ସାହିତ୍ୟ ଭାରତୀ ସମ୍ମାନ' ଗ୍ରହଣ କରିବାକୁ ଅନୁରୋଧ କରିବାକୁ ଯାଇଥିଲୁ ସେଦିନ ମଧ୍ୟ ସେ ନିଜର ଚିରାଚରିତ ଭଙ୍ଗୀରେ ହସି ହସି କହିଥିଲେ, 'ମୁଁ ତ ଏମିତି କିଛି କରିନି ଯେଉଁଥିପାଇଁ ତମେମାନେ ମତେ ସମ୍ମାନିତ କରିବ ? ଏହା ବୋଧହୁଏ ତମେ କେବଳ ଗୁରୁଦକ୍ଷିଣା ସ୍ୱରୂପ ଦେବାକୁ ଚାହୁଁଛ ।' ବହୁ କଷ୍ଟରେ ଆମେ ତାଙ୍କ ପାଖରୁ ସ୍ୱୀକୃତି ପାଇ ପାରିଥିଲୁ ।

ଜନ୍ମଦିନ ଯାଉ ନ ଯାଉଣୁ ୨୯ ଜୁଲାଇ ୨୦୧୭ରେ ସେ ଆମ ସମସ୍ତଙ୍କ ନିକଟରୁ ଚିରବିଦାୟ ନେଲେ । ସାର୍ ନାହାନ୍ତି ଏକଥା ବିଶ୍ୱାସ ହେଉନି ସତ କିନ୍ତୁ ସାର କ'ଣ ସତରେ ଆମ ପାଖରେ ନାହାନ୍ତି ? ତାଙ୍କ ଗଳ୍ପ, କବିତା, ପ୍ରବନ୍ଧ ପଢୁ ପଢୁ ଏବେ ମଧ୍ୟ ଶୁଣାଯାଏ । ଆରେ ସୁସ୍ମିତା, ତମର ଯୋଉ ଗପ 'ତା' ପ୍ରତୀକ୍ଷାରେ' ଏବେ ପଢ଼ିଲି । ମୋର ମଧ୍ୟ ଠିକ୍ ଏମିତି ଗୋଟିଏ କବିତା ଅଛି । ତମେ ପଢ଼ିଛ କି ?

ସାର୍ ଅଛନ୍ତି ଆମ ସ୍ୱପ୍ନରେ । ଆମ କଳ୍ପନାରେ, ଆମ ଲେଖାରେ, ଆମ ଅନ୍ତର ମଧ୍ୟରେ ରହିଥିବେ ସବୁଦିନ । ❖

ଦରଘାବଜାର, କଟକ-୧

Dr. Krushna Charan Behera

# ମୋ ଗୁରୁ, ମୋ ଗାର୍ଡ଼ିଆନ୍

ଡ. ଲତା ଭୋଳ

ପାଠପଢ଼ା ଉପରେ ଗୁରୁତ୍ୱ ଦେଉନଥିବା ଛାତ୍ରୀଟିଏ ସ୍ନାତକୋତ୍ତର ପରୀକ୍ଷାର ଫର୍ମ ଫିଲପ୍ ପରେ ପରୀକ୍ଷାର ଭୟ ଯୋଗୁଁ ପଢ଼ାରେ ମନ ଦେବା ଆରମ୍ଭକଲା । କିନ୍ତୁ ଦୁଇବର୍ଷର ପାଠକୁ ଦୁଇଦିନରେ ଆୟତ୍ତ କରିବା କ'ଣ ସମ୍ଭବ ! ସେଥିରେ ପୁଣି ଓଡ଼ିଆ ସାହିତ୍ୟର ପାଠ୍ୟ ଖସଡ଼ା ଓ ଶେଷ ମୁହୂର୍ତ୍ତରେ ସ୍ୱତନ୍ତ୍ର ପତ୍ର ବଦଳାଇବା ନିଷ୍ପତ୍ତି ତା'ର ମାନସିକ ଦୁଃସ୍ଥିତିର କାରଣ ହୋଇଗଲା । ଏହିପରି ଅବସ୍ଥାରେ ପରୀକ୍ଷା ପହଞ୍ଚିଲା । ପ୍ରଥମ ପତ୍ରର ପୂର୍ବଦିନ ରାତିରେ ଅନିଦ୍ରା ରହି ପଢ଼ା ଓ ପରୀକ୍ଷା ଦିନ ଉପବାସ ରହି ସେ ପରୀକ୍ଷା ପ୍ରକୋଷ୍ଠରେ ବସିଲା । ପ୍ରଶ୍ନପତ୍ର ପାଇଲାକ୍ଷଣି ତାକୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । ଦେହ ଶୂନ୍ୟ, ମସ୍ତିଷ୍କ ମଧ୍ୟ ଶୂନ୍ୟ । ଗୋଟିଏ ବି ପ୍ରଶ୍ନର ଉତ୍ତର ସେ ଲେଖିପାରିବ ବୋଲି ହୃଦ୍‌ବୋଧ କଲା ନାହିଁ । ସମସ୍ତେ ଲେଖୁଛନ୍ତି, ସେ ବସିଛି । ଅନନ୍ୟୋପାୟ ହୋଇ ଅଧଘଣ୍ଟା ବସିବା ପରେ ଅସ୍ଥିର ହୋଇ ଛିଡ଼ା ହେଲା ଓ ପରୀକ୍ଷା ନିରୀକ୍ଷକଙ୍କୁ କହିଲା- ସାର୍ ମୁଁ ପରୀକ୍ଷା ଦେବିନି, ମୋର କିଛି ମନେ ପଡୁନି । ସାର୍ ପାଖକୁ ଆସିଲେ, ପ୍ରବୋଧନା ଦେଇ କହିଲେ- 'ଲେଖରେ ଲେଖ, ଯାହା ଆସୁଛି ଲେଖ, ଲେଖିବାକୁ ଚେଷ୍ଟା କର, ଥରେ ଲେଖିବା ଆରମ୍ଭ କଲେ ଆପେ ଆପେ ଲେଖି ହୋଇଯିବ, ଛାଏଁ ଛାଏଁ ମନେ ପଡ଼ିଯିବ ।' ସାରଙ୍କର ଶାନ୍ତ କୋମଳ କଥାରେ ଛାତ୍ରୀଟି ବୋଧହୁଏ ଶକ୍ତି ପାଇଲା । ତା'ପରେ ଲେଖିବା ଆରମ୍ଭ କଲା ଓ ପରୀକ୍ଷାର ସମୟ ଅବଧି ଶେଷଯାଏଁ ଲେଖି ପାରିଲା ।

ସେଇ ଦେବଦୂତସମ ପରୀକ୍ଷା ନିରୀକ୍ଷକ ଥିଲେ ମୋର ଚିର ନମସ୍ୟ କୃଷ୍ଣସାର୍ (ଡ. କୃଷ୍ଣଚରଣ ବେହେରା) ଓ ଛାତ୍ରୀଟି ମୁଁ ନିଜେ । ସେହିଦିନଠାରୁ ସାରଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ବ୍ୟକ୍ତିଗତ ଓ ପାରିବାରିକ ସଂପର୍କର ସୂତ୍ରପାତ ହେଲା ।

ଘର ନିକଟରୁ ଦୂର ଏକ ଘରୋଇ ମହାବିଦ୍ୟାଳୟରେ ମୁଁ ଚାକିରିଟିଏ କଲି । ପରେ ପରେ ସାରଙ୍କ ପ୍ରେରଣା ପାଇ ସାରଙ୍କ ଅଧୀନରେ ମୁଁ ପିଏଚ୍.ଡ଼ି ପାଇଁ ପ୍ରସ୍ତୁତ

ହେଉଥିବାବେଳେ ସାର୍ କ୍ଷେତ୍ରବାସୀ ସାର୍‌ଙ୍କ ସହଯୋଗରେ ମୁଁ ତତ୍‌କାଳୀନ ରେଭେନ୍‌ସା ମହାବିଦ୍ୟାଳୟରେ ଏମ୍.ଫିଲ୍. କୋର୍ସ ସମାପ୍ତ କଲି । ମୋର ଗବେଷଣାର ବିଷୟ ଥିଲା 'ଓଡ଼ିଆ ସାହିତ୍ୟରେ ଚମ୍ପୂ' । ଚମ୍ପୂ ଉପରେ ବିଶେଷ କାମ ହୋଇ ନ ଥିବାରୁ ଉପାଦାନ ସଂଗ୍ରହରେ ଭାରି ସଂକଟ ଦେଖାଦେଲା । ତେଣୁ ମୁଁ ସାର୍‌ଙ୍କ ସହାୟତା ଲୋଡ଼ିଲି । ସାର୍ କିନ୍ତୁ ରୋକ୍‌ଠୋକ୍ କହିଲେ- "ପାହାଡ଼ ଶିଖରରେ ପହଞ୍ଚିବାକୁ ହେଲେ ତୁମ ପାଖରେ ଦୁଇଟି ରାସ୍ତା । ଗୋଟିଏ ହେଲା ମୁଁ ତମକୁ କାନ୍ଧରେ ବୋହିନେବି ଓ ଅନ୍ୟଟି ହେଲା ନିଜ ଶିଙ୍ଗରେ ମାଟି ତାଡ଼ି ତମକୁ ରାସ୍ତା ତିଆରି କରିବାକୁ ହବ ଓ ନିଜ ପ୍ରଚେଷ୍ଟାରେ ନିଜର ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ହବ । ତମର କେଉଁଟା ଦରକାର ? ତମେ ଅନ୍ୟ କାହା ପାଖକୁ ଯାଇପାର ।

ଏ ହେଉଛନ୍ତି ମୋର ଗବେଷଣା ସନ୍ଦର୍ଭର ମାର୍ଗ ନିର୍ଦ୍ଦେଶକ ଡ. କୃଷ୍ଣଚରଣ ବେହେରା । ଯେମିତି ସଚ୍ଚୋଟ, ସେପରି ନୀତିନିଷ୍ଠ ଓ ସ୍ପଷ୍ଟବାଦୀ । ଅନାବିଳ ଭାବେ ନିଛକ ସତ୍ୟକୁ ପ୍ରକାଶ କରିବାରେ ସେ ତିଳେ ହେଲେ ଦ୍ୱିଧା କରୁ ନ ଥିଲେ । ଯା'ହେଉ ଯଥେଷ୍ଟ କଷ୍ଟ ସ୍ୱୀକାର ପୂର୍ବକ ସାର୍‌ଙ୍କ ଆଜ୍ଞା ଓ ଆଦର୍ଶ ଅନୁଯାୟୀ ନିଜ ଶିଙ୍ଗରେ ମାଟି ତାଡ଼ି ୧୯୯୦ ମସିହାରେ ମୁଁ ଯେଉଁ ସଫଳତା ପାଇଲି ତାହା ମୋତେ ଆତ୍ମତୃପ୍ତି ଦେଲା । ବିଶେଷ ଖୁସି ଲାଗିଥିଲା ଯେତେବେଳେ ସନ୍ଦର୍ଭର ବହିଃପରୀକ୍ଷକ ଡ. ନଟବର ସାମନ୍ତରାୟ ଓ ଡ. ନୀଳାଦ୍ରିଭୂଷଣ ହରିଚନ୍ଦନ ସାର୍‌ଙ୍କର ଓ ମୋ ସନ୍ଦର୍ଭର ଉଚ୍ଚପ୍ରଶଂସା କରିଥିଲେ ।

ତା'ପରେ ସାର୍ ବାପାଙ୍କ ପାଖକୁ ବାରମ୍ବାର ଚିଠି ଲେଖିଲେ ମୋ ଗବେଷଣା ସନ୍ଦର୍ଭଟିକୁ ବହି ଆକାରରେ ଛାପିବାକୁ ଏବଂ ତାହାହିଁ ହେଲା ଓ ସାର୍ ଖୁସି ହେଲେ ।

ବୟସରେ ଢେର୍ ବଡ଼ ହେଲେ ବି ମୋର ବାପା ସାର୍‌ଙ୍କୁ ଖୁବ୍ ସମ୍ମାନ କରୁଥିଲେ । ଘରୋଇ କଥା ଠାରୁ ଆରମ୍ଭ କରି ମୋର ଲେଖାପଢ଼ା, ଗବେଷଣା ଓ ଚାକିରି ଆଦି ବିଷୟରେ ସେ ସାର୍‌ଙ୍କ ପରାମର୍ଶ ଲୋଡୁଥିଲେ । ମୋର ମୂଳ ଚାକିରି କ୍ଷେତ୍ରରୁ ଯେବେ ବାପା ମୋତେ ଘରପାଖ ନୂଆ କରି ଖୋଲିଥିବା କଲେଜକୁ ନେଇ ଆଣିବାକୁ ଚାହିଁଲେ ସେତେବେଳେ ସାର୍ ସହମତି ପ୍ରଦାନ କରିଥିଲେ । କିନ୍ତୁ ପରବର୍ତ୍ତୀ ଚାକିରି ଜୀବନ ମୋର ଯେତେବେଳେ ଜଟିଳ ହୋଇ ପଡ଼ିଲା, ବାପା ତ ଚାଲିଗଲେ, ସାର୍ ନିଜକୁ ଦୋଷୀ ଭାବୁଥିବାର ମୁଁ ହୃଦ୍‌ବୋଧ କଲି । ପ୍ରାୟ ଫୋନ୍ କରି ଭଲମନ୍ଦ କଥା ବୁଝୁଥିଲେ, ଲେଖାପଢ଼ାରେ ସମୟ ବିତାଇବାକୁ ପରାମର୍ଶ ଦେଉଥିଲେ, ମା'ର ଯତ୍ନ ନେବାକୁ କହୁଥିଲେ । ଏମିତିକି ଅର୍ଥର ଆବଶ୍ୟକତା ପଡ଼ିଲେ ନିଃସଙ୍କୋଚରେ ତାଙ୍କୁ ଜଣାଇବାକୁ ବାରମ୍ବାର କହୁଥିଲେ ।

ସବୁଦିନେ ଧୀରେ ଓ କମ୍ କଥା । ଅନୁଭବ କରି ହେଉଥିଲା ସାର୍‌ଙ୍କର ଶ୍ରଦ୍ଧାକୁ । ମୋ ଜାଣିବାରେ ମନ୍ଦାକିନୀ ଓ ମୁଁ ସାର୍‌ଙ୍କ ପରିବାରର ମଣିଷ ଥିଲୁଁ । ଆମର ଭବିଷ୍ୟତ ଜୀବନ ପାଇଁ ମନ୍ଦାକିନୀ ଉପରେ ସାର୍‌ଙ୍କର ଭରସା ଥିଲା କିନ୍ତୁ ମୋ ଉପରେ ନୁହେଁ । ଏମିତି ସାର୍ ଥରେ କହୁଥିଲେ- 'ମନ୍ଦାକିନୀ ଚଳିଯିବ, କିନ୍ତୁ ଲତା ପାଇଁ ମୋର ଚିନ୍ତା ।' ଏ ହେଉଛନ୍ତି ଆମର ଅତି ଆପଣାର ସାର୍, ଯେ କେବଳ ସଦ୍‌ଗୁରୁ ନୁହନ୍ତି, ଅଭିଭାବକ ମଧ୍ୟ ।

ସାର୍ ଚାହୁଁଥିଲେ ମୁଁ ସବୁବେଳେ ଲେଖେଁ, ମୋ ଲେଖା ପ୍ରକାଶିତ ହେଉ, ମୋ ଲେଖା ପୁସ୍ତକାରରେ ମୁଦ୍ରିତ ହେଉ । ସେଥିରେ ତାଙ୍କର ଆନନ୍ଦ । ମୁଁ କିନ୍ତୁ ସାର୍‌ଙ୍କ ମନ ମୁତାବକ ହୋଇପାରିଲିନି । ମୋର ବ୍ୟକ୍ତିଗତ ଜୀବନର ଦୁଃଖ ଏତେ ବଳିଗଲା ଯେ ଲେଖାପଢ଼ାରେ ମନୋନିବେଶ କରିବା ମୋ ପାଇଁ ମୁସ୍କିଲ ହୋଇପଡ଼ିଲା । ତଥାପି ସାର୍‌ଙ୍କ ଖୁସି ପାଇଁ ବର୍ଷେ ପୂର୍ବରୁ ଉତ୍ତର ଓଡ଼ିଶାର କଥିତ ଭାଷା ଉପରେ ଗୋଟିଏ ଅଭିଧାନର ପାଣ୍ଡୁଲିପି ପ୍ରସ୍ତୁତ କରି ସାର୍‌ଙ୍କୁ ଦେଖାଇଲି । ସାର୍ ଅତି ଖୁସି ହୋଇ ତୁରନ୍ତ ଫ୍ରେଣ୍ଡସ୍ ପବ୍ଲିଶର୍ସର ସୁଧାଂଶୁ ବାବୁଙ୍କୁ ଡକାଇ ଛାପିବାର ଦାୟିତ୍ୱ ଦେଲେ । ପରେ ପରେ ସାର୍ କ୍ରମାଗତ ଭାବେ ଅସୁସ୍ଥ ହୋଇ ପଡ଼ିଲେ । ଆପୋଲୋ ହସ୍ପିଟାଲ ନେବା ଭଳି ପରିସ୍ଥିତି ଆସିଲା । ମୁଁ ଗଲି, ସାର୍ ମୋତେ ଦେଖି କହିଲେ- 'ଭଲ ହେଲା ଆସିଲ, ଘରକୁ ଯା' । ମୁଁ କହିଲି, 'ସାର୍ ଘରେ କେହି ନାହାଁନ୍ତି, ସମସ୍ତେ ତ ଆପଣଙ୍କ ପାଖରେ ।' ସାର୍ ସ୍ମିତ ହସିଲେ । ପୁଣି ଗୋଟିଏ ଦିନ ପରେ ହସ୍ପିଟାଲ ଗଲି । ସାର୍‌ଙ୍କୁ ପଚାରିଲି- 'ସାର୍ କେମିତି ଲାଗୁଛି ?' ସାର୍ କହିଲେ- 'ମଚ୍ ବେଟର୍' । ମୋର ଯେଉଁ ଅଭିଧାନ ପୁସ୍ତକଟି ଫ୍ରେଣ୍ଡସ୍ ପବ୍ଲିଶର୍ସକୁ ଛାପିବାକୁ କହିଥିଲେ । ସେ ବିଷୟରେ ପଚାରିଲେ- 'ବହିଟା ଛାପା ହେଲାଣି ? ମୋତେ ଗୋଟିଏ ଆଣିଦବ ।' କଥା ଟିକିଏ ଅସ୍ପଷ୍ଟ ହେଲେ ବି ସାର୍ ସୁସ୍ଥ ହେଉଥିବାର ଭାବି ନେଇ ମୁଁ ଆଶ୍ୱସ୍ତ ହେଲି ଓ ଭଗବାନଙ୍କୁ ଧନ୍ୟବାଦ ଦେଲି । ତା' ପରଦିନ ଘରକୁ ବାହୁଡ଼ି ଆସିଲି । ସାର୍‌ଙ୍କ ସ୍ୱାସ୍ଥ୍ୟାବସ୍ଥାର ଉନ୍ନତି ଅବନତିର ଖବର ଶୁଣୁଶୁଣୁ ତିନିଦିନ ପରେ ମନ୍ଦାକିନୀ ଫୋନ୍ କଲା । ସାର୍ ଆଉ ନାହାନ୍ତି । ମୋ ମୁଣ୍ଡରେ ଆକାଶଟା ଛିଣ୍ଡି ପଡ଼ିଲା । ରାତିରେ ନିଦ ହଜିଗଲା, ଦିନରେ ଭୋକ ମରିଗଲା । ଭଗବାନ ମୋ ପାଇଁ ପଥର ହୋଇଗଲେ ।

ଜନ୍ମମାତ୍ରେ ମୃତ୍ୟୁ ଧ୍ରୁବସତ୍ୟ ଜାଣିବି ମନକୁ ବୁଝାଇ ହେଲାନି କି ଏବେ ମଧ୍ୟ ମନ ବୁଝୁନି । ଜୀବନରେ ଆଉ ଗୋଟିଏ ଶୂନ୍ୟସ୍ଥାନ ସୃଷ୍ଟି ହୋଇଗଲା, ଯାହାକି ମରିବା ଯାଏଁ ମୋତେ କଷ୍ଟ ଦେଉଥିବ ।

ଡ. କୃଷ୍ଣଚରଣ ବେହେରା, ମୋର ପରମପୂଜ୍ୟ ଗୁରୁ । ପ୍ରଥମେ ପ୍ରଥମେ ମୁଁ

ତାଙ୍କୁ ଭାରି ଡରୁଥିଲି । କିନ୍ତୁ ସମୟାନୁକ୍ରମେ ସେ ମୋର ବାପା, ଭାଇ, ବନ୍ଧୁ ଓ କୁଟୁମ୍ବୀ ହୋଇଯାଇଥିଲେ । କେବେ କେବେ ଶ୍ରଦ୍ଧା ଊଣା ହେବାର ଅନୁଭବ କଲେ କିମ୍ବା କୌଣସି କଥାରେ ମୋତେ ବା ମୋ ପରିସ୍ଥିତିକୁ ନ ବୁଝି କିଛି କହିଲେ ମୁଁ ସାର୍‌ଙ୍କୁ ଗାଳି ବି ଦେଇଛି । ସେ ଅଳ୍ପ ଶବ୍ଦରେ ହସି କହୁଥିଲେ- ପାଗଳୀଟା ।

ଆଖି, କାନ, ମନ- କିଛି ଭୁଲୁନି । ସାର୍‌ଙ୍କ ଅନୁପସ୍ଥିତି ଅକାଟ୍ୟ ସତ୍ୟ ହେଲେ ହେଁ ଭାରି କଷ୍ଟଦାୟକ । ଏତିକି ଅବସୋସ ରହିଗଲା ଯେ ମୁଁ ସାର୍‌ଙ୍କ ଇଚ୍ଛା ମୁତାବକ ହୋଇପାରିଲିନି । ଦୁର୍ଭାଗ୍ୟରେ ସନ୍ତୁଳି ହୋଇ ସାହିତ୍ୟ କ୍ଷେତ୍ରରେ ଅଶାନୁରୂପ କାମ କରିପାରିଲିନି । ସାର୍‌ଙ୍କ ପ୍ରାଣପ୍ରିୟ ଗବେଷଣା ପରିଷଦ ପାଇଁ ପ୍ରତ୍ୟକ୍ଷ ଭାବରେ କିଛି କରିବାକୁ ସକ୍ଷମ ହେଲି ନାହିଁ ।

ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବି ଯେ ସାର୍‌ଙ୍କ ପରି ଅନନ୍ୟ ବ୍ୟକ୍ତିତ୍ୱସଂପନ୍ନ ମଣିଷଟିଏ ମୋତେ ଜନ୍ମଜନ୍ମାନ୍ତର ପାଇଁ ଗୁରୁ ଭାବରେ ମିଳନ୍ତୁ ଓ ତାଙ୍କର ଆଶା ଓ ଇଚ୍ଛାକୁ ପୂର୍ଣ୍ଣ କରିବାରେ ମୁଁ ସଫଳ ହୁଏ । ❖

ଉଦଳା, ମୟୂରଭଂଜ

# କିଛି ସ୍ମୃତି କିଛି କଥା

ଅଳକା ଚାନ୍ଦ

୨୦୧୩ ମସିହା କଥା । ଦିନେ ହଠାତ୍ ଦେଖିଲି ସାର୍‌ଙ୍କର ଗୋଟାଏ ଚିଠି । ତା'ଭିତରେ ରହିଛି ମ୍ୟୁଜିକ୍ ସର୍କଲ ରାଉରକେଲାର ବାର୍ଷିକ ଉତ୍ସବରେ 'ବାସନ୍ତିକା' ପତ୍ରିକାରେ ପ୍ରକାଶ ପାଇଥିବା ମୋର ଗୋଟାଏ ଗଳ୍ପ । ପୃଷ୍ଠାଗୁଡ଼ାକ ମଧ୍ୟ କଟା ହୋଇଛି ଆଉ ଚିଠିରେ ଲେଖା ହୋଇଛି- 'ଗଳ୍ପର ମୋଡ଼ ବଦଳାଅ- ଏ ଗଳ୍ପ ଆଦୌ ଠିକ୍ ହୋଇ ନାହିଁ । ତମେ ଏତେ ପୁରୁଣା ଲେଖିକା, ଏମିତି ଗପ ଲେଖୁଛ ?' ମୁଁ ଚିଠିଟା ପଢ଼ି କାନ୍ଦି ଉଠିଲି । ଭାବିଲି ସାର୍ ଗପଟାକୁ ପତ୍ରିକାରୁ ଛିଣ୍ଡେଇ ବାହାର କରିଦେଲେ, ଫୋନ୍‌ରେ ତ ମଝିରେ ମଝିରେ କଥା ହୁଅନ୍ତି, କହିପାରିଥାଆନ୍ତେ ଯେ, 'ଗପଟିକୁ ପୁଣି ଥରେ ଲେଖ ।' ମୁଁ ଏ ବାବଦରେ କିଛି ପ୍ରତିବାଦ କଲି ନାହିଁ । ନିରବ ରହିଲି ।

ଅତିକ୍ରାନ୍ତ ହୋଇଗଲା ବର୍ଷେ । ସାର୍ ବି ଚୁପ୍ ରହିଲେ ।

୨୦୧୫ ମସିହା । ହଠାତ୍ ଦିନେ ସାର୍‌ଙ୍କ ନିକଟରୁ ଫୋନ୍ ପାଇଲି । ଅଳକା ! ଗବେଷଣା ପରିଷଦର ବାର୍ଷିକ ଉତ୍ସବ ୨୦୧୫ ମାର୍ଚ୍ଚ ୨୨ରେ 'ଓ ଗପ'ରେ ତମକୁ ଗଳ୍ପ ପୁରସ୍କାର ପାଇଁ ଚୟନ କରାଯାଇଛି । ତମେ ଆସିପାରିବ କି ନାହିଁ ଉତ୍ତରରେ କହିଲି, 'ଆପଣ ଆଦେଶ ଦେବେ ମୁଁ ଯିବି ନାହିଁ କେମିତି ?' ଇୟାଡ଼େ ପୁଣି ୨୫ ତାରିଖ ମାର୍ଚ୍ଚରେ ମ୍ୟୁଜିକ୍ ସର୍କଲ ରାଉରକେଲା ଯାହାର ମୁଁ ସାଧାରଣ ସମ୍ପାଦିକା ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ମିଳିତ ଆନୁକୂଲ୍ୟରେ ହବାକୁ ଥାଏ ବାସନ୍ତିକା ସାହିତ୍ୟ ସମାରୋହ ଓ ବହୁ ଭାଷା ଭାଷୀ କବି ସମ୍ମେଳନ । ପଦ୍ମଭୂଷଣ କବି ରମାକାନ୍ତ ରଥ ଥାଆନ୍ତି ମୁଖ୍ୟ ଅତିଥି ପୁଣି ୨୬ରେ ମଞ୍ଚସ୍ଥ ହେବାକୁ ଥାଏ ତାଙ୍କ ରଚିତ ଶ୍ରୀରାଧା । ବହୁ ବ୍ୟସ୍ତତା ମଧ୍ୟରେ ସେଦିନ ଗାଡ଼ି ନେଇ ସିଧା ପହଞ୍ଚିଲି କଟକରେ 'ଉତ୍କଳ ସାହିତ୍ୟ ସମାଜ'ରେ । ସାର୍ ମୋତେ ଦେଖି ଏତେ ଖୁସି ହୋଇଗଲେ, ଯାହା ମୁଁ କଲମରେ ବ୍ୟକ୍ତ କରିପାରୁନାହିଁ । କାର୍ଯ୍ୟକ୍ରମ ପାଇଁ ସେ ବି ଅତ୍ୟଧିକ ବ୍ୟସ୍ତ ଥିଲେ । ତା'ରି ଭିତରେ ମୋର ଆସିବା, ଯିବା କଥା ଖାଇବା, ରହିବା କଥା ସବୁ ପଚାରିଲେ । ଅଳ୍ପ ସମୟ ପରେ ସେ ସନ୍ଧ୍ୟାର ମୁଖ୍ୟ ଅତିଥି ଆସି ପହଞ୍ଚିବେ ଭୂତପର୍ବ ରାଜ୍ୟପାଳ ସ୍ୱର୍ଗତଃ ଜାନକୀବଲ୍ଲଭ ପଟ୍ଟନାୟକ ।

ମୁଁ ସାରଙ୍କ ବ୍ୟସ୍ତତା ଦେଖି କହିଲି, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ମୁଁ ଠିକ୍ ଅଛି । ସେ ସେହି ଦରଜା ମୁହଁରେ ବସି ବିଭିନ୍ନ ସାହିତ୍ୟିକମାନଙ୍କୁ କାମ ବରାଦ କରୁଥାଆନ୍ତି । ସେଦିନ ସନ୍ଧ୍ୟା ଥିଲା ସାରଙ୍କ ସହିତ ଶେଷ ସାକ୍ଷାତକାରର ପୂର୍ବବର୍ଷର ସନ୍ଧ୍ୟା । ପୁରସ୍କାର ପର୍ବ ପରେ, ଉତ୍ସବ ଶେଷରେ ତହିଁ ଆରଦିନ ସକାଳୁ ମୁଁ ଫେରି ଆସିଲି ରାଉରକେଲା । ମେ ୨୯ରେ ପୁଣି ସାରଙ୍କର ଆଉ ଗୋଟାଏ ଚିଠି ସହିତ ମୁଁ ପୁରସ୍କାର ନଉଥିବା ବେଳର ଗୋଟାଏ ଫଟୋ । ସେଇଟା ହିଁ ମୋର ସାରଙ୍କ ନିକଟରୁ ପାଇଥିବା ଶେଷ ଚିଠି, ଯାହା ମୁଁ ଏଯାବତ୍ ସାଇତି ରଖିଛି । ମୋ ବହି ଆଲମାରିରେ ।

ସାରଙ୍କ ସହିତ ମୋର ସମ୍ପର୍କ ୫୦ ବର୍ଷରୁ ଉର୍ଦ୍ଧ୍ୱ । ୧୯୬୨ ମସିହା ମୁଁ ଭଦ୍ରକ କଲେଜରେ ପାଠ ପଢୁଥାଏ । କୃଷ୍ଣସାର, ସୁଧାଂଶୁ ଶେଖର ରାୟ ଓ ନିଶାମଣି ମିଶ୍ର ଥାଆନ୍ତି ଓଡ଼ିଆ ବିଭାଗର ଅଧ୍ୟାପକ । ସେତିକିବେଳେ ମୁଁ ନୂଆ ହେଇ, ହେଇଥିବା ମହିଳା ହଷ୍ଟେଲରେ ପ୍ରିଫେକ୍ଟ ଥାଏ । ସାର୍ ଥାଆନ୍ତି ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ । ପାଠ ସହିତ, ସଂଗୀତ ବୋଲିବା, ନାଟକ କରିବା, ଆବୃତ୍ତି କରିବା, କବିତା ଲେଖିବା ଏସବୁ ଥାଏ ମୋର ନିତିଦିନିଆ କାର୍ଯ୍ୟକ୍ରମ । ତେଣୁ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ସାର୍‌ମାନେ ମୋତେ ଡାକୁଥିଲେ । ମୋ ସହିତ ତେଣୁ କରି ସେମାନଙ୍କର ଘନିଷ୍ଠତା ଖୁବ୍ ଥିଲା । ସେମାନେ ମୋତେ ଖୁବ୍ ଆପଣାର ଲାଗୁଥିଲେ । ଏତଦ୍‌ବ୍ୟତୀତ ଭଦ୍ରକ କଲେଜର ପ୍ରାଣ ପ୍ରତିଷ୍ଠାତା ମୋ ଅଜା, ୰ସ୍ୱର୍ଗତଃ ନରେନ୍ଦ୍ର ପ୍ରସାଦ ଦାସଙ୍କ ଘରକୁ ସବୁବେଳେ ସାରମାନଙ୍କର ଯିବା ଆସିବା ଲାଗି ରହିଥାଏ । ତେଣୁ ସାର୍‌ମାନଙ୍କ ସହିତ ମୁଁ ଅଧିକ ମିଶିବା ପାଇଁ ସୁଯୋଗ ପାଇଥାଏ । କୃଷ୍ଣସାର୍ କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମର ଦାୟିତ୍ୱ ତୁଲଉ ଥିବାରୁ ମୋତେ ଘନ ଘନ ଡାକରା ଦଉଥିଲେ । ହଷ୍ଟେଲ ପାଖ କ୍ୱାଟରରେ ସେ ତାଙ୍କ ସ୍ତ୍ରୀ ଓ ଦୁଇ ପୁଅ, ବାପ୍ପୁ, ଶୁଭକାନ୍ତ, ଚୁନି ସହିତ ରହୁଥିଲେ । ସେମାନେ ସେତେବେଳେ ଖୁବ୍ ସାନ ଥାଆନ୍ତି । ବୌଦି ପ୍ରାୟ ସେ ପିଲାମାନଙ୍କୁ ନେଇ ଆମ ହଷ୍ଟେଲ ଆସନ୍ତି... । ଧୀରେ ଧୀରେ ସାରଙ୍କ ପରିବାର ସହିତ ଆରମ୍ଭ ହେଇଗଲା ଘରୋଇ ସମ୍ପର୍କ । ତା'ପରେ ମୁଁ ଭଦ୍ରକ ଛାଡ଼ିଲି । ରାଧାନାଥ ଟ୍ରେନିଂ କଲେଜ(କଟକ) ବାଣୀବିହାର (ଭୁବନେଶ୍ୱର) ପାଠସାରି ମୁଁ ବାହାସାହା ହେଇ ଗୁଜରାଣ ମେଣ୍ଟେଇବା ପାଇଁ ଆସିଲି ରାଉରକେଲା । ଦୀର୍ଘ ବର୍ଷ ମୋର ଆଉ ଭଦ୍ରକ ସହିତ ବିଶେଷ ସଂଯୋଗ ନ ଥିଲା ।

୧୯୭୮ ମସିହା । ମୁଁ ଭୁବନେଶ୍ୱରରେ ସଙ୍ଗୀତ ନାଟକ ଏକାଡ଼େମୀ ଅଫିସକୁ କିଛି କାମରେ ଯାଇଥାଏ । ସାରଙ୍କ ସହିତ ହଠାତ୍ ଦେଖାହେଲା ଷ୍ଟେଟ୍ ମ୍ୟୁଜିୟମ୍ ବିଲ୍ଡିଂରେ । ସାରଙ୍କ ସାହିତ୍ୟ ପ୍ରାଣ ବ୍ୟକ୍ତି ସତ୍ତା, ଛାତ୍ର ବତ୍ସଳ ପ୍ରାଣ, ଦୀର୍ଘ ବର୍ଷର

ବ୍ୟବଧାନ ପରେ ମୋତେ ଦେଖି ଅସମ୍ଭବ ପ୍ରକାର ଖୁସି ହେଇ କହିଲେ- 'ଅଳକା ବହୁ ବର୍ଷ ପରେ ତମକୁ ଦେଖି ଖୁସିହେଲି । ତମେ କାଲି ପ୍ରଜାତନ୍ତ୍ର ଅଫିସ ବିଷୁବ ମିଳନକୁ ଆସୁଛ କି ନାହିଁ ?

ତମେ ତ କାଲି 'ପ୍ରଜାତନ୍ତ୍ର ଗଳ୍ପ ପୁରସ୍କାର ପାଇବ ।' ମୁଁ ଏ ଖବର ଶୁଣି ଆଶ୍ଚର୍ଯ୍ୟ ହେଲି । ଆକାଶବାଣୀରେ ଗୀତ ବୋଲିବା ପାଇଁ ଆସିଥିଲି କଟକ । କହିଲି ମୁଁ ତ ଏ ବାବଦରେ କିଛି ଜାଣି ନାହିଁ । ଉତ୍ତରରେ ସାର କହିଲେ, 'ଚିଠି ହୁଏତ ରାଉରକେଲାରେ ପହଞ୍ଚିଥିବ, ତମେ ତ ଇଆଡ଼େ ଆସିଛ । ରହିଯାଅ ! ମୋର ତ ଆଜି ଫେରିବାର କଥା ସାର୍ ।'

ସାର୍ ନିର୍ଦ୍ଦେଶ ଦେବା ଭଙ୍ଗୀରେ କହିଲେ, 'ଟିକଟ କ୍ୟାନସଲ କର ।' ତହିଁ ଆରଦିନ ବିଷୁବ ମିଳନ କାର୍ଯ୍ୟକ୍ରମରେ ପହଞ୍ଚି ମୁଁ ପୁରସ୍କାର ନବାକୁ ଯାଉଥିବା ବେଳେ, ସାର୍ ମୋ କତିକି ଆସି ଚୁପ୍ କରି କହିଲେ- 'ଅଳକା ! ମଞ୍ଚକୁ ଯାଇ ପ୍ରଥମେ ଡକ୍ଟର ମହତାବଙ୍କୁ ପ୍ରଣାମ କରିବେ । ତା'ପରେ ମଞ୍ଚସ୍ଥ ଅତିଥିମାନଙ୍କୁ । ତା'ପରେ ଶ୍ରୋତାମଣ୍ଡଳୀଙ୍କୁ । ତା'ପରେ ଗ୍ରହଣ କରିବ ପୁରସ୍କାର । ମନେହେଉଥାଏ ମୁଁ ସେଦିନ ବି ସେମିତି ସାରଙ୍କର ୬୨ ମସିହାର ଭଦ୍ରକ କଲେଜ ଛାତ୍ରୀ । ମୋ ଆଖିରେ ଲୁହ ଟଳମଳ ହେଲା । ଏଭଳି ଛାତ୍ର ବତ୍ସଳ ଶିକ୍ଷକ ଛାତ୍ରଛାତ୍ରୀମାନଙ୍କ ସାଫଲ୍ୟରେ ଏଭଳି ଭରପୂର ହେଇଯାଉଥିବା ମଣିଷ ଆଜିକାଲି ସ୍ୱପ୍ନ ପ୍ରାୟ ।

ପୁଣି ସାରଙ୍କ ଘରେ ପହଞ୍ଚିଲି ଓଡ଼ିଆ ସାହିତ୍ୟରେ ଘରୋଇ ଭାବରେ ଏମ୍.ଏ ଦେବା ସମୟରେ । ସାର୍‌ଙ୍କ ଘରେ ରହିବା, ପାଠ ପଢ଼ିବା, ଖାଇବା ପିଇବା ସବୁ ମୋର ରୀତିମତ ଚାଲିଲା । ସାର୍‌ଙ୍କ ଘର ପାଲଟିଗଲା ମୋର ଆଉ ଗୋଟାଏ ଘର । ନିଜସ୍ୱ ଲାଇବ୍ରେରୀରୁ ଯେତେ ପାରିଲେ ବହି ଆଣି ମୋତେ ପଢ଼ିବା ପାଇଁ ଦେଲେ । ନୋଟ କରେକ୍ସନ ଠାରୁ, ବିଭିନ୍ନ ବିଷୟ ଉପରେ ବିଶଦ ଆଲୋଚନା, କେଉଁଥିରେ ବି ନ ଥିଲା, ତାଙ୍କର ସାମାନ୍ୟ କିଛି କାର୍ପଣ୍ୟ । ମୁଁ ଯେଉଁଦିନ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି, ସେଦିନ ସାରଙ୍କ ମୁହଁରେ ଯେଉଁ ମୁରୁକି ହସ, ଆଉ ସ୍ନେହ ଗଦଗଦ ଚେହେରା, ମୋର ଏବେବି ସ୍ପଷ୍ଟ ଭାବରେ ମନେ ପଡୁଛି, ଗୋଟାଏ ଛାତ୍ରୀର ସାଫଲ୍ୟ ଯେ ଏତେ ଗଭୀର ଭାବରେ ଜଣେ ଶିକ୍ଷକକୁ ଉଦ୍‌ବେଳିତ କରେ; କୃଷ୍ଣସାର୍ ଥିଲେ ତା'ର ଜ୍ୱଳନ୍ତ ଉଦାହରଣ ।

କିଛି ବର୍ଷ ତଳେ । ଭଦ୍ରକର ରବିବାସରୀୟ ସାହିତ୍ୟ ଚକ୍ରର 'ଭଦ୍ରକ ଗଳ୍ପ ସମ୍ଭାର' ଲୋକର୍ପଣ ଉତ୍ସବରେ ସାର୍ ଥାଆନ୍ତି ମୁଖ୍ୟ ଅତିଥି । ମୁଁ ସମ୍ମାନିତ ବକ୍ତା ଭାବରେ ନିମନ୍ତ୍ରଣ ପାଇଥାଏ । ଗୋଟାଏ ମଞ୍ଚରେ ସାର୍‌ଙ୍କ ସହିତ ବସି ଗଳ୍ପ ଆଲୋଚନା କରିବା

ଓ ବକ୍ତବ୍ୟ ରଖିବା ଏହା ଥିଲା ମୋ ପାଇଁ ଏକ ଦୁର୍ଲ୍ଲଭ ମୁହୂର୍ତ୍ତ । ମୋର ଗୋଟାଏ ଗଳ୍ପ ପଢ଼ି ଆଦିବାସୀ ଝିଅ 'ପନଖି'ର ଚରିତ୍ର ତାଙ୍କୁ ଭାରି ଭଲ ଲାଗିଥିଲା ବୋଲି ମଞ୍ଚରେ ସେ ମୋତେ ବାରମ୍ବାର କହିଥିଲେ । ରାଉରକେଲାରେ ଗଢ଼ି ଉଠିଥିବା ମ୍ୟୁଜିକ୍ ସର୍କଲ ସମ୍ବନ୍ଧରେ ସେ ବହୁ ପ୍ରଶଂସା କରୁଥିଲେ ।

୨୦୦୨ ମସିହା । ମ୍ୟୁଜିକ୍ ସର୍କଲ ରାଉରକେଲାର ୨୫ବର୍ଷ ପୂର୍ତ୍ତି ଉପଲକ୍ଷ୍ୟରେ ଆମେ ଏକ ଆଦିବାସୀ କର୍ମଶାଳା ଆୟୋଜନ କରିଥାଉ । କୃଷ୍ଣ ସାର୍ ମଧ୍ୟ ଥିଲେ ଜଣେ ନିମନ୍ତ୍ରିତ ଅତିଥି । ସେଇ ବର୍ଷ ପ୍ରଥମ କରି ସାର୍ ପାଦ ଥାପି ଥିଲେ, ରାଉରକେଲାରେ ଆମ ଘରେ । ମୁଁ ଓ ମୋ ସ୍ୱାମୀ ଡାକ୍ତର ପ୍ରଭାତ କୁମାର ଚାନ୍ଦ ଆମେ ଉଭୟେ ଥିଲୁ ସାର୍‌ଙ୍କର ଛାତ୍ରଛାତ୍ରୀ । ଆମ ଘରେ ମୋ ବହିଥାକ ଦେଖି ଖୁସି ହେଇ କହିଲେ, ଆହୁରି ଗଳ୍ପ ଲେଖ ଅଳକା । ଆଗକୁ ଆହୁରି ଭଲ ଲେଖିବ । ସବୁ ମୂଳରେ ରହିଛି ସାଧନା । ପ୍ରତ୍ୟେକ ସାହିତ୍ୟିକର ଗୋଟାଏ ସାମାଜିକ ଦାୟିତ୍ୱ ରହିଛି । ଏତେ ବଡ଼ ଅନୁଷ୍ଠାନ କରିଛ । ତା' ପାଇଁ ମଧ୍ୟ ଯଥାଯଥ ସମୟ ଦେବ । ମୁଁ ତ 'ଗବେଷଣା ପରିଷଦ' ଆଉ 'ଏଷଣା' ଛଡ଼ା ବଞ୍ଚିପାରିବି ନାହିଁ । ଏହା ଥିଲା ମୋ ଘରେ ସାରଙ୍କର ଶେଷ ବକ୍ତବ୍ୟ ।

୨୦୧୬ ମସିହା 'ମେ' ମାସରେ ତେଲିତୋଳ ଏକାଡ଼େମୀ ସାରଳା ସାହିତ୍ୟ ସଂସଦ କଟକ, ମୋତେ ପୁରସ୍କାର ପାଇଁ ନିମନ୍ତ୍ରଣ କରିଥିଲେ । ମୁଁ ସଭାଗୃହକୁ ଯିବା ପୂର୍ବରୁ ସାର୍‌ଙ୍କ ଘରକୁ ଗଲି । ମୋ ସହିତ ସାଙ୍ଗରେ ଥାଏ ପ୍ରାବନ୍ଧିକ ଡକ୍ଟର ନଗେନ ଦାସ (ନଗେନ) । ସାର୍ ନଗେନ୍‌କୁ ଦେଖି ଭାରି ଖୁସି ହେଇଗଲେ । ପିଠି ଥାପୁଡ଼ାଇ କହିଲେ, ଆହୁରି ଲେଖ ଆହୁରି ଲେଖ- ପ୍ରବନ୍ଧ ତୁମର ଭଲ ହଉଛି । ଏଇଭଳି ସମସ୍ତଙ୍କୁ ତାଙ୍କର ପିଠି ଆଉଁଶି, ସାବାସି । କଥାମାନେ କେବଳ ସାହିତ୍ୟ, ଚର୍ଚ୍ଚାମାନେ କେବଳ ସାହିତ୍ୟ ଚର୍ଚ୍ଚା । ସେଦିନ ଦେଖିଲି ସାର୍ ଆଉ ପୂର୍ବପରି ଚଳଚଞ୍ଚଳ ନାହାନ୍ତି । ବେଶ୍ ସ୍ଥିର ହୋଇଗଲେଣି । ସେଦିନ ସାର୍ ତାଙ୍କର ଶେଷ ଗଳ୍ପ ସଂକଳନଟିକୁ ମୋ ହାତକୁ ବଢ଼େଇ ଦେଇ କହିଲେ 'ଅଳକା ! ବହିଟି ପଢ଼ି କହିବ- କେମିତି ଲାଗିଲା... ।' ମୁଁ ଉତ୍ତରରେ କହିଲି- 'ଆପଣଙ୍କ ଗଳ୍ପ ଉପରେ ମୁଁ କ'ଣ ମନ୍ତବ୍ୟ ଦେବି ସାର୍ ? ଆପଣଙ୍କ ସୃଷ୍ଟି ଉପରେ ପୁଣି ମୁଁ ମନ୍ତବ୍ୟ ପ୍ରଦାନ କରିବି ? ଏ ଧୃଷ୍ଟତା ମୋର ନାହିଁ ସାର୍ ।' ଏଇଥିଲା ସାରଙ୍କ ସହିତ ମୋର ଶେଷ କଥା । ତା'ପରେ ସାର୍‌ଙ୍କ ପାଦ ଛୁଇଁ ମୁଁ ପ୍ରଣାମ କଲି ଓ ଆସିଲି ସାରଳା ସାହିତ୍ୟ ସଂସଦ ।

୨୦୧୭ ଜୁଲାଇ ମାସରେ ହଠାତ୍ ଗୌରାଙ୍ଗ ସାର୍ ମୋତେ ଫୋନ୍‌ରେ କହିଲେ, 'କୃଷ୍ଣ ସାର୍ ଭୁବନେଶ୍ୱରରେ ଆଇସିୟୁରେ । ଭାରି କ୍ରିଟିକାଲ ଅବସ୍ଥା ।' ମୁଁ ରାଉରକେଲାରେ ଥାଏ, କଉ ବା ଚଟ୍‌କିନା ଯାଇପାରିବି ଭୁବନେଶ୍ୱର । ଦୁଇ ତିନି

ପରେ ବାପୁକୁ ପଚାରିଲି ବାପା କେମିତି ଅଛନ୍ତି । ଉତ୍ତରରେ ବାପୁ କହିଲା, 'ବାପା କେବିନକୁ ଆସିଲେଣି ଟିକେ ଭଲ ।' ତା'ର ଠିକ୍ ଦୁଇଦିନ ପରେ ଖବର ପାଇଲି ସାର୍ ଚାଲିଗଲେ ।' ତା'ପରେ ଏକାଦଶାହ ଅବସରରେ ପ୍ରକାଶିତ ହୋଇଥିବା ଖଣ୍ଡେ ସ୍ମରଣିକା ଆସି ପହଞ୍ଚିଲା ମୋ ଘରେ । କଭର ପେଜ୍ ଉପରେ ଚିତ୍ରିତ ସାରଙ୍କ ସେଇ ହସ ହସ ମୁହଁ- ଭାବ ଗମ୍ଭୀର ଚେହେରା । ସାର୍ ଚାଲିଗଲେ- ଛାଡ଼ି ଦେଇ ଗଲେ ତାଙ୍କର 'ଏଷଣା', ମାନସ ପୁତ୍ର ଗବେଷଣା ପରିଷଦ, 'ବେଦୀ', କୃଷ୍ଣଚରଣ ବୀଥିକା, ଚା' କପରେ ଝଡ଼, ଏଇଭଳି ସାରି ସାରି ଗ୍ରନ୍ଥ... ଆଉ ଛାଡ଼ି ଦେଇଗଲେ ତାଙ୍କର ଛାତ୍ର ବତ୍ସଳତା... ଅତୁଟ ମମତା... ସ୍ନେହ ବନ୍ଧନ ଭରା ପ୍ରେମର ପୃଥିବୀ । ଯାହା ସବୁଦିନ ପାଇଁ ତାଙ୍କ ଛାତ୍ରଛାତ୍ରୀମାନଙ୍କ ପାଖରେ ଶୂନ୍ୟ ହୋଇ ପଡ଼ିରହିଲା ।

ଦି'ମାସ ତଳେ ବାପୁ ଖବର ଦେଲା ଶ୍ରାଦ୍ଧ ବାର୍ଷିକ ପାଇଁ ସ୍ମରଣିକାଟିଏ ପ୍ରକାଶ ପାଇବ ଲେଖାଟିଏ ପଠାଇବେ ।' କ'ଣ ଲେଖିବି, କ'ଣ ନ ଲେଖିବି, ଏତେ କଥା ସ୍ମରଣ ହଉଛି, ସାରଙ୍କ ସହିତ ଦୀର୍ଘଦିନର ସମ୍ପର୍କ, ତାଙ୍କର ଶୁଭେଚ୍ଛା ଆଶୀର୍ବାଦ ମୋତେ ଗଢ଼ିବା ପାଇଁ, ସାହିତ୍ୟ ଜଗତରେ ଆହୁରି ଆଗକୁ ବଢ଼ିବା ପାଇଁ, ତାଙ୍କର ଯେଉଁ ଉତ୍ସାହ ଓ ପ୍ରେରଣା ଏସବୁ ଅନନ୍ୟ ଓ ଅସାଧାରଣ । ଲମ୍ବିଯାଉଛି ମାଇଲ ପରେ ମାଇଲ ଖୁଣ୍ଟ, ସ୍ମୃତିର ଗଳ୍ପରା । ବାପୁ, ଶୁଭକାନ୍ତ, ଚୁନି ବୌଦି, ସାର୍ ସବୁଆଡ଼େ ବିଚ୍ଛିନ୍ନ ହୋଇଗଲେ, ଗୁଡ଼ିର ସୂତାଖିଅ ଭଳି କଉଠି ହଜିଗଲେ ସାର୍ । ଶୁଭକାନ୍ତ ଓ ବୌଦିଙ୍କର ଅକାଳ ବିୟୋଗରେ ବି ତାଙ୍କର ନିଶ୍ଚଳ ଅବସ୍ଥା, ଅସୀମ ଧୈର୍ଯ୍ୟ, ସହିଷ୍ଣୁ ପଣ, ଏତେ ଦୁଃଖ ଭିତରେ ବି ସାର୍ ଭାଙ୍ଗି ପଡ଼ି ନଥିଲେ ।

ସାର୍ଙ୍କର ଯିବା ସମୟ ହୋଇଥିଲା, ଚାଲିଗଲେ । କିନ୍ତୁ ତାଙ୍କ ଭଳି ବିଶ୍ୱକର୍ମାଟିଏ ଆଉ ଏ ମାଟିକି ଆସିବେ କି ନାହିଁ । ଆଜି ସ୍ନାନ ପୂର୍ଣ୍ଣିମା, ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା, ସେ ଅମର ଆତ୍ମା, ସ୍ୱାଭିମାନୀ ସାହିତ୍ୟ ସାଧକଙ୍କର ସଦ୍‌ଗତି ହେଉ । ସବୁଦିନ ପାଇଁ ବଞ୍ଚିରହୁ 'ଏଷଣା', ବଞ୍ଚିରହୁ ତାଙ୍କର ମାନସ ପୁତ୍ର 'ଗବେଷଣା ପରିଷଦ' । ❖

ଇ.ଏମ୍-୪୪, ବାସନ୍ତୀ କଲୋନୀ, ରାଉରକେଲା-୧୨
ମୋ.: ୯୪୩୮୦୭୬୫୨୫

# ଜଣେ ଭଲ ମଣିଷ

ବିଜୟିନୀ ସିଂହଦେଓ

ସାର୍‌ଙ୍କ ସହ ମୋର ପରିଚୟ ୧୯୮୨ ମସିହାରୁ । ଡ. କୃଷ୍ଣଚରଣ ବେହେରା ଓ ଡ. କ୍ଷେତ୍ରବାସୀ ନାୟକଙ୍କ ମିଳିତ ଉଦ୍ୟମରେ ଗଢ଼ି ଉଠିଥାଏ 'ଓଡ଼ିଆ ଗବେଷଣା ପରିଷଦ' । ସେହି ପରିପ୍ରେକ୍ଷୀରେ ସାର୍‌ଙ୍କ ସହ ଚିହ୍ନା । ମୁଁ ଥାଏ ପ୍ରଫେସରପଡ଼ାରେ ଭଡ଼ା ଘରେ । ସାର୍ ଥା'ନ୍ତି ପ୍ରଫେସରପଡ଼ାର ଗୋଟିଏ ଗ୍ରୀଲ୍ ଦୋକାନ ପଛପଟେ । ଦିନରାତି ଲୁହାପିଟାର ଶବ୍ଦ । ତା'ରି ଭିତରେ ଚାଲିଥାଏ ସାର୍‌ଙ୍କର ନିରବଚ୍ଛିନ୍ନ ସାରସ୍ୱତ ସାଧନା । ସେଇଠି ପଚାନାଳ (ଯେଉଁ ନାଳରେ ସହରର ଆବର୍ଜନା ପାଣି ଯାଏ) ଆରପଟେ ଥା'ନ୍ତି ଡ. କୁଞ୍ଜବିହାରୀ ଦାଶ । ପରିହାସରେ କହନ୍ତି, 'ମୁଁ ଆଉ କୃଷ୍ଣଚରଣ ଝେଲମ୍ ନଦୀର  ଦୁଇପାର୍ଶ୍ୱରେ ଅଛୁ ।' ରେଭେନ୍ସାରେ ପଢ଼ିଲାବେଳେ ସେ ମୋର ଶିକ୍ଷକ ଥିଲେ । ଡ. ବେହେରାଙ୍କୁ ମଧ୍ୟ ସେ ଶାନ୍ତି ନିକେତନରେ ପଢ଼େଇ ଥିଲେ । ଡ. ବେହେରା ଥିଲେ ଡ. ଦାଶଙ୍କର ପ୍ରିୟ ଛାତ୍ର । ମୁଁ ଥରେ ଡ. ଦାଶଙ୍କ ଘରକୁ ଯାଇଥିଲି । କଥା ପ୍ରସଙ୍ଗରେ ସେ ମୋତେ କହିଲେ, "କୃଷ୍ଣଚରଣ ସେଠି କିମିତି ଲେଖାଲେଖି କରୁଛି ? ସବୁବେଳେ ଲୁହାପିଟା ଶବ୍ଦ । ସେ ଭଲ ଲେଖାଲେଖି କରେ । ତା'ର ଅସୁବିଧା ହଉ ନ ଥିବ ?" ମୁଁ ଆସି ସାର୍‌ଙ୍କୁ କହିବାରୁ ନିରଳସ ହସଟିଏ ହସିଦେଇ କହିଲେ, 'ଦେଖୁଛନ୍ତି ତ । କିଛି ଅସୁବିଧା ହଉ ନାହିଁ ।' ମୋ ସାର୍ ତ । ମୋ ପାଇଁ ଚିନ୍ତା କରୁଛନ୍ତି । ଡ. ବେହେରାଙ୍କର ସବୁକଥା ସେହିପରି ସିଧାସଳଖ, ଯେ ତାଙ୍କ ଜୀବନୀ ପଢ଼ିଥିବ ଏ କଥା ହୃଦୟଙ୍ଗମ କରିଥିବ ।

ସାର୍ ପରେ କଲ୍ୟାଣୀନଗର ଆସି 'ଉତ୍କଳ ଆପାର୍ଟମେଣ୍ଟସ୍'ରେ ନିଜ ଘରେ ରହିଲେ । ଆମେ ବି କଲ୍ୟାଣୀନଗରରେ ଘର କରି ରହିଲୁ । ସାର୍‌ଙ୍କ ଘର ପଛ ପାଖ ଓ ଆମ ଘର ପଛପାଖ ଲଗାଲଗି ପ୍ରାୟ । ସୁତରାଂ ବେଳ ଅବେଳରେ ସାର୍‌ଙ୍କ ଘରେ ପହଞ୍ଚିଯାଏ । କେବଳ ସାର୍ ନୁହନ୍ତି ଶ୍ରୀମତୀ ବେହେରା ଓ ପରିବାରର ଅନ୍ୟ ସମସ୍ତଙ୍କ ସହ ଆନ୍ତରିକତା ଗଢ଼ି ଉଠିଲା । ଏବେ ମଧ୍ୟ ସେ ସଂପର୍କ ବଜାୟ ରହିଛି ।

ଯେତେବେଳେ ପହଞ୍ଚିଲେ ଚା' କିମ୍ବା ଜଳପାନର ବନ୍ଦୋବସ୍ତ । ତା'ପରେ ସାର୍‌ଙ୍କର ପ୍ରଶ୍ନ, "କ'ଣ କିଛି ଲେଖାଲେଖି କରିଛନ୍ତି ? ପିଲାମାନଙ୍କ ପାଖକୁ ଯାଇଥିଲେ । ସେଠି ଖାଲି ବୁଲାବୁଲି କଲେ ନା କ'ଣ ଲେଖିଲେ ?" ପ୍ରାୟତଃ କିଛି ଲେଖି ନ ଥାଏ । ଯଦି କିଛି ଲେଖିଛି ଶୁଣନ୍ତି ସାଙ୍ଗେ ସାଙ୍ଗେ କହନ୍ତି, 'ଆଣୁ ନାହାନ୍ତି ପଢ଼ିବା ।' ପଢ଼ନ୍ତି । ମତାମତ ଦିଅନ୍ତି । କାହିଁକି ନିୟମିତ ଲେଖୁନାହିଁ ବୋଲି ଆକଟ କରନ୍ତି । ସେ ଆକଟ ଉହାଡ଼ରେ ଥାଏ ସଦିଚ୍ଛା ଓ ପ୍ରେରଣା । ଥରକର ଘଟଣା, ଗପଟିଏ ଲେଖିଥିଲି । ସାର୍ କହିବାରୁ ପଢ଼ି ଶୁଣେଇଲି । ଗପଟିର ନାଁ ଥିଲା 'ପଣ' । ସାର୍ କହିଲେ, 'ଚମତ୍କାର ହେଇଛି । ଗପଟି ଶୁଣି ମୋର କେତେକଥା ମନେ ପଡ଼ିଲା । ପିଲାଦିନରୁ ହରେଇ ଥିବା ମୋ ମା', ମୋ ପତ୍ନୀ, ମୋ ଝିଅ ସମସ୍ତଙ୍କ କଥା ମନେପଡ଼ି ମୋ ଆଖିକୁ ଲୁହ ଚାଲି ଆସିଲା । ସହଜରେ ମୋ ଆଖିକୁ ଲୁହ ଆସେ ନାହିଁ । କିନ୍ତୁ ଗପଟିର ନାଁ 'ପଣ' ମୋତେ ଠିକ୍ ଲାଗୁନାହିଁ । ଆପଣ ଆଉ ଟିକେ ଭାବନ୍ତୁ । ମୁଁ ବି ଭାବୁଛି । ଦେଖେ । ତା'ପରଦିନ ମୋତେ ଫୋନ୍ କରି କହିଲେ, 'ସେଇ ନାଁଟି ଥାଉ । ତା'ଠୁ ଭଲ ନା ମୋ ମନକୁ ଆସୁ ନାହିଁ ।' ମୋ ଭଳି ସାମାନ୍ୟ ଲୋକ ଲେଖିଥିବା ଗୋଟେ ଗପର ନାଁ ପାଇଁ ସାର୍‌ଙ୍କର କି ଚିନ୍ତା । କି ନିଷ୍ଠା ! ସେ ଗପଟି ପରେ 'ସୁଚରିତା' ପତ୍ରିକାରେ ପ୍ରକାଶ ପାଇଥିଲା ଏବଂ ପାଠକୀୟ ଆଦୃତି ଲାଭ କରିଥିଲା ।

ସାର୍‌ଙ୍କର ପ୍ରତ୍ୟେକ କାର୍ଯ୍ୟରେ ଏହିପରି ନିଷ୍ଠା ଓ ଆନ୍ତରିକତା ଥାଏ ।

ଦେଖାହେଲା ମାତ୍ରେ ସାର୍ ଘରକଥା, ପିଲାଙ୍କ କଥା, ଭଂଜଦେଓଙ୍କ କଥା ନିଶ୍ଚୟ ପଚାରନ୍ତି । ଅନେକ କଥା ଧୈର୍ଯ୍ୟର ସହ ଶୁଣନ୍ତି । ମୁଁ ସାର୍‌ଙ୍କର ପ୍ରତ୍ୟକ୍ଷ ଛାତ୍ରୀ ନ ଥିଲି । କିନ୍ତୁ ସଦା ସର୍ବଦା ଛାତ୍ରୀ ସୁଲଭ ସ୍ନେହ, ଶ୍ରଦ୍ଧା, ଉପଦେଶ ପାଇଆସିଛି । ସେ କେବେ ବି କନିଷ୍ଠମାନଙ୍କୁ ଲଘୁ ଦୃଷ୍ଟିରେ ଦେଖନ୍ତି ନାହିଁ । ଥରେ କଥା ହେଉ ହେଉ ଆମ ଘରର ଚାଲିଚଳଣି କଥା କହୁଥିଲି । ଆମ ବଂଶରେ କିଏ ମରିଗଲେ ଆମେ ମରିଗଲା ନ କହି ବିୟୋଗ ବା ବିଯୋଗ ବୋଲି କହୁ । ଆମର ଏକ ସ୍ୱତନ୍ତ୍ର ଶ୍ମଶାନ ଅଛି । ତା' ନାଁ 'ବିଯୋଗ ତୋଟା', ନାଁ ଟି ସାର୍‌ଙ୍କୁ ଏତେ ସ୍ପର୍ଶ କଲା ଯେ ତାକୁ ଭିତ୍ତି କରି ସେ ଗୋଟିଏ ଗପ ଲେଖିଲେ ଏବଂ ମୋତେ ଘରକୁ ଡାକି ପଢ଼ି ଶୁଣେଇଲେ ।

ସାର୍‌ଙ୍କ ପରିବାର ସହ ବି ମୋର ସଂପର୍କ ଘନିଷ୍ଠ । ଶ୍ରୀମତୀ ବେହେରା ପଢ଼ିବାକୁ ବହୁତ ଭଲ ପାଉଥିଲେ । ବିଶେଷତଃ ବଙ୍ଗଳା ବହି, ମୁଁ ପ୍ରତିବର୍ଷ ଦଶହରା ବେଳେ ବଙ୍ଗଳା ପୂଜାସଂଖ୍ୟା ସବୁ ଆଣି ତାଙ୍କୁ ଆଗ ପଢ଼ିବାକୁ ଦିଏ । ପରେ ମୁଁ ପଢ଼େ । ବଙ୍ଗଳା ଓ ଓଡ଼ିଆ ଅନ୍ୟାନ୍ୟ ବହି ବି ଦିଏ । ତାଙ୍କ ନିଜ ଘରେ କେତେ ବହି । ସେଥିରେ ବି ତାଙ୍କର ତୃପ୍ତି ନାହିଁ, ସାର୍‌ଙ୍କ ଘର ସର୍ବଦା ସାରସ୍ୱତ ପରିବେଶରେ ପବିତ୍ର ।

ଆଉଥରେ ସାର୍‌ଙ୍କୁ ରାତି ନଅଟାରେ ଗୋଟିଏ ଶବ୍ଦର ଅର୍ଥ ଓ ବ୍ୟୁତ୍ପତ୍ତି ପଚାରିଥିଲି । ଏତେ ରାତିରେ ଯିବି କି ନାହିଁ ଆଗପଛ ହେଲାରୁ ସାର୍ କହିଲେ, 'ଏତେ କ'ଣ ଭାବୁଛନ୍ତି ? ଏତିକି ଟିକେ ବାଟ ଚାଲି ଆସନ୍ତୁ । ଶ୍ରୀମତୀ ବେହେରା ବି ଡାକୁଛନ୍ତି । 'ଗଲି, ଦୁର୍ଯୋଗ । ପହଞ୍ଚୁ ପହଞ୍ଚୁ ବିଜୁଳି ଚାଲିଗଲା । ସାର୍ ବୋହୂ ମୀନାକୁ ଡାକ ପକେଇଲେ । ଲଣ୍ଠନ ଲଗାହେଲା । ସାର୍ ପଚାରିଲେ ବୋହୂକୁ, ତାଙ୍କ ଉପରୁ ନିର୍ଦ୍ଦିଷ୍ଟ ଅଭିଧାନଟି ଆଣି ପାରିବ କି ନାହିଁ । ସେ ତ ସାର୍‌ଙ୍କ ବୋହୂ ନା, ଅଳ୍ପ ଆଲୁଅରେ ଷ୍ଟୁଲ ପକେଇ ଚଢ଼ି ବହିଟି ନେଇ ଆସିଲା । ମୋତେ ଭାରି ସଙ୍କୋଚ ଲାଗୁଥାଏ । ଶ୍ରୀମତୀ ବେହେରା ବଡ଼ ପାଟିରେ ହସିଦେଇ କହିଲେ, 'କାହିଁକି ସିମିତି ହଉଚ ? ରାତି ହଉ । ଲାଇଟ୍ ନ ଥାଉ । ଆସିଲ ବୋଲି ଦେଖା ହେଲା ନା । ତମେ ତ ଆଉ ଆସୁନ ।" ଯେତେଥର ଗଲେବି ତାଙ୍କର ମନ ବୁଝେ ନାହିଁ । ବାରମ୍ବାର ଯିବାକୁ ସସ୍ନେହ ତାଗିଦା କରନ୍ତି । ସମଗ୍ର ପରିବାରର ସ୍ନେହ ଶ୍ରଦ୍ଧା ଏହିପରି ।

ଲେଖୁଥିଲେ ଲେଖୁଥିବି । ତଥାପି ଗୋଟିଏ ଘଟଣା ନ ଲେଖି ରହିପାରୁନାହିଁ । 'ଓଡ଼ିଆ ଗବେଷଣା ପରିଷଦ' ଥିଲା ସାର୍‌ଙ୍କର ମାନସ ସନ୍ତାନ । ତା'ର ଉନ୍ନତି ତାଙ୍କର ଚିନ୍ତାଧାରାକୁ ସର୍ବଦା ଆବୋରି ରହିଥିଲା । 'ଓଡ଼ିଆ ଗବେଷଣା ପରିଷଦ'ର ଆନୁଷ୍ଠାନିକ ସଭା ସମିତି ବିଭିନ୍ନ ସ୍ଥାନରେ ସଂପାଦିତ ହେଉଥିଲା । ସେଠାରେ ପ୍ରବନ୍ଧ ପାଠ ଓ ଆଲୋଚନା ହେଉଥିଲା । ଏବେବି ସାର୍‌ଙ୍କର ଅବର୍ତ୍ତମାନରେ ତାହା ଅବ୍ୟାହତ ରହିଛି । ସେହି ପ୍ରବନ୍ଧପାଠ ଅବସରରେ ମୁଁ ଦୁଇଥର, ଥରେ ରାଉରକେଲା ଓ ଥରେ ଦିଲ୍ଲୀ ସଭ୍ୟମାନଙ୍କ ସହ ଯାଇଥିଲି । ଶାନ୍ତି ନିକେତନ ଯିବାର ଯୋଜନା ଆଉ ଫଳବତୀ ହୋଇପାରିଲା ନାହିଁ । ସେ ଦୁଇଥର ଯାତ୍ରାର ଅନୁଭୂତି ଭୁଲିବାର ନୁହେଁ । ଦିଲ୍ଲୀରେ ଅନ୍ୟ ସଭ୍ୟମାନେ ଅନ୍ୟତ୍ର ରହୁଥିଲେ । ସାର୍‌ଙ୍କ ପୁଅ ଟୁଟୁ (ଆଇ.ଏଫ୍.ଏସ୍. ଡକ୍ଟର ଶୁଭକାନ୍ତ ବେହେରା, ସେତେବେଳେ ଦିଲ୍ଲୀରେ ଅବସ୍ଥାପିତ) ଘରେ ମୁଁ, ଲାବଣ୍ୟ ଅପା, ସାର୍ ରହୁଥିଲୁ । ଅପରିଚିତ ପରିବେଶ ତ ବହୁ ଦୂରର କଥା । ନିଜଘର ପରି ଆପ୍ୟାୟିତ ହୋଇ ଫେରିଲୁ । ଟୁଟୁ, ପତ୍ନୀ ବୁଲି, ଝିଅ ବୁଲ୍‌ବୁଲ୍‌ର ବ୍ୟବହାରରେ ଆମେ ଆଦୌ ବାହାରେ ଅଛୁ ବୋଲି ଭାବି ପାରି ନ ଥିଲୁ । ଫେରିଲା ବେଳେ ମୁଁ ଟୁଟୁକୁ କହିଲି, 'ମୋତେ ଏଠି ମୋ ପୁଅ ବୋହୂଙ୍କ ପାଖରେ ରହିବା ପରି ଲାଗୁଥିଲା ।' ଟୁଟୁର ସାଙ୍ଗେ ସାଙ୍ଗେ ପ୍ରତ୍ୟୁତ୍ତର, 'ମାଉସୀ, ଯେତେବେଳେ ଇଚ୍ଛା ହବ ଏ ପୁଅ ଘରକୁ ଚାଲି ଆସିବେ ଷ୍ଟେସନ୍ ହଉ କି ଏୟାରପୋର୍ଟ ହଉ ମୁଁ ନିଜେ ଯାଇ ନେଇ ଆସିବି ।' ଦଇବ ସହିଲ ନାହିଁ ସେ ଅନାବିଳ ଆନ୍ତରିକ ସ୍ନେହ ପାଇବାକୁ । ଅକାଳରେ ଅକସ୍ମାତ ଟୁଟୁ ସବୁ ମାୟା ତୁଟେଇ ଆରପାରିକୁ ଚାଲିଗଲା । ଏବେ ବି ବିଶ୍ୱାସ କରିହୁଏ ନାହିଁ ।

ବର୍ତ୍ତମାନ ସାର୍, ଶ୍ରୀମତୀ ବେହେରା, ଟୁଟୁ କେହି ନାହାନ୍ତି । ପ୍ରାୟତଃ ବାପ୍ପୁ, ମୀନା, ସୀତୁଙ୍କ ସହ ଦେଖାହୁଏ । ଯାଏ ବେଳେ ବେଳେ ସାର୍‌ଙ୍କ ଘରକୁ । ଶୂନ୍ୟ ଲାଗେ ।

ଶେଷକଥାଟି ନ ଲେଖିଲେ ହେବ ନାହିଁ । ତାହା ମୋର ଆତ୍ମଗ୍ଲାନିର କଥା । ଆଗରୁ ଉଲ୍ଲେଖ କରିଛି ସେ କଥା । ଦୁଇ ଦୁଇ ଥର ଚେଷ୍ଟା କରି ସୁଦ୍ଧା ସାର୍‌ଙ୍କ ଅଧୀନରେ ଗବେଷଣା କରି ପାରିଲି ନାହିଁ । ମୋ ଭାଗ୍ୟରେ ନ ଥିଲା ସେ ସୁବର୍ଣ୍ଣ ସୁଯୋଗର ସଦୁପଯୋଗ କରିବା । ସେଥିପାଇଁ ବହୁତ ଅଯଥା କୈଫିୟତ୍ ଦେଇ ହେବ । ସାର୍‌ଙ୍କ ପ୍ରେରଣାରେ କୌଣସି ଶିଥିଳତା ନ ଥିଲା । ମୋତେ କେତେଥର ଭୁବନେଶ୍ୱରର ଅନେକ ଅନୁଷ୍ଠାନକୁ ଗବେଷଣା ସମ୍ବଳିତ ତଥ୍ୟ ଆହରଣ କରିବାକୁ ନେଇ ଯାଇଛନ୍ତି । କଲିକତାର ନେସ୍‌ନାଲ୍ ଲାଇବ୍ରେରୀକୁ ମୋ ପାଇଁ ଚିଠି ଲେଖି ଦେଇଛନ୍ତି । ସେଠାକୁ ମୁଁ କେତେଥର ଯାଇଛି । (ସେତେବେଳେ ମୋ ସ୍ୱାମୀ ଶ୍ରୀ ପ୍ରବୋଧ ଚନ୍ଦ୍ର ଭଂଜଦେଓ ସେଠାରେ କର୍ମରତ ଥିଲେ) । ତଥାପି ଗବେଷଣା ସଂପୂର୍ଣ୍ଣ କରିପାରିଲି ନାହିଁ । ଗୋବିନ୍ଦ ରଥଙ୍କର ଶତାଧିକ ବର୍ଷ ତଳର ରଚନା 'କରତାଳି' ସଂପାଦନା କଲାବେଳେ ସାର୍ ବହୁତ ସାହାଯ୍ୟ କରିଛନ୍ତି । ତାଙ୍କରି ପ୍ରୋତ୍ସାହନରେ ହିଁ ସେତିକି କରି ପାରିଥିଲି ।

ଡ. ବେହେରାଙ୍କର ସାରସ୍ୱତ କୃତି ଅପରିସୀମ, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା ଇତ୍ୟାଦି ସାହିତ୍ୟର ବହୁ ବିଭାଗରେ ଲେଖନୀ ଚାଳନା କରି ସେ ସଫଳ ହୋଇଛନ୍ତି । ବହୁ ସମ୍ମାନ, ବହୁ ପୁରସ୍କାର ପ୍ରାପ୍ତ ହୋଇଛନ୍ତି । ସେ ଜଣେ ବିଶିଷ୍ଟ ସାହିତ୍ୟିକ ହୋଇଥାଇ ପାରନ୍ତି, ଜଣେ ସୁଦକ୍ଷ ଅଧ୍ୟାପକ ହୋଇଥାଇ ପାରନ୍ତି, ମୋ ଅନୁଭୂତିରେ ସେ ଜଣେ ନିରୋଳା ଭଲ ମଣିଷ । ❖

କଲ୍ୟାଣୀନଗର
କଟକ

# ଜ୍ଞାନଦାତା : ଭୟତ୍ରାତା

ଡ. ମନ୍ଦାକିନୀ ଦାସ

ପି.ଏସ୍.ସି. ମୌଖିକ ପରୀକ୍ଷା ଆଉ ଦୁଇ ତିନିଦିନ ଥାଏ, ୧୯୮୩ ମସିହାକଥା ସେତେବେଳେ ମୁଁ ଟାଙ୍ଗୀ କଲେଜରେ ଥାଏ ଏବଂ ପ୍ରତିଦିନ କଟକରୁ ଟାଙ୍ଗୀ ଯିବା ଆସିବା କରୁଥାଏ । ନିକଟରେ ଏ ପରୀକ୍ଷା ଥିବାରୁ ମୁଁ ସାର୍‌ଙ୍କଠାରୁ କିଛି ବୁଝିବାକୁ ଚାହୁଁଥିଲି । ହାତରେ ସମୟ ନ ଥିଲା । ତେଣୁ କଲେଜରୁ ସିଧା ସାର୍‌ଙ୍କ ଘରକୁ ଯିବାକୁ ମନସ୍ଥ କଲି । ଦିନ ୨ଟା ଉପରେ ହେବ । ସାର ଭାତ ଖାଇ ବସିଛନ୍ତି ମୁଁ ତାଙ୍କ ଘରେ ପହଞ୍ଚିଗଲି । ଭୀଷଣଖରା, ଝାଞ୍ଜି ବହୁଛି । ଯାନବାହନ କିଛି ନାହିଁ । କିଛିବାଟ ଚାଲିଚାଲି ଯିବା ପରେ ଭାଗ୍ୟକୁ ରିକ୍‌ସା ଖଣ୍ଡେ ପାଇ ତାଙ୍କ ଘରେ ପହଞ୍ଚିଲି ଯେତେବେଳେ ସାର୍ ଅସମୟରେ ପୁଣି ଏତେ ଉତ୍ତପ୍ତ ବାତାବରଣ । ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମାଉସୀ ମଧ୍ୟ ମୋତେ ଦେଖି ବ୍ୟସ୍ତବିବ୍ରତ ହୋଇ ପାଣି ଗିଲାସେ ପିଇବାକୁ ଦେଇ ଟିକେ ଆଶ୍ୱସ୍ତି ହେଲାରୁ ସାର୍ ପଚାରିଲେ ଏତେ ଖରାରେ ଆସିଛ କିଛି ଅସୁବିଧା ହୋଇଛି କି ? ମୁଁ କହିଲି ସାର୍ ସେପରି କିଛି ନୁହଁ, କିନ୍ତୁ ପିଏସ୍‌ସି ମୌଖିକ ପରୀକ୍ଷା ଆଉ ଦୁଇଦିନ ପରେ, ତେଣୁ କିଛି ସନ୍ଦେହ ଥିବାରୁ ବୁଝିବାକୁ ଏ ଖରାବେଳଟାରେ ଚାଲିଆସିଲି, କ୍ଷମାକରିବେ । ସାର୍ ଖାଇ ଉଠିଥିଲେ କିନ୍ତୁ ସେଦିନ ମୁହୂର୍ତ୍ତଟିଏ ବିଶ୍ରାମ ନନେଇ ପ୍ରାୟ ଦୁଇତିନି ଘଣ୍ଟାଧରି ମୋର ସନ୍ଦେହଥିବା ବିଷୟରେ ଆଲୋଚନା କଲେ । ସେଦିନଟି ଥିଲା ମୋ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିନ କରଣ ସେଦିନ ମୋ ଗୁରୁଙ୍କଠାରୁ ପରୀକ୍ଷା ସଂକ୍ରାନ୍ତରେ ସବୁଠାରୁ ବଡ଼ ଉପଦେଶ ପାଇଥିଲି, ଯାହାକି ମୋର ମୌଖିକ ପରୀକ୍ଷା ପାଇଁ ସବୁଠାରୁ ମହତ୍ତ୍ୱ ରଖିଥିଲା ଓ କୃତକାର୍ଯ୍ୟ ହୋଇଥିଲି । ସାର୍ ସେଦିନ ମୋତେ କହିଥିଲେ ପରୀକ୍ଷକ ଯାହା ପଚାରିବେ ଉତ୍ତର ଭୁଲ କହିଲେ ମଧ୍ୟ କେବେ ଭୟ କରିବ ନାହିଁ, ଥତମତ ହେବନି, ଦୃଢ଼ମନା ହୋଇ ତୁମ ଯୁକ୍ତିକୁ ସାବ୍ୟସ୍ତ କରିବ । ତାକୁ ବିଭ୍ରାନ୍ତ କରିବା ପାଇଁ ପରୀକ୍ଷକ ଏଣୁତେଣୁ ପ୍ରଶ୍ନ ପଚାରି ପାରନ୍ତି, କିନ୍ତୁ ତୁମେ ନଡ଼ରି ତା'ର ଉତ୍ତର ଯାହାବି ହେଉ ନିଶ୍ଚୟ ଦେବ, ପ୍ରକୃତରେ ସାର୍ ଭଗବାନ ହୋଇ ଆଗରୁ

ମୋତେ ବାଟ ଦେଖାଇ ଦେଇଥିଲେ, ତେଣୁ ବାଟବଣା ହେଲିନାହିଁ । ମୋ କ୍ଷେତ୍ରରେ ଏପରି ଘଟିଲା ଯାହା ଉତ୍ତର ଦେଇ ମୁଁ ନିଜେ ଆଶ୍ଚର୍ଯ୍ୟ ହେଲି । ଜଣେ ପିଏସ୍‌ସି, ମେମ୍ବର ଏପରି ଏକ ଅବାନ୍ତର ପ୍ରଶ୍ନ କରି ଦୁଇଟିର ତୁଳନା କରିବାକୁ କହିଲେ । ମୁଁ ସେଦିନ ସାରଙ୍କ କଥାକୁ ସ୍ମରଣ କରି ତାଙ୍କୁ ଉତ୍ତର ଦେଇଥିଲି- 'ଭାତ ସଙ୍ଗେ ଘାଣ୍ଟ ତରକାରୀଙ୍କୁ କିପରି ତୁଳନା କରିବି । ପ୍ରଶ୍ନକର୍ତ୍ତା ମୋ ଉତ୍ତର ଶୁଣି ହସି ପକାଇଲେ । ପରେ ଜାଣିଲି ସେ ରସାୟନ ବିଜ୍ଞାନ ବିଭାଗର । ମୋର କହିବାର ତାତ୍ପର୍ଯ୍ୟ ଗୁରୁ ହିଁ ଛାତ୍ରଛାତ୍ରୀଙ୍କ ପାଇଁ ଏପରି ନିର୍ଭୟମାର୍ଗ ଦେଖାନ୍ତି । ଯେତେବେଳେ ହେଉ ଯେଉଁଠି ହେଉ ଛାତ୍ରର ଅଧିକାର ଅଛି ତା' ଗୁରୁଙ୍କଠାରୁ ସନ୍ଦେହ ମୋଚନ ପାଇଁ ଅନୁରୋଧ କରିବା । ସେ ଅନୁରୋଧ କେବେ ବ୍ୟର୍ଥ ଯାଏ ନାହିଁ କାରଣ ଗୁରୁ ହିଁ ଈଶ୍ୱର । ସେହିଦିନ ପରୀକ୍ଷା ପାଇଁ ବୁଝି ସାରଙ୍କଠାରୁ ମୁଁ ଫେରିବାକୁ ଉଦ୍ୟତ ହେଉଛି ସାର୍ ପୁଣି ପଚାରିଲେ- 'ତୁମେ ଏମ୍‌ପିସି କଲେଜର ସିଲଭର ଜୁବଲି ମେଗାଜିନ୍ ଓ 'ଭାରତିକା' ପତ୍ରିକା ରଖିଛ ତ ? ତୁମର ସେଠାରେ ଯେଉଁ ଲେଖା ବାହାରିଥିଲା ସେ ସବୁ ପିଏସ୍‌ସି ପରୀକ୍ଷାଦିନ ସଙ୍ଗରେ ନେଇଯିବ । ମୁଁ ଆଶ୍ଚର୍ଯ୍ୟ ହୋଇ ସାରଙ୍କୁ ଅନାଇଲି ଏଇଥିପାଇଁ ଯେ ସାର୍ ସେ ସବୁ ମନେ ରଖିଛନ୍ତି । ତା'ପରେ ସାରଙ୍କୁ କହିଲି ସେ ସବୁ କ'ଣ ହେବ ? ମୌଖିକ ପରୀକ୍ଷାଦିନ କେବଳ ଏମ୍.ଫିଲ୍ ଡିସରଟେସନଟି ସଙ୍ଗରେ ନେଇଯିବି, ସାର୍ ଜୋର ଦେଇ ସେଦିନ ମୋତେ କହିଲେ ସେ ସବୁର ଆବଶ୍ୟକତା, ମର୍ଯ୍ୟାଦା ଅଛି । ପବ୍ଲିକେଶନ ପାଇଁ କିଛି ନମ୍ବର ଦିଆଯାଏ । ଏକଥା ମୁଁ ପୂର୍ବରୁ ଜାଣି ନଥିଲି । ତା'ପରେ ସାରଙ୍କୁ କହିଲି ସେସବୁ ଏଠାରେ ନାହିଁ । ବାରିପଦାରେ ଅଛି । ଏହା ଶୁଣି ସାର୍ ତାଙ୍କ ବହିଥାକ ଖୋଜି ମୋତେ ସେ ପତ୍ରିକା ଦେଲେ, କହିଲେ ଏସବୁ ତୁମ କାମରେ ଲାଗିବ । କାମ ସରିଗଲା ପରେ ମୋତେ ଫେରାଇଦେବ । ବାସ୍ତବରେ ପରୀକ୍ଷାଦିନ ଯେତେବେଳେ ଜଣେ ମେମ୍ବର ମୋର ଏମ୍.ଫିଲ୍ ଥେସିସ୍ ଓ ପବ୍ଲିକେଶନ ମାଗିଲେ ସେତେବେଳେ ମୁଁ ପୁଣି ମୋର ଅନ୍ତର ମଧ୍ୟରେ ଗୁରୁଙ୍କ ନିକଟରେ କୃତଜ୍ଞତ ଜଣାଇ ଏସବୁ ତାଙ୍କୁ ଦେଖାଇଲି । ଗୁରୁଙ୍କ ଉପଦେଶ କେତେ ଉପକାର କରେ ଜୀବନରେ ଓ ଗୁରୁ ଦେଖାଉଥିବା ମାର୍ଗ କେତେ ଗୁରୁତ୍ୱପୂର୍ଣ୍ଣ ଜୀବନରେ ତାହା ମୁଁ ଅଙ୍ଗେ ନିଭାଇଛି । ପାଠ ପଢ଼ାଇବାଠାରୁ ଗବେଷଣା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସାରଙ୍କ ଉପଦେଶ ଓ ସାହାଯ୍ୟ ପାଇ ଜୀବନରେ ଆଗେଇଛି । ତାଙ୍କ ପରି ଜଣେ ଦରଦୀ, ନିଷ୍କାପଟ ମଣିଷ ପୁଣି ଛାତ୍ରଛାତ୍ରୀଙ୍କ ସହ ପାରିବାରିକ ସଂପର୍କ ଯୋଡ଼ି ଛାତ୍ରପ୍ରାଣ ଗୁରୁଟିଏ ପାଇବା ଏ ଦୁନିଆରେ ବିରଳ ।

ଗବେଷଣା କରିବା ପ୍ରସଙ୍ଗରେ ପୁଣି ମୋର ଗୋଟିଏ କଥା ମନେପଡୁଛି । ସାର୍ ଥରେ କହିଥିଲେ, ଗବେଷଣା କରି ଡିଗ୍ରୀ ହାସଲ କରିବାଟା ବଡ଼କଥା ନୁହେଁ । ଗବେଷଣା

କରିବା ସମୟରେ ଓଡ଼ିଶା ବାହାରକୁ ଯାଇ ବଡ଼ ବଡ଼ ଲାଇବ୍ରେରୀ ଦେଖ, ବହିଦେଖ, ସେଠାରେ ପଢ଼ । ଦେଖ, କିପରି ପାଠପଢ଼ା ହୁଏ, ସ୍କଲାରମାନେ କିପରି ପାଠପଢ଼ନ୍ତି । ଗବେଷଣା କରନ୍ତି, ତା'ହେଲେ ତୁମର କୂପ ମଣ୍ଡୂକତ୍ୱ କଟିବ । ତାଙ୍କରି ପ୍ରେରଣାରୁ ମୁଁ କଲିକତା ନେସନାଲ ଲାଇବ୍ରେରୀରେ ଦୁଇବର୍ଷ ଗ୍ରୀଷ୍ମଛୁଟିରେ ୨ମାସ ଅଧ୍ୟୟନ କରିଛି । ସେଠାର ପରିବେଶ ଏକାନ୍ତ, ନିରବ ଓ ଶାନ୍ତ । ପୁସ୍ତକ ଯୋଗାଇବାକୁ ଖୁବ୍ କମ୍ ସମୟ ଲାଗିଥାଏ । ଅଧ୍ୟୟନ ସାରି ସ୍ୱତନ୍ତ୍ର ଟେବୁଲରେ ବହିଛାଡ଼ି ଆସିବାକୁ ହୁଏ । ଏବେ ପରି ସେତେବେଳେ ଜେରକ୍ସ ନଥିଲା ତେଣୁ ହାତରେ ଟିପାଟିପି କରିବାକୁ ପଡୁଥାଏ । ଏ ଲାଇବ୍ରେରୀ ଗବେଷଣା କାର୍ଯ୍ୟକୁ ବହୁଭାବେ ସାହାଯ୍ୟ କରିଥିଲା । ବାସ୍ତବରେ ଭାରତର ଏକ ବଡ଼ ଲାଇବ୍ରେରୀରେ ପଢ଼ିବାର ଅନୁଭୂତି ଲାଭ କରିଥିଲି ସାର୍‌ଙ୍କ ଆଦେଶ ପାଇ ।

ଗବେଷଣା ଦୁଇଟି ଦୃଷ୍ଟିରୁ କରାଯାଏ । ଗୋଟିଏ ହେଉଛି ପୂର୍ବ ଆବିଷ୍କୃତ ଭୂମିକୁ ଏକ ନୂତନ ଆଲୋକର ଦେଖିବା କିମ୍ବା ଏକ ନୂତନ ଭୂମିକୁ ଆବିଷ୍କାର କରିବା । ଓଡ଼ିଶାର ସାନ୍ତାଳୀ ସଂସ୍କୃତି ମୋର ଗବେଷଣାର ବିଷୟ ଥିଲା । ଏ ଜନସମାଜରେ ଏପରି କେତେକ ବିଶ୍ୱାସ ଅଛି ଯାହା ପଛରେ ବୈଜ୍ଞାନିକ କାରଣ ଥିବାର ଜଣାଯାଏ ନାହିଁ । ଏହି ଧରଣର ବିଶ୍ୱାସକୁ ଅନ୍ଧବିଶ୍ୱାସ ବୋଲି କୁହାଯାଏ । ମାନବସମାଜରେ ପ୍ରାଚୀନକାଳରୁ ସାଂପ୍ରତିକ ସମୟ ପର୍ଯ୍ୟନ୍ତ ଏ ବିଶ୍ୱାସ ଚାଲିଆସିଛି । ଆଦିବାସୀ ସମାଜ ଏପରିକି ଆମେ ମଧ୍ୟ ଏହାକୁ ପରିହାର କରିପାରୁନାହୁଁ । ସାର୍ ସେଥିପାଇଁ ଏ ଅନ୍ଧବିଶ୍ୱାସ, ରୀତିନୀତିର ଘୋର ବିରୋଧୀ ଥିଲେ । ସାର୍ କହୁଥିଲେ ପୂର୍ବରୁ ଜ୍ଞାନବିଜ୍ଞାନର ଅନଗ୍ରସରତା ହେତୁ ମଣିଷ ସହଜଭାବେ ଯେଉଁ ବିଶ୍ୱାସ ପୋଷଣ କରିଛି ତାହା କାଳକ୍ରମେ ସାମାଜିକ କୁସଂସ୍କାରରେ ପରିଣତ ହୋଇଛି ଓ ମଣିଷର ରକ୍ଷଣଶୀଳ ମନ ତାକୁ ନିର୍ବିବାଦରେ ଗ୍ରହଣ କରିନେଇଛି । ଏକବିଂଶ ଶତାବ୍ଦୀରେ ଆମେ ଏହାକୁ ମନରୁ ବିତାଡ଼ିତ କରି ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର ଆଲୋଚନା କରି ଥେସିସ୍ ଲେଖିବାକୁ ଉପଦେଶ ଦେଇଥିଲେ । ମୁଁ ମଧ୍ୟ ଯଥାସାଧ୍ୟ ଏ ଦିଗରେ ଚେଷ୍ଟା କରିଛି ଥେସିସ୍ ଲେଖା ସରିଥାଏ, ନୂଆ ବହିଟିଏ ମିଳିଗଲା, କିଛି ନୂଆ କଥା ନୂଆ ତଥ୍ୟ ସେଠାରୁ ପାଇଲି । ମିଳିଥିବା ତଥ୍ୟଟି ଥେସିସ୍‌ରେ କେମିତି ଯୋଡ଼ିବି ସେ ଚିନ୍ତାରେ ଥାଏ । ସାର୍‌ଙ୍କୁ ଏକଥା କହିବାରୁ ସାର୍ ହସି ହସି ସୁନ୍ଦର ମନ୍ତବ୍ୟଟିଏ ସେଦିନ ଦେଇଥିଲେ ତାହା ଏବେବି ମୋ କର୍ଣ୍ଣ ଗହ୍ୱରରେ ଝଙ୍କୃତ ହେଉଛି । କହିଥିଲେ- ଗବେଷଣାରେ ପୂର୍ଣ୍ଣାଙ୍ଗ କୋଣାର୍କ ଗଢ଼ିବାକୁ ଚେଷ୍ଟା କରନି । ଯାହା ନୂଆ ତଥ୍ୟ ପାଉଛ ତାହା ପରେ ପ୍ରବନ୍ଧ ଆକାରରେ ପ୍ରକାଶ କରିବ । କେବଳ ମୋ ପାଇଁ ନୁହଁ ପ୍ରତ୍ୟେକ ଛାତ୍ରଛାତ୍ରୀ ପାଇଁ ସେ ଥିଲେ ଯଥାର୍ଥ ମାର୍ଗଦର୍ଶକ, ଆଶୀର୍ବାଦର ଅଭୟ ମୁଦ୍ରା ।

ସାର୍ ଥିଲେ ସଂପୂର୍ଣ୍ଣ ସ୍ୱତନ୍ତ୍ର । ଶିକ୍ଷକତାକୁ ବ୍ରତ ଭାବେ ଗ୍ରହଣ କରିଥିଲେ, ବୈଷୟିକ ଆବଶ୍ୟକତାକୁ ସେ ପ୍ରାଧାନ୍ୟ ଦେଉ ନଥିଲେ। ମଣିଷକୁ, ଛାତ୍ରଛାତ୍ରୀଙ୍କୁ ସ୍ନେହ, ଶ୍ରଦ୍ଧା ଓ ଆତ୍ମୀୟତାରେ ଆପଣାର କରିବାର ଅପୂର୍ବ ଶକ୍ତିଥିଲା ତାଙ୍କର । ମଣିଷପଣିଆର ଏକ ନିଆରା ପ୍ରତିମୂର୍ତ୍ତି । ଏବେ ଦିନେ ସାର୍‌ଙ୍କ ପୁରୁଣାଚିଠିରୁ ଜାଣିବାକୁ ପାଇଲି ଫୁଲବାଣୀର କନ୍ଧ ଛାତ୍ରଟିଏ ପୋଷ୍ଟକାର୍ଡ଼ରେ ଚିଠି ଲେଖିଛି ସାର୍‌କୁ । ସେ ଲେଖିଛି ଅତି ଆଶା ବିଶ୍ୱାସରେ ଗୁରୁଙ୍କ ପାଖକୁ ଏହି ଯେ ତା'ର କୁଡ଼ିଆ ଘରଟି ମହାଜନ ନିଲାମ କରିନେବ ଯଦି ସାର ତାକୁ ଟ.୩୦୦ ସାହାଯ୍ୟ କରିବେ ସେ ତା' ଘରଟି ଫେରିପାଇବ । କେତେ ଆଶା ଭରସାରେ ହାତ ପାତିଛି ଗୁରୁଙ୍କ ପାଖରେ । ଗୁରୁ ମଧ୍ୟ ତାକୁ ନିରାଶ ନ କରି ତାର ଭଗବାନ ସାଜି ଟ.୩୦୦ ମନିଅର୍ଡ଼ର କରି ପଠାଇଛନ୍ତି ଛାତ୍ରପାଖକୁ । ଛାତ୍ରଟି କରଜ ଋଣରୁ ଘରକୁ ମୁକୁଳାଇ ଗୁରୁଙ୍କ ଚିଠିରେ ନତମସ୍ତକ ହୋଇ ଜଣାଇଛି ।

ଗୁରୁ-ଶିଷ୍ୟ ସଂପର୍କର ଏକ ସ୍ୱତନ୍ତ୍ର ନିଦର୍ଶନ । ସେହିପରି ଅନ୍ୟ ଏକ ଚିଠି ଆଖିରେ ପଡ଼ିଲା । ସାର୍‌ଙ୍କ ସହ ପରିଚିତ ନଥାଇ ଜାମସେଦପୁରରୁ ଚିଠିଟିଏ ଦେଇଛି ସାର୍‌ଙ୍କ ପାଖକୁ । ଲେଖିଛି ତା'ର ରିସର୍ଚ୍ଚ କାମ ପାଇଁ ଉପାଦାନ ସଂଗ୍ରହରେ ସାହାଯ୍ୟ ପାଇଁ । ଲେଖାର ମୂଳ ଉତ୍ସଟିଏ ପାଇବାକୁ ସାର୍‌ଙ୍କୁ ନିବେଦନ କରିଛି କେତେ ଆଶାରେ । ପିଲାଟି କାହାଠାରୁ ଶୁଣିଥିଲା ଅପରିଚିତ ହେଲେ ମଧ୍ୟ ସାର୍ ଚିଠିର ଉତ୍ତର ନିଶ୍ଚୟ ଦିଅନ୍ତି । ସେଇ ଭରସାରେ ଚିଠି ଲେଖିଛି। ସାର୍ ମଧ୍ୟ ତାକୁ ନିରାଶ କରିନାହାନ୍ତି । ଅପରିଚିତ ପିଲାଟିକୁ ଅଳ୍ପଦିନ ମଧ୍ୟରେ ତାହା ଯୋଗାଇଦେବାକୁ ପ୍ରତିଶ୍ରୁତି ଦେଇଛନ୍ତି । ସେ ପିଲାଟି ପୁଣି ଆବଶ୍ୟକ ଉପାଦାନ ପାଇ କୃତଜ୍ଞତା ଭରା ଚିଠିଟିଏ ଲେଖିଛି ଗୁରୁଙ୍କୁ ଏହାହିଁ ତ ସାରଙ୍କର ମହତ ପଣିଆ ।

ଓଡ଼ିଆ ସାହିତ୍ୟ ଜଗତରେ ଚିରବନ୍ଦନୀୟ ଓ ଚିରସ୍ମରଣୀୟ ମୋ ଗୁରୁଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ମୁଁ ତାଙ୍କୁ ବିନମ୍ର ଶ୍ରଦ୍ଧାଞ୍ଜଳି ଓ ଭକ୍ତିପୂତ ପ୍ରଣାମ ନିବେଦନ କରୁଛି । ❖

# ଅସରନ୍ତି ସ୍ମୃତି

ସରୋଜିନୀ ମିଶ୍ର

ଅତ୍ୟନ୍ତ ସରଳ, ତରଳ, ସ୍ନେହ ଛଳ ଛଳ, ସନ୍ତାନ ବତ୍ସଳ, ଅବିଚଳ ସାରସ୍ୱତ ସାଧନାରେ ମଗ୍ନ ସମସ୍ତଙ୍କ ପ୍ରତି ଅନାବିଳ ଭାବ ବିହ୍ୱଳ, ସ୍ୱୀୟ ଜୀବନରେ ନୀତିନିଷ୍ଠ, କର୍ମପ୍ରବଣ, ସମୟାନୁବର୍ତ୍ତିତାର ଦୃଷ୍ଟାନ୍ତ ଉଜ୍ଜ୍ୱଳ ତଥା ସୃଜନ ଓ ସଂଗଠନ ଉଭୟରେ ତପଃଶୀଳ, ଅନନ୍ୟ-ଅସାଧାରଣ ପିତୃତୁଲ୍ୟ ଡ. କୃଷ୍ଣଚରଣ ବେହେରା । ବିରଳ ସେ ବିଶାଳ ବ୍ୟକ୍ତିତ୍ୱ ଦୀର୍ଘ ଏକ ବର୍ଷ ହେଲା ଭୂମିରୁ ଭୂମାକୁ ଚାଲିଯାଇଛନ୍ତି । ବିଶ୍ୱାସ ଘରେ ଖାଲି ଅବସୋସ ଭରା ଦୀର୍ଘଶ୍ୱାସ । ସେ ଆଉ ଆମ ଗହଣରେ ନାହାନ୍ତି । ଆମକୁ ସାଧନାନିଷ୍ଠ ହେବାକୁ ଦିଗ୍‌ଦର୍ଶନ ଦେବାକୁ ସମୟ ପୂର୍ବରୁ ସଚେତନତା ନିମନ୍ତେ ଦୂରଭାଷର ଘଣ୍ଟି ବଜେଇବାକୁ, ଉଚ୍ଛ୍ୱସିତ କଣ୍ଠରେ ଉଚ୍ଚହାସ୍ୟ ସହିତ ଭାବ ଗମ୍ଭୀର ପ୍ରେରଣା ଦେବାକୁ ଆଉ ସେ ଇହଲୋକରେ ନାହାନ୍ତି । ହେଲେ ସହସ୍ର ମୁଖରେ ତାଙ୍କର ପ୍ରଶସ୍ତି ସହସ୍ର ମନରେ ତାଙ୍କର ସ୍ମୃତି, ସହସ୍ର ସାଧକଙ୍କ ସାଧନା ପଥରେ ତାଙ୍କ ପ୍ରେରଣାର ପଂକ୍ତି ଆଜି ଅନୁରଣିତ ହେଉଛି । ସତରେ ସେ ଥିଲେ କୋଟିଏ ଶାମୁକା ମଧ୍ୟରେ ଗୋଟିଏ ଯାହାର ଗର୍ଭରେ ଥିଲା ମୁକ୍ତା । ସେ ଥିଲେ କୋଟିଏ ହସ୍ତୀ ମଧ୍ୟରେ ଗୋଟିଏ ଯାହାର ମଥାରେ ଥିଲା ମୋତି । ସେ ଥିଲେ ଜ୍ଞାନ ତପସ୍ୱୀ ସୃଜନଶୀଳ ଅନ୍ତଃସଲୀଳା ଫଲ୍‌ଗୁଧାରା । ବୈଚିତ୍ର୍ୟପୂର୍ଣ୍ଣ ବିପୁଳ ସୃଷ୍ଟି ସମ୍ଭାରର ରୂପକାର । ଗାଳ୍ପିକ, କବି, ପ୍ରାବନ୍ଧିକ ସର୍ବୋପରି ସ୍ୱୟଂ ଗବେଷକ ଓ ଅନେକ ଗବେଷକଙ୍କର ନିରପେକ୍ଷ ଦିଗ୍‌ଦର୍ଶକ । ସାହିତ୍ୟ ଆଲୋଚନା ସଂପାଦନା ଆଦି ବଳିଷ୍ଠ ଗୁରୁଗମ୍ଭୀର କାର୍ଯ୍ୟ ମଧ୍ୟରେ ମଜ୍ଜି ରହି ନୈସର୍ଗିକ ଆନନ୍ଦ ଲାଭ କରୁଥିବା ସେ ମହାନ ବ୍ୟକ୍ତିତ୍ୱ ଥିଲେ ଓଡ଼ିଆ ଗବେଷଣା ପରିଷଦର ସଭାପତି । ଯିଏକି ଦିନରାତି ଏକାକାର କରି ମର୍ଯ୍ୟାଦାବନ୍ତ କରି ଗଢ଼ି ତୋଳୁଥିଲେ ଅନୁଷ୍ଠାନକୁ ଓ ତା'ର ମୁଖପତ୍ର 'ଏଷଣା'କୁ ।

ସାମଗ୍ରିକ ଭାବରେ କୀର୍ତ୍ତିମାନ ସ୍ରଷ୍ଟା ଡ. କୃଷ୍ଣଚରଣ ବେହେରା ସ୍ୱସୃଜନ ଅପେକ୍ଷା ଉଦୀୟମାନ ସର୍ଜ୍ଜନଶୀଳ ପ୍ରାଣର ଅଙ୍କୁରଣ ଓ ପରିସ୍ଫୁଟନ ପାଇଁ ଅଧିକ ଯତ୍ନଶୀଳ ଥିଲେ । ବୃତ୍ତିରେ ମୁଁ ଉଚ୍ଚପ୍ରାଥମିକ ବିଦ୍ୟାଳୟର ଶିକ୍ଷୟିତ୍ରୀ । ଆଜି ରେଲୱେ ସେଟଲମେଣ୍ଟ ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷୟିତ୍ରୀ ଭାବରେ କର୍ମରତ । କିନ୍ତୁ ସାର୍‌ଙ୍କ ସହିତ

ମୋର ଦୀର୍ଘ ୨୦/୨୨ ବର୍ଷର ସଂପର୍କ ଯେତେବେଳେ ମୁଁ ଥିଲି ସତ୍‌ସଙ୍ଗ ନୋଡ଼ାଲ ୟୁ.ପି. ସ୍କୁଲର ଶିକ୍ଷୟିତ୍ରୀ । ଘରୋଇ ଭାବରେ ଆଇ.ଏ.ଠାରୁ ଏମ୍.ଏ.ପାସ୍ କରିସାରିବା ପରେ ପି.ଏଚ୍.ଡ଼ି. କରିବାର ପ୍ରବଳ ଆଗ୍ରହ ନେଇ ମୁଁ ଯାଇଥିଲି ସାର୍‌ଙ୍କ ପାଖକୁ । ମୋତେ ସାର୍ କ'ଣ ଆକଳନ କରିଥିଲେ କେଜାଣି ଆତ୍ମୀୟତାଭରା ହସ ହସ ମୁହଁରେ କହିଥିଲେ ଲକ୍ଷେ ଟଙ୍କାର ମୁଣ୍ଡଟିକୁ ଶହେ ଟଙ୍କିଆ କାମରେ ଲଗାନ୍ତୁ ନାହିଁ । ମୁଁ ବୁଝିପାରି ନଥିଲି । ଅବୁଝା ଆଖିରେ ଭୟଶଙ୍କୁଳ ଭାବରେ ଚାହିଁ ରହିଲି । ସାର୍ କହିଲେ, ଆପଣଙ୍କ ଭିତରେ ବହୁତ ବଡ଼ ପ୍ରତିଭା ଅଛି ଆପଣ ଘର କାମ ପାଇଁ ଲୋକ ରଖିଦିଅନ୍ତୁ । ସବୁତକ ସମୟ ସାହିତ୍ୟ ସାଧନାରେ ଢାଳି ଦିଅନ୍ତୁ । ତେବେ ଆପଣ ପ୍ରକୃତରେ ଜଣେ ଗବେଷକ ହୋଇପାରିବେ । ବିଷୟ ନିର୍ବାଚନଠାରୁ ଆରମ୍ଭ କରି ଅଜସ୍ର ଦିଗ୍‌ଦର୍ଶନ ମୋତେ ଦେଇଥିଲେ ସାର୍ । କେତେ କ'ଣ କରିବାକୁ ହେବ ସବୁ ଗୋଟି ଗୋଟି ଲେଖି ଆଣି ବର୍ଷେ ବ୍ୟାପୀ 'ବ୍ରାହ୍ମଧର୍ମ' ଉପରେ କାମ କରିଛି । ମୋର ଦୁର୍ଭାଗ୍ୟ ମାତ୍ର ୨ ପର୍‌ସେଣ୍ଟ ମାର୍କ ଅଭାବରେ ମୋର ପି.ଏଚ୍.ଡ଼ି. ପାଇଁ ରେଜିଷ୍ଟ୍ରେସନ ହୋଇପାରିଲାନି । ସାର୍, କିନ୍ତୁ କହିଥିଲେ, ରେଜିଷ୍ଟ୍ରେସନ ନ ହେଉ ଏ ବହି ଛପା ହେଉ, ଗବେଷଣାତ୍ମକ ରଚନାର ମୋହର ମୁଁ ଦେବି । ଆଜି ସେ ସମୟ ନାହିଁ । ସୁଅ ମୁହଁର ପତର ପାଲଟିଯାଇଛି ମୁଁ ।

ଡ. ବେହେରା 'ଅନନ୍ତ ନିର୍ଝର' ତ୍ରୈମାସିକ ସାହିତ୍ୟ ପତ୍ରିକାର ସମ୍ପାଦନା-ଉପଦେଷ୍ଟା, କହିଥିଲେ, ଅନନ୍ତକାଳ ପର୍ଯ୍ୟନ୍ତ ଏହି ସୁନ୍ଦର ପତ୍ରିକାଟିକୁ ଚଳାଇ ରଖିବ । ରିଷ୍ଟ ଲଗାଇବାକୁ ଦେବନାହିଁ । ପ୍ରତି ସଂଖ୍ୟାର ଦିନ ଗଣନାଥାଏ ସାର୍‌ଙ୍କ ମନରେ । ନିଜେ ବାରମ୍ବାର ଫୋନ୍ କରି ପତ୍ରିକାର ସ୍ଥିତି ପ୍ରଗତି ବୁଝନ୍ତି । ଉନ୍ନତମାନର କରିବାକୁ ଉପଦେଶ ଦିଅନ୍ତି । ଗଠନମୂଳକ ମନ୍ତବ୍ୟ ଦିଅନ୍ତି । ଏତେ ପଠନଶୀଳ, ମନନଶୀଳ ସେ ବୟସର ପ୍ରଭାବ କେବେ ମୁଁ ଦେଖିନି ସାର୍‌ଙ୍କ ପାଖରେ । କେମିତି ଏକ ଜ୍ୟୋତି ନିଃସୃତ ହେଉଥାଏ ତାଙ୍କ ମୁଖମଣ୍ଡଳରୁ । ସେଥିରେ ଥାଏ ଅନାବିଳ ଆନନ୍ଦର ଅମୃତମୟ ସ୍ପର୍ଶ । ପ୍ରେରଣାର ସେ ଉତ୍ସ ଆଉ ଆମ ଗହଣରେ ନାହାନ୍ତି ସତ, ଶରୀରଟି ଛାଡ଼ି ମନ ଜଗତରେ ପ୍ରଚ୍ଛନ୍ନ ଭାବରେ ରହିଛନ୍ତି । ପ୍ରେରଣା ଦେଉଛନ୍ତି, ଆଗେଇ ଚାଲ... ଆଗେଇ ଚାଲ । ଆହୁରି ଅନେକ କାମ କରିବାକୁ ଅଛି । ସେ ନିଜେ ଥିଲେ ସାଧନା ସିଦ୍ଧିର ଅସରନ୍ତି ଭଣ୍ଡାର ଆଜି ତାଙ୍କ ସ୍ମୃତି ଅସରନ୍ତି ପାଲଟି ଯାଇଛି । ଶେଷରେ ଏତିକି...

ଦୂର ଆକାଶର କେଉଁ ତାରା ତୁମେ / ପାରୁନି ତ ମୁହିଁ ଜାଣି
କୃତାଞ୍ଜଳି ପୁଟେ ମାଗୁଛି ଆଶିଷ / ସେହି ଉପଦେଶ ବାଣୀ । ❖

ସମ୍ପାଦିକା, 'ଅନନ୍ତ ନିର୍ଝର'
ନେତାଜୀ ନଗର, ମଧୁପାଟଣା, କଟକ-୧୦
ମୋ- ୯୪୩୯୨୮୨୮୨୯

# ସ୍ଥିତପ୍ରଜ୍ଞ ମନୀଷୀ

ଡ. ଶିବପ୍ରସାଦ ଖୁଣ୍ଟିଆ

ସାର୍‌ଙ୍କ ସହିତ ଆମର ପାରିବାରିକ ସଂପର୍କ । ଆମେ ହେଲୁ ପରସ୍ପରର ସମୁଦି । ଆମର ଦୁଇ ଝିଆରୀ ତାଙ୍କର କୁଳବଧୂ । ବଡ଼ର କନ୍ୟାଦାନ ଆମ ହାତରେ ହୋଇଥିଲା । କନ୍ୟାଦାନ ପରେ ଦୁଇ ସମୁଦି କୋଳାକୋଳି ହେବାର ଦୃଶ୍ୟ ଆମେ ଯେତେବେଳେ ଫଟୋରେ ଦେଖିଲୁ ଅଭିଭୂତ ହୋଇପଡ଼ିଲୁ । ଆମ ପରି ଜଣେ ଛଅଫୁଟିଆ ପୃଥୁଳକାୟ ମାନବ, ସାର୍‌ଙ୍କ ପରି କ୍ଷଣକାୟ ବ୍ୟକ୍ତି ବିଶେଷଙ୍କୁ କୁଣ୍ଢାକୁଣ୍ଢି ବେଳର ଦୃଶ୍ୟରେ ମନେ ହେଉଥାଏ ଯେପରି ଆମେ ତାଙ୍କୁ କାଖେଇ ଧରିଛୁ । ଦୁର୍ବଳ, କୃଷ୍ଣରଙ୍ଗର ଶରୀରଧାରି ଏହି ଅସାଧାରଣ ମହାଶୟଙ୍କ ସମ୍ବନ୍ଧରେ ଧୀରେ ଧୀରେ ଅବଗତ ହେବାରେ ଲାଗିଲୁ; ସେ ଯେଉଁ ଉତ୍ତମ ବୌଦ୍ଧିକ ଶିଖରରେ ଉପନୀତ ହୋଇ ସାରିଥିଲେ ତା' ତୁଳନାରେ ଆମେ ଅଧ୍ୟାପନା କରୁଥିଲେ ମଧ୍ୟ ନିଜକୁ ତାଙ୍କ ନିକଟରେ କ୍ଷୁଦ୍ର ମନେକରି ସ୍ୱାଭାବିକ ଭାବେ ତାଙ୍କୁ ଦେଖିଲେ ସ୍ୱତଃ ମୁଣ୍ଡ ନଇଁଯାଏ 'ସାର୍' ବ୍ୟତିରେକ କେବେ ହେଲେ ତାଙ୍କୁ ଆଉ କିଛି ସମ୍ବୋଧନ କରିନାହୁଁ । ସେ ଆମ ନାମ ଧରି ଡାକୁଥିଲେ ।

ଆମର ବିଶେଷ ସାମାଜିକ ସଂପର୍କ ନାହିଁ । କାହିଁକି କେଜାଣି ପିଲାଦିନୁ ଏହିପରି । ଆମର ସଂପର୍କୀୟ ଓ ବନ୍ଧୁବାନ୍ଧବମାନଙ୍କ ସହିତ ଦେଖା ସାକ୍ଷାତ ପ୍ରାୟ ନ ଥାଏ ହେଲେ ଚଳେ । ସାର୍ ତାଙ୍କର ସାରସ୍ୱତ ସାଧନାରେ ବୁଡ଼ି ରହିଥିଲାବେଳେ ଆମେ ଟିକେ ମଠ ମନ୍ଦିର ସହିତ ଓତଃପ୍ରୋତ ହୋଇଥାଉ । ସାର ଥରେ କୌଣସି ଏକ ସାମାଜିକ ଉତ୍ସବରେ ଜଟଣୀ ଆସିଥାଆନ୍ତି । ଆମେ ବସି ଦୁଃଖ ସୁଖ ହେବା ଭିତରେ ସାର ପଚାରିଥିଲେ ଯେ ଆମେ କାହିଁକି ବନ୍ଧୁବାନ୍ଧବମାନଙ୍କ ସହିତ ଯୋଗାଯୋଗ ରଖୁନାହୁଁ । ଏକ ଦାର୍ଶନିକ ଉତ୍ତର ଦେବାକୁ ଯାଇ ଆମେ କହିଥିଲୁ 'ଯାହାଙ୍କ(ଈଶ୍ୱର) ସହିତ ସମସ୍ତଙ୍କର ସଂପର୍କ ଅଛି, ଆମେ ତାଙ୍କ ନିକଟତର ହେବାକୁ ଅର୍ଥାତ୍ ସଂପର୍କ ଯୋଡ଼ିବାର ପ୍ରୟାସ କରୁଛୁ, ତେଣୁ ସମୟ ନିଅଣ୍ଟ ପଡୁଛି । ଏହି ଉତ୍ତର ମାଧ୍ୟମରେ ଆମେ ସାର୍‌ଙ୍କୁ ଏକ ନିରବ ପ୍ରଶ୍ନ ପଚାରିଥିଲୁ ଯେ ସେ କାହିଁକି ଅବସର ନେଲା ପରେ ମଧ୍ୟ ଈଶ୍ୱରଙ୍କର ସାନ୍ନିଧ୍ୟକୁ ଯାଇ ନାହାନ୍ତି ? ତାଙ୍କୁ କେବେହେଲେ ମଠ ମନ୍ଦିରକୁ ଯାଇ ଓଷା ଉପାସ ଓ ଉପାସନା କରିବା

କେହି ଶିଖୁ ନାହାନ୍ତି । ଯେହେତୁ ତାଙ୍କର ଏହି ନାସ୍ତିକ ସ୍ୱଭାବ ବିଷୟରେ ଆମେ ଅବଗତ ଥିଲୁ, ତାଙ୍କୁ ଏହିପରି ଏକ ମାର୍ମିକ ଉତ୍ତର ଦେଇ, ଈଶ୍ୱରଙ୍କ ପ୍ରତି ତାଙ୍କର ଦୃଷ୍ଟି ଆକର୍ଷିତ କରାଇବାର ଏକ ବିଫଳ ପ୍ରୟାସ କରିଥିଲୁ । ତା'ପରେ ସାର୍ ତାଙ୍କ ବକ୍ତବ୍ୟରେ ଯେଉଁ ସାରଗର୍ଭକ ମତାମତ ଦେଲେ, ତାକୁ ଶୁଣି ଆମର ମନେହେଲା, ଅଯଥାରେ ଆମେ ନିଘୋଡ଼ ନିଦରେ ଶୋଇଥିବା ଜଙ୍ଗଲ ରାଜାର ଲାଙ୍ଗୁଡ଼କୁ ହଲେଇ ଦେଲୁ । ସାର୍ ସେଦିନ କହିଥିଲେ ତାଙ୍କୁ ହୃଦୟଙ୍ଗମ କରିବା ପାଇଁ ଆମ ଶରୀର ପରି ପୃଥୁକାୟ ମସ୍ତିଷ୍କକୁ କିଛି ସମୟ ଲାଗିଲା । କିନ୍ତୁ ଯେତେବେଳେ ବୁଝି ପାରିଲୁ ସ୍ୱତଃ ସମ୍ମାନ ଓ ଭକ୍ତିରେ ତାଙ୍କ ବ୍ୟକ୍ତିତ୍ୱ ଆଗରେ ମୁଣ୍ଡ ନଇଁଗଲା । ତାଙ୍କ ବକ୍ତବ୍ୟର ସାରତତ୍ତ୍ୱ ହେଲା- ଗୀତାରେ ଶ୍ରୀକୃଷ୍ଣ, ଅର୍ଜୁନଙ୍କୁ ଯୋଗ ବା ଈଶ୍ୱରଙ୍କ ସହିତ ସଂଯୁକ୍ତ ହେବାର ଅନେକ ମାର୍ଗ ଦର୍ଶାଇ ଅଛନ୍ତି ତନ୍ମଧ୍ୟରୁ କର୍ମଯୋଗ ଅନନ୍ୟ । ସାର୍ କର୍ମକୁ, ସାରସ୍ୱତ ସାଧନାକୁ ଉପାସନା ରୂପେ ଗ୍ରହଣ କରିଥିଲେ । ସାହିତ୍ୟ ଆଲୋଚନା, ସମାଲୋଚନା, ମାଧ୍ୟମରେ ଓଡ଼ିଆ ଭାଷାର ଉନ୍ନତି ବିଧାନର ସେ ଥିଲେ ଜଣେ ଧୂରୀଣ ବିନ୍ଧାଣୀ । ଅସଂଖ୍ୟ ସାହିତ୍ୟ ଅନୁରାଗୀ, ଭାଷାବିତ୍ ଓ ଭାଷାପ୍ରେମୀଙ୍କୁ ଉଦ୍‌ବୋଧନ ଓ ପ୍ରେରଣା ଦେଇ ସେ ଭାଷା ଆନ୍ଦୋଳନକୁ ପରିପୁଷ୍ଟ କରିଥିଲେ । ଆଜିକାଲି ପରି ଚାରିଜଣ ବ୍ୟକ୍ତିଙ୍କୁ ସଚିବାଳୟ ସମ୍ମୁଖରେ ହାତରେ ବ୍ୟାନର ଧରେଇ ସେଇ ଫଟୋକୁ ଖବରକାଗଜରେ 'ଏତେ' ଦିନରେ ପହଞ୍ଚିଲା ଭାଷା ଆନ୍ଦୋଳନ ବୋଲି ଲେଖି ପ୍ରଚାର ପ୍ରସାର କରାଇବାରେ ସେ ବିଶ୍ୱାସ କରୁନଥିଲେ । ସେ ଥିଲେ ବାସ୍ତବବାଦୀ ଭଷା ପ୍ରତି ପ୍ରେମ ଓ ଶ୍ରଦ୍ଧା ଜାଗରଣ କରିବାର ଅନୁଚିନ୍ତାକୁ, କାର୍ଯ୍ୟରେ ରୂପାନ୍ତରିତ କରିବାର ପ୍ରଚେଷ୍ଟା ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ ରହିଥିଲା । ଆଇ.ସି.ୟୁ.ରୁ ବାହାରି ସେ ଆମ ଝିଆରୀକୁ ଖଣ୍ଡେ କାଗଜ ମାଗିଥିଲେ ତାଙ୍କ ଭାବନାକୁ ସେଥିରେ ରୂପାନ୍ତରିତ କରିବା ପାଇଁ । ଏତେ ନିବିଡ଼ ଓ ଘନିଷ୍ଠ ସଂପର୍କ ତାଙ୍କର ସାହିତ୍ୟ ପ୍ରତି ଥିଲା ଭାବିଲେ ଆବାକ୍ ଲାଗେ ।

ସାହିତ୍ୟ ଅନୁରାଗୀ, ସାହିତ୍ୟ ପ୍ରେମୀ, ଭାଷାର ଗରିମାକୁ ବିମଣ୍ଡିତ କରିବା ପାଇଁ ପାତ୍ରମାନଙ୍କ ସନ୍ଧାନରେ ସେ ଅନବରତ ଚେଷ୍ଟିତ ଥିଲେ । ତା'ଛଡ଼ା ପ୍ରେରଣା ଓ ଲେଖା ମାଧ୍ୟମରେ ସେ ଅସଂଖ୍ୟ ସାରସ୍ୱତ ସାଧକ ସୃଷ୍ଟି କରିଯାଇଛନ୍ତି । ଯେଉଁମାନେ ଆମ ସହିତ ଏକମତ ସେମାନେ ନିଶ୍ଚୟ ହୃଦୟଙ୍ଗମ କରିସାରିବେଣି ଯେ ସାଧନାଟା ଲୋକ ଦେଖାଣିଆ ନୁହେଁ । ଏକଥା ସାମାନ୍ୟ ବିଳମ୍ବ ହେଲେ ସୁଦ୍ଧା ଆମେ ତାଙ୍କଠାରୁ ଜାଣିବାକୁ ପାଇଲୁ । ତାଙ୍କର ଅଦୂର ଦୃଷ୍ଟି ନିଜର ଅନୁଭବ ସିଦ୍ଧ ଥିଲା । ଠାକୁରଙ୍କୁ ନଡ଼ିଆ, ଦ୍ୱୀପ ଦେଇ ନୁହେଁ ବରଂ ସ୍ୱକର୍ମ ମାଧ୍ୟମରେ ଆରାଧନା କରାଯାଇ ପାରିବ । ତାଙ୍କର ଆସ୍ତିକତା ସଂପର୍କରେ ଆମର କୌଣସି ଦିନ ସନ୍ଦେହ ଆଉ ହୋଇ ନାହିଁ । ସେ ଜଣେ ସ୍ଥିତପ୍ରଜ୍ଞ ନିରଳସ ସାଧକ ଭାବେ ଆମମାନଙ୍କ ହୃଦୟରେ ନମସ୍ୟ ହୋଇ ରହିବେ ।

ଏକାନ୍ତ ବ୍ୟକ୍ତିଗତ ଘଟଣା ହେଲେ ମଧ୍ୟ ଏହି ଅବସରରେ ତାଙ୍କ ବ୍ୟକ୍ତିତ୍ୱ ବିଷୟରେ ବୟାନ ନ କରି ରହିପାରୁନି । ୨୦୧୦ ମସିହା କଥା, ଆମ ଝିଅ ବାହାଘର ସ୍ଥିର ହୋଇ ସାରିଥାଏ । ବନ୍ଧୁ ନିୟନ୍ତଣ କରିବା ପାଇଁ ଅଗତ୍ୟା ଆମକୁ ସାର୍‌ଙ୍କୁ ସାକ୍ଷାତ କରିବାକୁ ପଡ଼ିଲା । ସେତେବେଳକୁ ଆମେ ପ୍ରାୟ ଅଧିକାଂଶ ବନ୍ଧୁ ଓ ପରିବାରର ଅନ୍ୟାନ୍ୟ ସଦସ୍ୟମାନଙ୍କୁ ଫୋନ୍ ମାଧ୍ୟମରେ ଯୋଗାଯୋଗ ଓ ସାକ୍ଷାତ କରିସାରିଥାଉ । ସମସ୍ତେ ନିଜ ନିଜର ସୁଚିନ୍ତିତ ମତାମତ ଓ ଶୁଭ ଆଶୀର୍ବାଦ ପ୍ରଦାନ କରିସାରିଥାନ୍ତି । ସାର୍‌ଙ୍କ ପହଞ୍ଚିବାରେ ସାମାନ୍ୟ ବିଳମ୍ବ ହେଲା । କିନ୍ତୁ ତାଙ୍କ ପାଖରେ ପହଞ୍ଚିଲା ପରେ ଆମେ ତାଙ୍କଠାରୁ ଯାହା ପାଇଲୁ ଓ ଅନୁଭବ କଲୁ ତାହା ଏକାନ୍ତ ବ୍ୟକ୍ତିଗତ ହେଲେ ମଧ୍ୟ ପ୍ରକାଶଯୋଗ୍ୟ । ଜଣକର ବ୍ୟକ୍ତିତ୍ୱ ବିଷୟରେ ଭାଷା ମାଧ୍ୟମରେ ବୟାନ କରିବା ହୁଏତ ସାହିତ୍ୟିକମାନଙ୍କ ପକ୍ଷରେ ସମ୍ଭବ ହୋଇପାରେ । ଆମେ ଇତିହାସର ପୃଷ୍ଠପୋଷକତା କରୁ ତେଣୁ ପ୍ରମାଣ ସିଦ୍ଧ ବକ୍ତବ୍ୟ ରଖିବା ପାଇଁ ବାଧ୍ୟ ଅଟୁ । ଆମେ ପହଞ୍ଚିବୁ ଜାଣି ସେ ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ସ୍ଥଗିତ କରି ଅପେକ୍ଷା କରିଥିଲେ । ପହଞ୍ଚିବା ମାତ୍ରେ କୌଣସି ଔପଚାରିକତା ନ ରଖି ସିଧାସଳଖ କହିଲେ 'ମିନୁ (ଆମ ଝିଅାରୀ) ଠାରୁ ସବୁ କଥା ଶୁଣିଛି । ଝିଅ ବାହାଘର ତ, ପଇସା ପତ୍ର ସବୁ ବ୍ୟବସ୍ଥା ହୋଇସାରିଛି ତ ?' ଆମେ ଅପ୍ରତ୍ୟାଶିତ ପ୍ରଶ୍ନର କ'ଣ ଉତ୍ତର ଦେବୁ ହୁଏତ ସ୍ଥିର କରିପାରିଲୁ ନାହିଁ । ଝିଅ ବାହାଘର ପ୍ରକ୍ରିୟା ଦିନକର ନୁହେଁ । ଅନେକ ଦିନ ଧରି ଏହି ପ୍ରସ୍ତୁତି ଚାଲିଥିଲେ ସୁଦ୍ଧା ଆମର ଆର୍ଥିକ ଆବଶ୍ୟକତା କେହି ହେଲେ ଜାଣିବାକୁ ଚାହିଁ ନଥିଲେ । ବୋଧହୁଏ ସମସ୍ତେ ଧରି ନେଇଥିଲେ ଯେ ଆମର ଅଭାବ ନାହିଁ । 'ଯେତେ ବାଉଁଶ ସେତେ ପୋଲ' । ଆମେ ମ୍ୟାନେଜ୍‌ମେଣ୍ଟ ପୋଷ୍ଟରେ ଅଧ୍ୟାପନା କରୁଥିଲୁ । ଆମର ସଞ୍ଚୟ ଘର ଶୂନ ଥିଲା । ବାପା ମା' ଛାଡ଼ିଯାଇଥିବା ଜମାପୁଞ୍ଜି ହିଁ କେବଳ ସଂବଳ ମାତ୍ର ଥିଲା । ଅବଶ୍ୟ କିଛୁ ସ୍ଥାବର ସଂପତି ଥିଲା (ବାପା କହିଥିଲେ) ତାକୁ ବିକିବାର ସତ୍ ସାହାସ ନଥିଲା । ଈଶ୍ୱରଙ୍କ କୃପାରୁ ଓ ସାର୍‌ଙ୍କ ପ୍ରେରଣାରେ ପି.ଏଚ୍.ଡ଼ି. ପଞ୍ଜୀକରଣ ହୋଇ ସାରିଥିଲା ଓ ମାଇନର ରିସର୍ଚ୍ଚ ପ୍ରୋଜେକ୍ଟ ବାବଦକୁ ପ୍ରାୟ ଏକଲକ୍ଷ ଟଙ୍କା ପାଇଥାଉ । ମା' ମୋର ନାତୁଣି ପାଇଁ ସୁନା କିଛି ରଖିଯାଇଥିଲା ଓ ସର୍ବୋପରି ଝିଅର ଶ୍ୱଶୁର ଘରର ସାମାନ୍ୟ ଡିମାଣ୍ଡ କିଛି ହେଲେ ନ ଥିଲା । ତଥାପି ଦାଣ୍ଡ ସୁନ୍ଦର ତ ଅଛି । ବନ୍ଧୁ ଚର୍ଚ୍ଚା ଓ ବେଭାର ପାଇଁ ତ ଅର୍ଥର ଆବଶ୍ୟକତା ଥିଲା । ସାର୍ ବାରମ୍ବାର ଅଭୟ ଦେଇ ପ୍ରଶ୍ନ କରୁଥାଆନ୍ତି 'ଆରେ କହୁନ କାହିଁକି ସଂକୋଚ କରୁଛ ?' କେତେ କ'ଣ ନିଅଣ୍ଟିଆ ହେଉଛି କହୁନ ? ଆମେ ଅପ୍ରସ୍ତୁତ ହୋଇ କହିଲୁ, 'ସାର୍ ଏ ପର୍ଯ୍ୟନ୍ତ ସବୁ ଠିକ୍ ଠାକ୍ ଚାଲିଚି । ଆବଶ୍ୟକ ପଡ଼ିଲେ କହିବି । ତଥାପି ସାର୍ ବାଧ୍ୟ କରୁଥାଆନ୍ତି ଯଦି କିଛି ଆବଶ୍ୟକତା ଅଛି ଜଣାଇବା ପାଇଁ । ଦରକାର ହେଲେ ସାର୍ ନିଶ୍ଚେ ଜଣେଇବି କଥା

ଦେଉଛି । ଆଉ ପଇସା ପତ୍ରର ଭୟ ନାହିଁ ଆପଣତ ଅଛନ୍ତି । କହି ଆଶ୍ୱସ୍ତ ହୋଇ ଫେରିଥିଲୁ । ସାର୍‌ଙ୍କ ସଦ୍‌ଭାବନା, ଈଶ୍ୱରଙ୍କ କୃପାରୁ ଝିଅ ବାହାଘର ଭଲରେ ଭଲରେ ହୋଇଗଲା । କିନ୍ତୁ ହେଲେ ଅଭାବ ହେଲା ନାହିଁ । ଏକଥା ସାର୍ ଯିବାର ପ୍ରାୟ ଛଅ ମାସ ପରେ 'ମିନୁ'କୁ କଥା ଛଳରେ ଜଣେଇଥିଲି । ତାଙ୍କ ସ୍ମୃତି ସଭାରେ ଅନେକ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କ ଠାରୁ ତାଙ୍କ ବିଷୟରେ ଜାଣିବାକୁ ପାଇଲୁ । ଯଦିଓ ଆମର ଏତେ ସବୁ ବଡ଼ ବଡ଼ ଅନୁଭବ ନାହିଁ ତଥାପି ଆମର କ୍ଷୁଦ୍ର ଅନୁଭବ ଆମ ଜୀବନର ମାର୍ଗଦର୍ଶକ ହେବ । ଲୋକ ଦେଖାଣିଆ ଅନୁଷ୍ଠାନ ଅପେକ୍ଷା ଆନ୍ତରିକ ସ୍ନେହ, ଶ୍ରଦ୍ଧା ଓ ଭଲପାଇବା ଈଶ୍ୱର ଅନୁଭୂତିର ଅନୁପମମାର୍ଗ ବୋଲି ଅନୁଭବ ହେଲା ।

ସାର୍ ଜଟଣୀ ଆସିଲେ, ସାହିତ୍ୟିକ ବନ୍ଧୁମାନଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛା ପ୍ରକାଶ କରନ୍ତି । ସେମାନଙ୍କର ଘର ଚିହ୍ନେଇଦେବାକୁ ଆମକୁ ଅନେକଥର ସାଙ୍ଗରେ ଯିବାକୁ ପଡ଼ିଥାଏ । ସେଠାରେ ତାଙ୍କୁ ନିରାଡ଼ମ୍ବର ତଥା ଉଚ୍ଛ୍ୱସିତ ସ୍ୱାଗତ କଲାଯାଏ । ଆମ ଉପରେ ମଧ୍ୟ ସାର୍‌ଙ୍କ ସମ୍ପୃକ୍ତି ହିସାବରେ କିଛି ଛିଟିକା ପଡ଼େ । ବିଡ଼ମ୍ବନାର ବିଷୟ ହେଲା ଯେ ତାଙ୍କର ଆଲୋଚନା ସବୁ ଗବେଷଣାତ୍ମକ ହୋଇଥିବାରୁ ଅଧିକାଂଶ ବାର୍ତ୍ତା ଆମର ମସ୍ତକ ଊର୍ଦ୍ଧ୍ୱରେ ଗତି କରିଯାଏ । ଆମେ ବାଧ୍ୟ ହୋଇ ବିଭିନ୍ନ ଆଳ ଶିଖାଇ ସେଠାରୁ ପ୍ରସ୍ଥାନ କରିବାରେ ସୁଖ ଅନୁଭବ କଲୁ ।

ଦିନେ ହଠାତ୍ ଆମର ଗୁରୁ ଓ ସାର୍‌ଙ୍କର ବନ୍ଧୁଙ୍କ ଗହଣରେ ଉପସ୍ଥିତ ଥିଲାବେଳେ, ମନରେ ଚାପିହୋଇ ରହିଥିବା ଏକ ପୁରାତନ ଇଚ୍ଛାକୁ ବ୍ୟକ୍ତ କରିଥିଲୁ । ଆମେ ପଚାଶ ବସନ୍ତ ଅତିକ୍ରାନ୍ତ କଲାପରେ ଗବେଷଣା ଆରମ୍ଭ କରିବା କ'ଣ ସମ୍ଭବ ହେବ, ସାର୍ ଉତ୍ସାହିତ କରି କହିଥିଲେ ପରିଣତ ବୟସ ଓ ଅଭିଜ୍ଞତା ଗବେଷଣା ପାଇଁ ଉପାଦେୟ ଅଟେ । ତାଙ୍କରି ପ୍ରେରଣାରେ ପିଏଚ୍.ଡ଼ି ରେଜିଷ୍ଟ୍ରେସନ୍ କରିଥିଲୁ, ମଝିରେ ମଝିରେ ଆମର ପ୍ରୋଗ୍ରେସ୍ କଥା ପଚାରି ବୁଝନ୍ତି ଓ ଘୋଷଣା ହେବାର ସଂବାଦ ପାଇ ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

ବ୍ୟକ୍ତିଗତ ଦୁଃଖ ଓ ଶାନ୍ତିକୁ ବ୍ୟକ୍ତ କିମ୍ୱା ପ୍ରକାଶ କରିବାରେ ସେ ସର୍ବଦା କାର୍ପଣ୍ୟ କରୁଥିଲେ । ନାତିନାତୁଣୀମାନଙ୍କ ଆଚିଭ୍‌ମେଣ୍ଟରେ ସେ ଭାବ ବିହ୍ୱଳ ହେବା ଦେଖିନାହୁଁ । ସେହି ସ୍ଥିତପ୍ରଜ୍ଞ ସାହିତ୍ୟାନୁରାଗୀ ବ୍ୟକ୍ତିତ୍ୱ ବିଷୟରେ ବୟାନ କରିବା ଆମ ପକ୍ଷେ ଆଦୌ ସମ୍ଭବ ନୁହେଁ । ତାଙ୍କ ଚରିତ୍ର ଚିତ୍ରଣ କରିବାରେ ତ୍ରୁଟି ହେଲେ ଦିବଂଗତ ପ୍ରାଣ ପ୍ରତି ଅପମାନ ଓ ଅବିଚାର ହେବ । 'ଏଷଣା'ର ଜନ୍ମଦାତା ଓ ସମସ୍ତଙ୍କ ଅତି ଆଦରର କୃଷ୍ଣସାରଙ୍କୁ ଶ୍ରଦ୍ଧା ସୁମନ ଅର୍ପଣ କରିବାର ପ୍ରଚେଷ୍ଟା ସଫଳ ହେଲେ ନିଜକୁ ଧନ୍ୟ ମନେ କରିବୁ । ❖

ଇତିହାସ ବିଭାଗ ମୁଖ୍ୟ, ଏକାମ୍ର କଲେଜ, ଭୁବନେଶ୍ୱର

# ପ୍ରବୃତ୍ତିରେ ପ୍ରାଧ୍ୟାପକ

ଡ. ଜଟାଧାରୀ ମହାପାତ୍ର

ଏଇ ଅଳ୍ପଦିନ ତଳର କଥା । ମୋ ମହାବିଦ୍ୟାଳୟ ପାଇଁ ବିଶ୍ୱବିଦ୍ୟାଳୟ ପକ୍ଷରୁ ପର୍ଯ୍ୟବେକ୍ଷକ ରୂପେ ନିଯୁକ୍ତି ପାଇଥିବା ଜନୈକ ପ୍ରାଧ୍ୟାପକଙ୍କୁ ସାକ୍ଷାତ କରିବା ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଯାଇଥିଲି । ତାଙ୍କର ବିଭାଗରେ ପହଞ୍ଚି ଦେଖିଲି, ସେ ନାହାନ୍ତି; ଘରକୁ ଚାଲି ଯାଇଛନ୍ତି । ଉପସ୍ଥିତ ଛାତ୍ରଛାତ୍ରୀମାନଙ୍କୁ ପ୍ରାଧ୍ୟାପକ ମହାଶୟଙ୍କ ବସାଘର ଠିକଣା ପଚାରିଲି । କେହି କହି ପାରିଲେ ନାହିଁ । ଆଶ୍ଚର୍ଯ୍ୟ ହୋଇ ପଚାରିଲି ତୁମେମାନେ କ'ଣ କେବେ ତୁମ ପ୍ରାଧ୍ୟାପକଙ୍କ ଘରକୁ ଯାଅ ନାହିଁ ? କିଛି ଅରୁଚିକର ମନ୍ତବ୍ୟ ସହ ଯେଉଁ ଉତ୍ତର ଆସିଲା, ତା'ର ଅର୍ଥ ହେଉଛି ସେ ମହାଶୟ ଅଧ୍ୟାପନା ବ୍ୟତୀତ ଅନ୍ୟାନ୍ୟ ଅନେକ ଅର୍ଥକରୀ କାର୍ଯ୍ୟରେ ବ୍ୟସ୍ତ । ସମୟ ନିର୍ଘଣ୍ଟ ବାହାରେ ତାଙ୍କର ସାକ୍ଷାତ ପାଇବା ଅତୀବ ଦୁରୂହ ବ୍ୟାପାର । କଥାଟା ଭାରି ଖଟ୍‌କା ଲାଗିଲା । ମନେ ପଡ଼ିଗଲା ମୋ ଛାତ୍ର ଜୀବନର କଥା, ଉଚ୍ଚଶିକ୍ଷାର ଏଇସବୁ ଉଚ୍ଚବାଚ ପାଇଁ ଏକଦା ହଲ୍ଲା ମଚେଇଥିବା ମୋ ପ୍ରାଧ୍ୟାପକ ୰ ଡ. କୃଷ୍ଣଚରଣ ବେହେରାଙ୍କ କଥା ।

ମୁଁ ଏଇ ମାତ୍ର ତିନି ଦଶନ୍ଧି ତଳର କଥା କହୁଛି । ଡ. ବେହେରା ସେତେବେଳେ ଆମର ବିଭାଗୀୟ ମୁଖ୍ୟ । ତା' ସାଙ୍ଗକୁ ଛାତ୍ରୀନିବାସର ତତ୍ତ୍ୱାବଧାନ, 'ଓଡ଼ିଆ ଗବେଷଣା ପରିଷଦ' ଭଳି ମର୍ଯ୍ୟାଦାଜନକ ସାହିତ୍ୟାନୁଷ୍ଠାନର ସାଂଗଠନିକ କାର୍ଯ୍ୟ, 'ଏଷଣା'ର ସଂପାଦନା ଆଦି ଅନ୍ୟାନ୍ୟ ଅନେକ କାର୍ଯ୍ୟ ବ୍ୟସ୍ତତା ତାଙ୍କର । ଏସବୁ ବାଦ ପୁଣି ପଢ଼ାଲେଖା । କିନ୍ତୁ ଏତେ ସବୁ ଭିତରେ ବି ଛାତ୍ରଛାତ୍ରୀମାନଙ୍କ ପାଇଁ ତାଙ୍କ ଦ୍ୱାର ସବୁବେଳେ ମୁକୁଳା । ମୋର ତ ସପ୍ତାହର ଅନ୍ୟୂନ ତିନି ଚାରୋଟି ସନ୍ଧ୍ୟା ସାରଙ୍କ ସହ କଟୁଥିଲା । ମୁଁ କେବଳ ନୁହେଁ ମୋ ଭଳି ଆହୁରି ଅନେକ ଛାତ୍ରଛାତ୍ରୀ । ରେଭେନ୍ସା ପରିସରରୁ ପ୍ରଫେସରପଡ଼ା ଦୁଇ କିଲୋମିଟରରୁ କମ୍ ହେବନି । ସେଇଠି ଥିଲା ସାରଙ୍କ ବସାଘର । ତଥାପି କେଉଁ ଏକ ଅଦ୍ଭୁତ ଆକର୍ଷଣରେ ଆମେ ସାଙ୍ଗମାନେ ସାନ୍ଧ୍ୟଭ୍ରମଣରେ ଚାଲିଚାଲି ପହଞ୍ଚି ଯାଉଥିଲୁ ସେଇଠି । ଅବଶ୍ୟ ଆମର ଷଷ୍ଠ ବର୍ଷ ବେଳକୁ ସାର୍ ରେଭେନ୍ସା

ପରିସରସ୍ଥ ସରକାରୀ ବାସଗୃହକୁ ଚାଲି ଆସିଥିଲେ । ବସାଘର ଆଗ ବଗିଚାରେ ସନ୍ଧ୍ୟାଆସର ଜମେ । ନିରୋଳା ସାହିତ୍ୟ ଆଲୋଚନା- ନେଭେଲ୍‌ରୁ ନୋବେଲ୍ ପର୍ଯ୍ୟନ୍ତ । ତା' ଭିତରେ ଆସେ ମାଉସୀଙ୍କର ଚା' ସହ ଗରମାଗରମ ପିଆଜି- ପକୁଡ଼ି ପ୍ଲେଟ୍ । ବିରଳ ଛାତ୍ର ବତ୍ସଳତା ।

ଆମେରିକୀୟ ଔପନ୍ୟାସିକ ଥୋମାସ୍ ଓଲ୍‌ଫ ଜଣେ ଭଲ ଶିକ୍ଷକର ଛାତ୍ର ସହ ସମ୍ପର୍କକୁ ମା' ସହ ପୁଅର ସମ୍ପର୍କର ଠିକ୍ ପରେ ପରେ ସ୍ଥାନ ଦେଇଛନ୍ତି । ଆମ ସଂସ୍କୃତିରେ ତ ଗୁରୁ କେବଳ 'ବିଦ୍ୟା ଦ୍ରବିଣଂ ନୁହନ୍ତି, ସେ ହେଉଛନ୍ତି 'ମାତା ଚ ପିତା', 'ବନ୍ଧୁଶ୍ଚ ସଖା'- ସ୍ନେହ ମମତାର ମୂର୍ତ୍ତି । ସେ ମା' ପରି ସ୍ନେହ ଆଦର କରି ଜ୍ଞାନାମୃତକୁ ପେଟଭରି ପିଆଇ ଦିଅନ୍ତି, ବାପ ଭଳି ଆକଟ କରି ବାଟଅବାଟକୁ ଚିହ୍ନେଇଥାଅନ୍ତି, ବନ୍ଧୁ ଭଳି ପାଖରେ ରହି ଅଭାବ ଅସୁବିଧାରେ ଆଶ୍ୱାସନା ଦିଅନ୍ତି, ସଖା ଭଳି ଉତ୍ସାହ ଦେଇ ସଫଳତାର ସିଡ଼ି ଚଢ଼ାନ୍ତି । ଡ. ବେହେରା ଥିଲେ ଏହି ଭଳି ଜଣେ ଛାତ୍ର- ଦରଦୀ ଆଦର୍ଶ ଶିକ୍ଷକ । ଛାତ୍ରଛାତ୍ରୀଙ୍କୁ ସେ ହୃଦୟ ଭରି ଭଲପାଉଥିଲେ, ଦୁଃଖସୁଖରେ ପାଖରେ ଠିଆ ହେଉଥିଲେ, ଅଭାବ-ଅସୁବିଧାରେ ସହଯୋଗର ହାତ ବଢ଼ାଉ ଥିଲେ । ଏହି ପ୍ରସଙ୍ଗରେ ଘଟଣାଟିଏ ମନେ ପଡୁଛି । ମୋର ସ୍ନାତକୋତ୍ତର ଦ୍ୱିତୀୟ ବର୍ଷର ଘଟଣା । ବର୍ଷ ଆରମ୍ଭରୁ ଲଗାତର ଗୋଟିଏ ସପ୍ତାହଧରି ମୋର ଜଣୈକା ସହପାଠିନୀ ଶ୍ରେଣୀକକ୍ଷରେ ଅନୁପସ୍ଥିତ ଥିବା ଲକ୍ଷ୍ୟକରି ସାର୍ ତା'ର ଅଭାବ ଅସୁବିଧା ବିଷୟରେ ପଚାରି ବୁଝିଲେ । ପାରିବାରିକ ଅସୁବିଧା କାରଣରୁ ସେ ଦ୍ୱିତୀୟବର୍ଷ ନାମଲେଖା ଦେୟ ପଇଠ କରି ପାରି ନଥିବା ଜାଣିବା ପରେ ନିଜେ ତା'ର ଦେୟ ଭରି ଦେଇଥିଲେ । ତାଙ୍କୁ କିଛି ପାଠ୍ୟପୁସ୍ତକ ଯୋଗାଇ ଦେଇ ପଢ଼ା ଜାରି ରଖିବା ପାଇଁ ସାହସ ବି ଦେଇଥିଲେ । ଏହିଭଳି ହିଁ ଥିଲେ ଡ. ବେହେରା । ଜ୍ଞାନ ଭଳି ଏକ ମାନସିକ ସଂପଦର ଆଦାନ ପ୍ରଦାନ ପ୍ରକ୍ରିୟା ଯେ ଦାତା ଗ୍ରହୀତା ମଧ୍ୟରେ ଭାବଗତ ସଂପର୍କର ପ୍ରତିଷ୍ଠା ବ୍ୟତିରେକ ସଫଳ ହୋଇ ନ ପାରେ ଏ କଥା ସେ ବୁଝିଥିଲେ । ଅଧ୍ୟାୟୀ ଅଧ୍ୟାପକ ମଧ୍ୟରେ ପାରସ୍ପରିକ ଭଲପାଇବା ଓ ସମ୍ମାନବୋଧ ନ ଥିଲେ ଅଧିକ ଜ୍ଞାନ 'କର୍ଣ୍ଣ ତୁଣ୍ଡରେ ପାନ' ହେବା ପରିବର୍ତ୍ତେ 'ନାପିତ ରନ୍ଧ୍ର ଦେଇ ନିର୍ଗତ' ହେବା ସାର ହୁଏ ବୋଲି ସେ ବିଚାରୁଥିଲେ ।

ସକ୍ରେଟିସ୍ କହୁଥିଲେ 'ମୁଁ କାହାକୁ କିଛି ପଢ଼ାଇପାରିବି ନାହିଁ । କେବଳ ସେମାନଙ୍କୁ ଚିନ୍ତା କରିବା ପାଇଁ ପ୍ରସ୍ତୁତ କରାଇପାରିବି ।' ପ୍ରକୃତରେ ଏହାହିଁ ତ ହେଉଛି ଜଣେ ଉତ୍ତମ ଅଧ୍ୟାପକର ଲକ୍ଷ୍ୟ- ଛାତ୍ରକୁ ଜିଜ୍ଞାସୁ କରିବା । ଡ. ବେହେରା ଏହିଭଳି ଅଧ୍ୟାପନା ଶୈଳୀ ହିଁ ଆପଣେଇ ଥିଲେ । କୌଣସି ବିଷୟରେ ପାଠ ପଢ଼ାଇବା ବେଳେ ତତ୍‌ସଂପର୍କିତ ସବିଶେଷ ଓ ସର୍ବଶେଷ ତଥ୍ୟ ତ ଉପସ୍ଥାପନ କରୁଥିଲେ, ତାହା ସଙ୍ଗେ

ସଙ୍ଗେ ସେହି ତଥ୍ୟ ସମ୍ବଳିତ ଗ୍ରନ୍ଥଗୁଡ଼ିକ ଏବଂ ତାହାର ଲେଖକ ଓ ପ୍ରକାଶକମାନଙ୍କର ନାମ କହିବାକୁ ଭୁଲୁ ନ ଥିଲେ । ଏହା ଛାତ୍ରଛାତ୍ରୀମାନଙ୍କର ପାଠନୋଛାକୁ ବୃଦ୍ଧି କରୁଥିଲା । ସେହିଭଳି କୌଣସି ବିଷୟରେ ହୋଇଥିବା ବାଦାନୁବାଦ ବିଷୟରେ ସେ ଆଲୋଚନା କରି ନିଜର ମତ ରଖିବା ସହିତ ଛାତ୍ରଛାତ୍ରୀମାନଙ୍କୁ ନିଜ ନିଜର ମତ ରଖିବା ପାଇଁ ଆହ୍ୱାନ କରୁଥିଲେ । ଏହା ସେମାନଙ୍କୁ ମୌଳିକ ଚିନ୍ତା କରିବା ପାଇଁ ପ୍ରେରଣା ଯୋଗାଉଥିଲା । ଅଧ୍ୟାପନା ତାଙ୍କ ପାଇଁ ଏକ ପାକ୍ଷିକ କ୍ରିୟା ନ ଥିଲା, ଥିଲା ଏକ ପାରସ୍ପରିକ କ୍ରିୟା । ଏହାକୁ ମଜାଦାର କରିବା ପାଇଁ ପଢ଼ା ମଝିରେ ମଝିରେ ସେ ଟିକେ ଟିକେ ହସି ଦିଅନ୍ତି, ପ୍ରାସଙ୍ଗିକ ହ୍ୟୁମର ବି ସୃଷ୍ଟି କରନ୍ତି । ଥରେ ପ୍ରାଚୀନ ନାଟ୍ୟାଭିନୟରେ ନାରୀ ଭୂମିକାରେ ପୁରୁଷମାନଙ୍କର ଅଭିନୟ ବିଷୟରେ ଆଲୋଚନା ପ୍ରସଙ୍ଗରେ ନିଜ ଗାଁ ଯାତ୍ରା ଦଳରେ ସେ ନାରୀ ଭୂମିକାରେ କରିଥିବା ଅଭିନୟ ବିଷୟରେ ଯେଉଁ ମଜାଦାର୍ ବର୍ଣ୍ଣନା କରିଥିଲେ, ତାହା ଆମ ସାଙ୍ଗସାଥୀଙ୍କ ଭିତରେ ବହୁଦିନ ପର୍ଯ୍ୟନ୍ତ ହସମଜାର ଖୋରାକ ହୋଇଥିଲା । ବେଶ୍ ପ୍ରଭାବୀ ତାଙ୍କର ଅଧ୍ୟାପନା; ଭାଷା ବଳିଷ୍ଠ-କଥିତ ଶୈଳୀର ।

କେବଳ ପାଠ ପଢ଼ାଉ ନଥିଲେ, ପଢ଼ାଲେଖା ପାଇଁ ସବୁବେଳେ ପ୍ରବର୍ତ୍ତାଉଥିଲେ ସାର୍ । 'ଲେଖାଲେଖିରେ ହତା ପାକଳ କର', 'ସାହିତ୍ୟ ଜଗତରେ ନିଜର ଏକ ପରିଚୟ ସୃଷ୍ଟି କର', 'ବୈଷୟିକ ଉନ୍ନତି ପଛରେ କେତେ ଗୋଡ଼ାଇବ, କିଛି ବୈଷୟିକ ସଙ୍ଗତି ପାଇ କାମ କର', 'କିଏ କ'ଣ କହିଛି କୁହ ନାହିଁ, ତୁମେ କ'ଣ କହିଛ କୁହ'- ସାର୍‌ଙ୍କର ଏହିସବୁ ପ୍ରେରଣାଦାୟୀ ଉକ୍ତିଗୁଡ଼ିକ ଆଜି ବି ମୋ କାନରେ ଗୁଞ୍ଜରିତ ହେଉଛି । ଚିଠି ହେଉ ବା ଫୋନ୍, ଅଧ୍ୟାପନ ହେଉ ବା ପ୍ରତ୍ୟକ୍ଷ ବାର୍ତ୍ତାଳାପ, ସବୁଥିରେ ଲେଖାଲେଖି କରିବା ପାଇଁ ତାଗିଦ । ଏହାରି ପ୍ରଭାବରେ ସାର୍‌ଙ୍କର ଅନେକ ଛାତ୍ର କଲମ ଚଳେଇଛନ୍ତି, ଓଡ଼ିଆ ସାହିତ୍ୟଜଗତରେ ପ୍ରତିଷ୍ଠା ବି ଲାଭ କରିଛନ୍ତି । କୌଣସି ଛାତ୍ରଛାତ୍ରୀ ଲେଖାଟିଏ ଦେଖିବାକୁ ଦେଲେ ଭାରି ଖୁସି ହୋଇ ଯାଆନ୍ତି ସେ । ଦୋଷ ଦେଖାଇ ନିନ୍ଦା କରନ୍ତିନି; ସଂଶୋଧନ କରି ସଜାଡ଼ି ଦିଅନ୍ତି । ଉତ୍ସାହିତ କରନ୍ତି ଆହୁରି ଲେଖିବାକୁ । ତାଙ୍କରି ପ୍ରେରଣାରେ ମୁଁ ଅନେକଗୁଡ଼ିଏ ପ୍ରବନ୍ଧ ରଚନା କରିଥିଲି ଛାତ୍ରାବସ୍ଥାରେ । ସେଥିମଧ୍ୟରୁ ଗୋଟିଏ ପ୍ରବନ୍ଧକୁ (ଯୁବ ଭଞ୍ଜ ଏକ ଛଦ୍ମ ନାମ କି ?) ସେ ଘଷିମାଜି 'ଆସନ୍ତାକାଲି' ପତ୍ରିକାକୁ ପଠାଇଦେଇଥିଲେ ମୋ ଅଜାଣତରେ । ତାହା ପ୍ରକାଶ ପାଇଥିଲା ୧୯୮୭ ମସିହା ଅପ୍ରେଲ ମାସ ସଂଖ୍ୟାରେ । ଏହା ମୋର ପ୍ରଥମ ପ୍ରକାଶିତ ପ୍ରବନ୍ଧ । ସାର୍ ଯେଉଁଦିନ ପତ୍ରିକାଟି ଆଣି ମୋ ହାତରେ ଧରାଇ ଦେଇଥିଲେ, ଖୁସିରେ ମୋ ପାଦ ତଳେ ଲାଗି ନ ଥିଲା ସେ ଦିନ ।

ଆପଣାର ଜ୍ଞାନ-ଧନକୁ ସେ ଘଡ଼ା-ସାଇତା ସଂପତ୍ତି ପରି ମଳିଆମଶିଆ କରି ପକେଇ ନଦେଇ ସାରବାର କରି ତାକୁ ଚକ୍‌ଚକ୍ କରୁଥିଲେ । ଦିନକୁ ଅନ୍ୟୂନ ପାଞ୍ଚ ଛଅ ଘଣ୍ଟା ପଢ଼ାଲେଖା ତାଙ୍କର ଏକ ନିୟମିତ ଅଭ୍ୟାସ । ଜୀବନର ସାୟାହ୍ନରେ ବି ଏ ଅଭ୍ୟାସ ତାଙ୍କର ବଦଳି ନ ଥିଲା । ରୋଗ ଓ ବାର୍ଦ୍ଧକ୍ୟ ଏଥିରେ ପ୍ରତିବନ୍ଧକ ହୋଇ ପାରିନଥିଲା । ବ୍ୟକ୍ତିଗତ ପାଠାଗାରାରେ ତାଙ୍କର ଦୁଇ ତିନି ହଜାର ସରିକି ଦୁର୍ଲଭ, ଦୁଷ୍ପ୍ରାପ୍ୟ, ମୂଲ୍ୟବାନ ପୁସ୍ତକ । ରାତ୍ରିଭୋଜନ ପରେ ଏହାରି ଭିତରେ ବିଳମ୍ବିତ ପ୍ରହର ପ୍ରର୍ଯ୍ୟନ୍ତ ସେ ନିଜକୁ ହଜେଇ ଦିଅନ୍ତି । ମୁଁ ଥରେ ସାର୍‌ଙ୍କୁ ଏହି ବିଳମ୍ବିତ ନିଦ୍ରାଭ୍ୟାସ ତାଙ୍କର ହୃଦ୍‌ରୋଗ ଓ ଶ୍ୱାସରୋଗ ପାଇଁ ହାନିକାରକ ହୋଇପାରେ ବୋଲି କହି ବାରଣ କରିବାରୁ ସେ ଉତ୍ତର ଦେଇଥିଲେ- 'ରୋଗ ବଢୁ ବା ନ ବଢୁ ମରଣ ତ ନିଶ୍ଚୟ ଆସିବ; କିନ୍ତୁ ରୋଗକୁ ଡରି ପଢ଼ା ଲେଖା ଛାଡ଼ି ଦେଲେ ମୋର ଜୀବନ୍ତ ମରଣ ହୋଇଯିବ ।' ଆଉ ଥରକର ଘଟଣା । ୧୯୯୩ ମସିହାର ନଭେମ୍ବର କି ଡିସେମ୍ବର ମାସ ହେବ ବୋଧହୁଏ । ଗୁରୁ-ଶିଷ୍ୟ ଏକାଠି ହୋଇ ଯାଇଥାଉ ଲୋକରତ୍ନ ଡ. କୁଞ୍ଜବିହାରୀ ଦାସଙ୍କ କଟକସ୍ଥ ବାସଭବନକୁ । ସେତେବେଳକୁ ସେ ଶଯ୍ୟାଶାୟୀ । ସାର୍‌ଙ୍କୁ ଦେଖି ଡ. ଦାସଙ୍କ ଆଖି ସେଦିନ ଲୁହ ଛଳଛଳ ହୋଇଗଲା । ଉଦ୍‌ଗତ କୋହକୁ ସମ୍ଭାଳି ନେଇ ପରାସ୍ତ ପଦାତିକ ପରି ସେ କହିଲେ- 'ଆଉ ପାରୁନି । ମନମୁନ ମେଳ ଧରୁନି । କଲମ ବୋଲ ମାନୁନି ।' ଲୋକରତ୍ନଙ୍କ ଏଇ କଥା କେଇପଦ ସାର୍‌ଙ୍କୁ ଭାବପ୍ରବଣ କରିଦେଇଥିଲା ସେଦିନ । ଫେରିବା ବାଟରେ କହିଲେ- 'ଏଇ ହେଉଛି ଜଣେ ସାହିତ୍ୟିକର ଅସଲ ଦୁଃଖ । ଲେଖାପଢ଼ା ତା'ର ଜୀବନ । ତାକୁ ଛାଡ଼ି ସେ ବଞ୍ଚିବ କିପରି ? ମୁଁ ତ ପାରିବିନି ।' ସାର୍ କିନ୍ତୁ ଶେଷପର୍ଯ୍ୟନ୍ତ ନିଜକୁ ସାହିତ୍ୟ ସୃଷ୍ଟି ଓ ସଂଗଠନ କାର୍ଯ୍ୟରେ ମଜେଇ ରଖିଥିଲେ । ଜଣେ ଉତ୍ତମ ଛାତ୍ର ଭଳି ପଢ଼ି ଚାଲିଥିଲେ । ମରଣ ଶଯ୍ୟାରେ ବି 'ଏଷଣା' ପ୍ରକାଶନର ଚିନ୍ତା କରୁଥିଲେ । ହାତ ଅଟକିଲା ଶ୍ୱାସ ବି ଅଟକିଲା ।

ସ୍ନାତକୋତ୍ତର ସରିବା ପରେ ପରେ ଗବେଷଣା କରିବାପାଇଁ ମୁଁ ମନ ବଳେଇଲି । ଆମ ଘରର ଠାକୁର ଆସ୍ଥାନ ନିକଟରେ କେଉଁ କାଳରୁ ରହିଥିବା ବିଶାଳ ବିଶାଳ ବେତ ପେଟରା ପାଞ୍ଚଟିର ଥାକ ଓ ତା' ଭିତରର ଶହଶହ ତାଳପତ୍ର ପୋଥି ମୋତେ ବହୁ ପୂର୍ବରୁ ପ୍ରାଚୀନ ସାହିତ୍ୟର ଜଣେ ଜିଜ୍ଞାସୁ ପାଠକରେ ପରିଣତ କରିଦେଇଥିଲା । ତା'ରି ଭିତରୁ ମିଳିଥିଲା ବାରାନିଧି ଦାସ ନାମ ଭଣିତ 'ବିଲଙ୍କା ଖଣ୍ଡ' ଯାହା ସିଦ୍ଧେଶ୍ୱର ଦାଙ୍କ 'ବିଲଙ୍କା ରାମାୟଣ' ଭଳି ସହସ୍ର ଶିର ରାବଣ ଚରିତ୍ର କୈନ୍ଦ୍ରିକ ଥିଲା ସତ, ମାତ୍ର କାହାଣୀ ଥିଲା ସଂପୂର୍ଣ୍ଣ ଅଲଗା । ତାକୁ ନେଇ ପହଞ୍ଚିଗଲି ସାର୍‌ଙ୍କ ପାଖରେ । ସବୁ ଶୁଣିବା ପରେ ସାର୍ କହିଲେ- 'ଗବେଷଣା ପାଇଁ ପ୍ରସଙ୍ଗଟି ମନ୍ଦ ନୁହେଁ । କିନ୍ତୁ ତରବର ହେଲେ ଚଳିବନି ।

ତୁମେ ପ୍ରଥମେ ଡ. ଭଗବାନ ପଣ୍ଡା ଓ ପଣ୍ଡିତ ନୀଳମଣି ମିଶ୍ରଙ୍କୁ ସାକ୍ଷାତ କରି ରାଜ୍ୟ ସଂଗ୍ରହାଳୟରେ ରହିଥିବା ଏ ବିଷୟକ ପୋଥିଗୁଡ଼ିକ ସଂପର୍କରେ ଆଲୋଚନା କର । ନୟାଗଡ଼ ସ୍ଥିତ ବାଞ୍ଛାନିଧି ପାଠାଗାର ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପୋଥି ଭଣ୍ଡାରରେ ବି ଟିକେ ଖୋଜାଖୋଡ଼ା କର । ଆଉ କିଛି ମିଳିଯାଇପାରେ । ତା'ପରେ ତତ୍‌ସଂପର୍କିତ ଉପଲବ୍‌ଧ ଆଲୋଚନାଗୁଡ଼ିକୁ ପାଠକରି ପଚାଶଷାଠିଏ ପୃଷ୍ଠାର ଏକ ନିବନ୍ଧ ପ୍ରସ୍ତୁତ କର । ପାଣ୍ଡୁଲିପିଟିର ବୈଶିଷ୍ଟ୍ୟଗୁଡ଼ିକ ଜାଣିବା ପରେ ଆମେ ପଞ୍ଜୀକରଣ କରିବା । ସାତ ଆଠମାସର ଖୋଜାଖୋଡ଼ା, ପଢ଼ାପଢ଼ି ମଧ୍ୟରେ 'ବିଲଙ୍କା କଥା' ସମ୍ବଳିତ ଅନ୍ୟ କେତେକ ପ୍ରକାଶିତ ଅପ୍ରକାଶିତ ରଚନା ମୋର ହସ୍ତଗତ ହେଲା । ଓଡ଼ିଆ ସାହିତ୍ୟରେ ବିଲଙ୍କା କଥାର ଏକ ସମୃଦ୍ଧ ତଥା ବିଶାଳ ପରଂପରା ରହିଥିବା ମୋର ଅନୁଭବ ହେଲା । ପ୍ରବନ୍ଧଟି ଲେଖି ସାର୍‌ଙ୍କୁ ଯେତେବେଳେ ସାକ୍ଷତକଲି, ସେତେବେଳେ କେବଳ ବାରାନିଧି ନୁହନ୍ତି, ଓଡ଼ିଆ ସାହିତ୍ୟରେ ବିଲଙ୍କା କଥା ସମ୍ବଳିତ ଗ୍ରନ୍ଥର ରଚୟିତାଙ୍କ ସଂପର୍କରେ ଗବେଷଣା କରିବା ପାଇଁ ମୁଁ ପ୍ରସ୍ତାବ ଦେଲି । ଏ ହେଉଛନ୍ତି ଗବେଷଣା- ତତ୍ତ୍ୱାବଧାରକ କୃଷ୍ଣଚରଣ ବେହେରା, ଯିଏ କାହାକୁ ଗବେଷକ ଛାତ୍ର ଭାବରେ ଗ୍ରହଣ କରିବା ପୂର୍ବରୁ ତା'ର ଗବେଷଣା ପ୍ରବଣତା ପରଖି ନେଉଥିଲେ । ମୂଳରୁ କହିଦେଉଥିଲେ ଗବେଷଣାକୁ ଗବେଷଣା ଭଳି କରିବାକୁ ପଡ଼ିବ । ତରତର ହେଲେ ଚଳିବନି ।

ସାର୍‌ଙ୍କ ତତ୍ତ୍ୱାବଧାନରେ ପଞ୍ଜୀକରଣ କରିବା ପରେ କେତେଜଣ କହିଲେ 'ବାଳ ପାଚିଯିବ । ଧୈର୍ଯ୍ୟ ଅଛି ତ ?' ଆଉ କିଛି କହିଲେ 'କୃଷ୍ଣ ସାର୍ ନିଦା ପିଟା କାମ କରେଇବେ । ଖଇଚା ଛାଡ଼ିବେନି ।' ଯେଉଁମାନେ ବାଳ ପାଚିଯିବା କଥା କହିଥିଲେ ସେମାନଙ୍କ ତତ୍ତ୍ୱାବଧାନରେ ଗବେଷଣା କରିଥିବା ମୋର ବନ୍ଧୁମାନେ ମୋର ଯଥେଷ୍ଟ ପୂର୍ବରୁ ଡିଗ୍ରୀ ପାଇଗଲେ ସତ; କିନ୍ତୁ ସେମାନଙ୍କ ଗବେଷଣା ନିବନ୍ଧକୁ ଆଜି ପର୍ଯ୍ୟନ୍ତ ପ୍ରକାଶନର ଆଲୋକ ଦେଖିବାକୁ ଦିଆଗଲା ନାହିଁ । ଅସୂର୍ଯ୍ୟଂପଶ୍ୟା କରି ରଖି ଦିଆଗଲା । କାଳେ କେହି 'କାନ୍ଥ ଭାଙ୍ଗି କୁଜ ଦେଖିଦେବ'- ଏଇ ଡରରେ ବୋଧହୁଏ । କେବଳ ଘୁଣ ହିଁ ସେ ସବୁର ଗୁଣଗ୍ରାହକ । କିନ୍ତୁ ଯେଉଁମାନେ ଦ୍ୱିତୀୟ କଥାଟି କହିଥିଲେ ସେମାନେ ଅନୁଭବୀ ନିଶ୍ଚୟ । ସତରେ ସାର ଖଇଚା ଛାଡ଼ିନ୍ତି ନାହିଁ । ସମସ୍ତ ସମ୍ଭାବ୍ୟ ତଥ୍ୟଉତ୍ସକୁ ଖୋଜାଖୋଡ଼ା ପାଇଁ ପଠାନ୍ତି । ପରୋକ୍ଷ ସୂତ୍ରରୁ ସଂଗୃହୀତ ତଥ୍ୟକୁ ନାପସନ୍ଦ କରି ଉତ୍ସମୂଳ ନିକଟରେ ପହଞ୍ଚିବାକୁ ପରାମର୍ଶ ଦିଅନ୍ତି । ନିବନ୍ଧର ଭାଷା ବିନ୍ୟାସରୁ ବନାନ ଶୁଦ୍ଧି ପର୍ଯ୍ୟନ୍ତ ସବୁ ନିଜେ ଟିକିନିଖି କରି ଦେଖନ୍ତି । କୌଣସି ଥିରେ ସାଲିସ ନାହିଁ । ଏହି ପ୍ରସଙ୍ଗରେ ଘଟଣାଟିଏ କହେ । ମୋର ଗବେଷଣା ନିବନ୍ଧର ଶେଷ ପ୍ରତିଲିପି ପ୍ରସ୍ତୁତ ହୋଇ ସାରିଥାଏ । ପ୍ରେସ୍‌କୁ ଯିବ ବନ୍ଧେଇ ପାଇଁ । ଏହି ସମୟରେ ପତ୍ରଟିଏ

ପାଇଲି ସାର୍‌ଙ୍କ ପାଖରୁ । ପ୍ରେସ୍‌କୁ ବନ୍ଧେଇ ପାଇଁ ନ ପଠାଇ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଇ ଲେଖିଥିଲେ- 'ପ୍ରିୟତମ ପ୍ରଭାସ ।..ନଟବରବାବୁଙ୍କ ଥେସିସ୍ ବାହାରିଗଲା ପରେ କେବଳ ତମେ ତାକୁଇ ରିଫର କରିବ । ଟୀକାରେ ତାହାରି ନାମ ଉଲ୍ଲେଖ କରିବ । ଗୋଟିଏ ଥେସିସ୍ ପରିବର୍ତ୍ତିତ/ପରିବର୍ଦ୍ଧିତ ରୂପରେ ମୁଦ୍ରିତାକାରରେ ପ୍ରକାଶ ପାଇଗଲା ପରେ, ସେଇ ଥେସିସ୍‌ର ପାଣ୍ଡୁଲିପିକୁ ରିଫର କରିବା ଠିକ୍ ନୁହେଁ ।"(ତା ୧୫/୦୪/୯୨) 'ଗୁରୁବାକ୍ୟ ଶିରୋଧାର୍ଯ୍ୟ' ନ୍ୟାୟରେ ଆଦେଶ ପାଳିତ ହେଲା । ଡ. ନଟବର ଶତପଥୀଙ୍କ ଗବେଷଣା ନିବନ୍ଧ 'ପୁରାଣ ପରିଶୀଳନ'ର ପ୍ରକାଶିତ ରୂପ ଆଧାରରେ ଟୀକା ଟିପ୍ପଣୀର ସଂଶୋଧନ କରାଗଲା । ଟିକେ ଧନ୍ଦି ହେଲି, ସତ, କିନ୍ତୁ ଯଥା ସମ୍ଭବ ତ୍ରୁଟିମୁକ୍ତ କରି ନିବନ୍ଧଟିକୁ ପ୍ରସ୍ତୁତ କରିପାରିଥିବାରୁ ଆତ୍ମସନ୍ତୋଷ ମିଳିଲା । ପରବର୍ତ୍ତୀ କାଳରେ ମୋ ନିବନ୍ଧଟି ଯେତେବେଳେ ପ୍ରକାଶିତ ହୋଇ ପାଠକୀୟ ଆଦର ଲାଭ କଲା, ସେତେବେଳେ ମୁଁ ଡ. ବେହେରାଙ୍କ ଏଇ କାର୍ଯ୍ୟଶୈଳୀର ମହତ୍ତ୍ୱ ବୁଝିପାରିଲି । ଜାଣିପାରିଲି, ଆମ ଭାଷା-ସାହିତ୍ୟ ସଂପର୍କିତ ଚାରିପଞ୍ଚମାଂଶ ଗବେଷଣା ନିବନ୍ଧ ପ୍ରକାଶନର ସୁଯୋଗ ପାଉ ନଥିବା ବେଳେ ଡ. ବେହେରାଙ୍କ ତତ୍ତ୍ୱାବଧାନରେ ହୋଇଥିବା ଅଧିକାଂଶ ଗବେଷଣା ନିବନ୍ଧ କାହିଁକି ପୁସ୍ତକ ରୂପ ପାଇଛି । କାରଣଟା ବୋଧହୁଏ ତାଙ୍କର ସେଇ ତଥାକଥିତ 'ନିନ୍ଦାପିଟା' କାମ ।

ନିଆରା ମଣିଷ ଡ. ବେହେରା । ତାଙ୍କ ସମସାମୟିକ ଅନ୍ୟାନ୍ୟ ଅନେକଙ୍କଠାରୁ ଅଲଗା । ତାଙ୍କରି ଭାଷାରେ 'ସୃଷ୍ଟିଛଡ଼ା' । ନିଆରା ତାଙ୍କର ଚିନ୍ତାଧାରା- ଅସାଧାରଣ । ନିଆରା ତାଙ୍କର କାର୍ଯ୍ୟଶୈଳୀ-ସାଲିସବିହୀନ । ବୃତ୍ତିରୁ ପ୍ରବୃତ୍ତି ପର୍ଯ୍ୟନ୍ତ କୌଣସି କ୍ଷେତ୍ରରେ ବି ସାଲିସ ନାହିଁ । ପରାର୍ଥକୁ ପଛରେ ପକାଇ ସେ ଅର୍ଥ ପଛରେ ଦଉଡ଼ି ନାହାନ୍ତି, କି ଶ୍ରେୟଃକୁ ଅବହେଳା କରି ପ୍ରେୟରେ ମାତିଯାଇ ନାହାନ୍ତି । ଶିକ୍ଷକତା କ୍ଷେତ୍ରରୁ ସାହିତ୍ୟକ୍ଷେତ୍ର ପର୍ଯ୍ୟନ୍ତ ସବୁଠି ଖୋଲଅଣା ସଚ୍ଚୋଟ, କିଛି ନୂଆ କରିବାର ପ୍ରୟାସ । ଦେଖି ଅଣଦେଖା କରୁଥିବା ଲୋକଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ସତକଥାଟାକୁ ଦେଖେଇ ଦିଅନ୍ତି । ସେ ହକ କଥାରେ ହଟନ୍ତିନି କି ସତ କଥାରେ ସତ୍ତୁକୁ ବି ଛାଡ଼ନ୍ତିନି । ଭାରି ରୋକ୍ ଠୋକ । ବିଚାର ବିଶ୍ଳେଷଣ ବେଳେ ସେ ମୁହଁ ଦେଖି ମତ ଦିଅନ୍ତିନି । ଏଇ ସ୍ପଷ୍ଟବାଦିତା ପାଇଁ ଅନେକଙ୍କ ଛାତିରେ ସେ କଣ୍ଟା ହୋଇ ଲାଖିଛନ୍ତି । ଛାତିର ବ୍ୟଥା ହୃଦର କଥା ଉପୁଡେଇ ଆସିବା ବେଳେ ତାକୁ ଚୋକି ନ ପାରି ହଟହଟା ବି ହୋଇଛନ୍ତି । ଗୁଳାରେ ନ ଚାଲି ନୂଆ ଗୁଳା ତିଆରି କଲେ ଧଡ଼କଚ ତ ସହିବାକୁ ହେବ, ଦେହ ବି ବେରାମ ଲାଗିବ । ତଥାପି ହଟି ନାହାନ୍ତି ସେ । ଯେତେବେଳେ ଯେଉଁଠି ଟିକେ ବାଧା ବା ଆଘାତ ପାଇଛନ୍ତି ରବୀନ୍ଦ୍ରସଙ୍ଗୀତ ଶୁଣି ସାହସ ସଞ୍ଚୟ କରିଛନ୍ତି, ପୁଣି ଆଗେଇଛନ୍ତି ।

ଆଉ ପାଞ୍ଚଜଣଙ୍କ ଗୋଠରେ ନିଜକୁ ସାମିଲ ନ କରି ନିଜର ଏକ ଗୋଠ ତିଆରି କରିଛନ୍ତି । ସତରେ ସେ ଠିକ କହିଛନ୍ତି । ସତରେ ସେ ଠିକ୍ କହିଛନ୍ତି 'କାଳିଗାଇ ସେ ଭିନ୍ନ ତାଙ୍କର ଗୋଠ ।'

ତାଙ୍କ ଗୋଠ ଆଉ ଛୋଟ ହୋଇନାହିଁ ଖୁବ୍ ବଡ଼ ଏବେ । ଅନେକ ତରୁଣ ଓ ପ୍ରବୀଣ ଏଇ ଗୋଠରେ ସାମିଲ ହୋଇଛନ୍ତି । ସେ ଆଉ ବ୍ୟକ୍ତି ହୋଇ ରହିନାହାନ୍ତି, ଗୋଟାଏ 'ଇମେଜ୍' ପାଲଟିଯାଇଛନ୍ତି । ତାଙ୍କର ରୁଚି, ମତାଦର୍ଶ, ଜୀବନଧାରା ଅନେକଙ୍କୁ ଜାଣତରେ ବା ଅଜାଣତରେ ବହୁ ଭାବରେ ଅନୁପ୍ରାଣିତ କରିଛି । ସାହିତ୍ୟ ସଭାରେ ଲିଖିତ ଭାଷଣ ପ୍ରଦାନ ଭଳି ତାଙ୍କଦ୍ୱାରା ଆରମ୍ଭ ହୋଇଥିବା ଅନେକ କାର୍ଯ୍ୟ ଏବେ ପରଂପରାରେ ପରିଣତ ହେବାକୁ ବସିଲାଣି । ତାଙ୍କର ଅନେକ ପୁରୁଣା ବିଚାର ଏବେ ନୂଆ ରୂପରେ ଆଲୋଡ଼ନ ସୃଷ୍ଟି କଲାଣି । ଏବେ ଦୁଇ ତିନି ବର୍ଷ ହେଲା ଜଗନ୍ନାଥ ମନ୍ଦିରରେ ଅଣହିନ୍ଦୁ ପ୍ରବେଶ ନେଇ ଚର୍ଚ୍ଚା ଜୋର ଧରିଛି । ଜଗତର ନାଥଙ୍କୁ ହିନ୍ଦୁର ନାଥ କରି ସଙ୍କୁଚିତ କରି ଦିଆଯିବ ନା ଭକ୍ତର ନାଥ କରି ନାମକୁ ସାର୍ଥକ କରାଯିବ ସେ ନେଇ ବାଦବିବାଦ ଲାଗି ରହିଛି । ମୁଁ କହୁଛି ଆଜକୁ ତିନି ଦଶନ୍ଧି ତଳର କଥା । ତା ୨୩/୧୧/୧୯୮୮ ମସିହା । ପୁରୀ ବଡ଼ଦାଣ୍ଡସ୍ଥ ସାନ ହିନ୍ଦୀ ସ୍କୁଲ ଗୃହରେ ଗବେଷଣା ପରିଷଦର ପ୍ରବନ୍ଧ ପାଠଚକ୍ର ଆୟୋଜିତ ହୋଇଥାଏ । ଅପରାହ୍ଣ ୩ଟାରେ ପାଠଚକ୍ର । ଆମେ କିନ୍ତୁ ପୁରୀରେ ପହଞ୍ଚିଗଲୁ ପୂର୍ବାହ୍ନ ୧୦ ଘଟିକାରେ । ବୁଲାବୁଲି ପାଇଁ ଯଥେଷ୍ଟ ସମୟ ଥିବାରୁ ବାହାରି ପଡ଼ିଲୁ ଭ୍ରମଣରେ । ବିଭିନ୍ନ ସ୍ଥାନ ବୁଲିସାରି ଯେତେବେଳେ ବଡ଼ଦେଉଳ ଭିତରେ ପ୍ରବେଶ କରିବାକୁ ଯାଉଛୁ, ସାର୍ ଅଟକିଗଲେ । କହିଲେ- 'ତୁମେମାନେ ଦର୍ଶନ ସାରି ଫେରିଆସ । ମୁଁ ଏଇ ରଘୁନନ୍ଦନ ପାଠାଗାରରେ ବହି ଦେଖୁଛି ।' ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲି ସାର୍‌ଙ୍କୁ । ସିଂହଦ୍ୱାର ସମ୍ମୁଖକୁ ଆସି କେହି ଜଗନ୍ନାଥ ଦର୍ଶନ ନ କରି ଫେରିଯିବ ମୁଁ ଏକଥା ବିଶ୍ୱାସ କରିପାରୁ ନ ଥିଲି । ସାର୍ ବୋଧହୁଏ ମୋ ମନକଥା ବୁଝିଗଲେ । ସିଂହଦ୍ୱାର ସମ୍ମୁଖରେ ଲାଗିଥିବା ଏକ ବିଜ୍ଞାପନ ଫଳକକୁ ଦେଖେଇ କହିଲେ- 'ମୁଁ ତ ଅର୍ଥୋଡକ୍‌ସ ନୁହେଁ । ଯିବି କିପରି ?' ଦେଖିଲି ବିଜ୍ଞାପନ ଫଳକଟିରେ ଲେଖାଅଛି- 'Strictly for Orthodox Hindus.' ସେତେବେଳକୁ ଗବେଷଣା ପରିଷଦର ଅନ୍ୟ ସଦସ୍ୟମାନେ ମନ୍ଦିର ଭିତରକୁ ଚାଲି ଯାଇଥିଲେ । ସମସ୍ତେ ବୋଧହୁଏ ସାର୍‌ଙ୍କ ବିଚାରଧାରା ସହିତ ପରିଚିତ ଥିଲେ । ଏହାର ବହୁପୂର୍ବରୁ ବି ସେ ତାଙ୍କର ଧର୍ମଧାରଣା ସମ୍ପର୍କିତ ଏହି ସବୁ ବୈପ୍ଳବିକ ଆଭିମୁଖ୍ୟକୁ ସାର୍ବଜନୀନ କରି ସାରିଥିଲେ, 'ବିରଜା ବକ୍ତୃତା ମାଳା'ରେ ପ୍ରଦତ୍ତ ତାଙ୍କର ଅଭିଭାଷଣରେ(୧୯୬୯) । କେବଳ ଧର୍ମଧାରଣା କାହିଁକି ବିଭିନ୍ନ ପ୍ରସଙ୍ଗରେ ସେ

ବୈପ୍ଳବିକ ଚିନ୍ତାଧାରା ପ୍ରକଟ କରି 'ଜଗତରେ ନୂଆବାଟ ଫିଟାଇବା ପାଇଁ ଜାରି ରଖିଥିଲେ; ଯାହା ଜଣେ ପ୍ରକୃତ ପ୍ରାଧ୍ୟାପକ କର୍ତ୍ତବ୍ୟ ।

ମୁଁ ଜାଣେ ମୋର ସାର୍ ଆପଣାର ବୃତ୍ତିରେ ପ୍ରାଧ୍ୟାପକର ପଦୋନ୍ନତି ପାଇପାରି ନ ଥିଲେ । ସରକାରୀ ଅଙ୍କକଷାରେ ଅଛିଣ୍ଡା ହୋଇ ଅଟକି ଯାଇଥିଲେ । କିନ୍ତୁ ସେ ଥିଲେ ପ୍ରବୃତ୍ତିରେ ପ୍ରାଧ୍ୟାପକ । ଏଠାରେ କହି ରଖିବା ଉଚିତ ହେବ ଯେ ପ୍ରାଧ୍ୟାପକ ପଦବି, ପ୍ରାଧ୍ୟାପକ ପ୍ରବଣତା ଏକାକଥା ନୁହେଁ । ପ୍ରଥମଟି ଶିକ୍ଷକବୃତ୍ତିର ସର୍ବୋଚ୍ଚ ଉପାଧି, ଯାହା ବୟସର ସିଡ଼ି ଚଢ଼ି ହାସଲ କରି ହୁଏ । କିନ୍ତୁ ଦ୍ୱିତୀୟଟି ବିଶିଷ୍ଟ ବୈଜ୍ଞାନିକ ଆଲ୍‌ବର୍ଟ ଆଇନ୍ ଷ୍ଟାଇନ୍‌ଙ୍କ ଭାଷାରେ "ଶିକ୍ଷକର ସର୍ବୋଚ୍ଚ କଳା, ଯାହା ସୃଜନାତ୍ମକ ବକ୍ତବ୍ୟ ଓ ଜ୍ଞାନ ମଧ୍ୟରେ ଆନନ୍ଦକୁ ଉଜ୍ଜୀବିତ କରାଏ ।" ତେଣୁ ବିଶିଷ୍ଟ ଆମେରିକୀୟ ପ୍ରାବନ୍ଧିକ Curtis White ଯଥାର୍ଥରେ କହିଛନ୍ତି- Any one can be a teacher or professor, but not everyone can influence you to strive for excellence and make a difference in world around you." ❖

# ସାହିତ୍ୟିକ କୃଷ୍ଣଚରଣ

ଡ. ଶିବପ୍ରସାଦ ଦତ୍ତ

ଓଡ଼ିଆ ସାହିତ୍ୟ ଜଗତରେ ଡକ୍ଟର କୃଷ୍ଣଚରଣ ବେହେରା ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଭାବରେ ସୁପରିଚିତ । ସାହିତ୍ୟ ସାଧନା ଥିଲା ତାଙ୍କ ଜୀବନର ପରମ ବ୍ରତ । ପିଲାଟି ଦିନରୁ ବହୁ ଦୁଃଖ କଷ୍ଟରେ ଶିକ୍ଷା ଲାଭ କରି ଶିକ୍ଷାର ଶୀର୍ଷସ୍ଥାନରେ ପହଞ୍ଚି ପାରିଥିଲେ । ଓଡ଼ିଆ ସାହିତ୍ୟକୁ ନିଜର ସାଧନା ବଳରେ ବିଶ୍ୱ ଦରବାରରେ ପହଞ୍ଚାଇ ପାରିଥିଲେ । ଓଡ଼ିଆ ସାହିତ୍ୟର ଉନ୍ନତି କରିବା ଆପ୍ରାଣ ଚେଷ୍ଟା କରି ଏକ ସଫଳ ବ୍ୟକ୍ତିତ୍ୱ ଭାବରେ ଆମ ଆଗରେ ଦଣ୍ଡାୟମାନ ହୋଇଛନ୍ତି । ଶାନ୍ତିନିକେତନରୁ ଓଡ଼ିଆରେ ଏମ୍.ଏ. ପାସ କରି ସାରିବା ପରେ ଭଦ୍ରକ କଲେଜରେ ଅଧ୍ୟାପକ ଭାବରେ ବୃତ୍ତିଗତ ଜୀବନ ଆରମ୍ଭ କରିଥିଲେ । ଅଧ୍ୟାପନା ସାଙ୍ଗକୁ ସାହିତ୍ୟ ଚର୍ଚ୍ଚା ତାଙ୍କୁ ପ୍ରତିଷ୍ଠା ଦେଇପାରିଥିଲା । ସାହିତ୍ୟ ସାଧନା ସାଙ୍ଗରେ ମଣିଷକୁ ଭଲପାଇବା ସେ ଭଲଭାବରେ ଜାଣିଥିଲେ । ଜଣେ ଦକ୍ଷ ସହକର୍ମୀ ସାଙ୍ଗକୁ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ମହାବିଦ୍ୟାଳୟରେ ପରିଚିତ । ତାଙ୍କ ହୃଦୟ ଥିଲା ଅତ୍ୟନ୍ତ କୋମଳ । ସାହିତ୍ୟ ସାଧନାରେ ସେ ବହୁ ଘାତପ୍ରତିଘାତର ସମ୍ମୁଖୀନ ହୋଇଥିଲେ ମଧ୍ୟ ଜୀବନରେ ହାରିଯାଇ ନାହାନ୍ତି । ବିରାଟ ପ୍ରସ୍ତର ତଳୁ ତାଙ୍କର ସାହିତ୍ୟ ସାଧନା ଓଡ଼ିଆ ସାହିତ୍ୟରେ ନୂତନ ଆଲୋକର ସନ୍ଧାନ ଦେଇଥିଲା । ତାଙ୍କର ଆମାୟିକ ବ୍ୟବହାର, ବୌଦ୍ଧିକ ଚିନ୍ତା ଚେତନା ଓ ଆନ୍ତରିକତା ଭରା କଥୋପକଥନ ତାଙ୍କୁ ବହୁ ପଥ ଅଗ୍ରସର କରାଇପାରିଥିଲା ।

ଡକ୍ଟର ବେହେରା ଏକାଧାରାରେ ଜଣେ କବି, ଗାଳ୍ପିକ, ସମାଲୋଚକ, ସଂପାଦକ, ସଂଗଠକ, ପ୍ରାବନ୍ଧିକ, ନାଟ୍ୟକାର, ରମ୍ୟରଚନାକାର, ଏକାଙ୍କିକାକାର ଗବେଷକ ଓ ନିର୍ଦ୍ଦେଶକ ମଧ୍ୟ । ପାରିବାରିକ ଜୀବନରେ ସେ ଜଣେ ଯୋଗ୍ୟ ପିତା ଭାବରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସ୍ତ୍ରୀ ଜୟନ୍ତୀ ଦେବୀ, ପୁଅ ବାପୁଭାଇ, ଟୁଟୁଭାଇ ଓ ଝିଅ ଚୁନିଅପାଙ୍କୁ ତାଙ୍କର ସୁଖର ସଂସାର ଆଗେଇ ଚାଲିଥିଲା । କିନ୍ତୁ ଜୀବନର ଶେଷ ଅବସ୍ଥାରେ ସ୍ତ୍ରୀ ଓ ଟୁଟୁଭାଇଙ୍କ ଦେହାନ୍ତ ତାଙ୍କୁ ଅତ୍ୟନ୍ତ କଷ୍ଟ ଦେଇଥିଲା ।

ସୁନାର ସଂସାର ଭାଙ୍ଗି ଚୁରମାର ହୋଇଯାଇଥିଲା । ପିଲାମାନଙ୍କୁ ମଣିଷ କରି ଗଢ଼ି ତୋଳିବାର ଉପାୟ ଭଲ ଭାବରେ ଜାଣିଥିଲେ । ଜୀବନରେ ପୁତ୍ର ଶୋକ ତାଙ୍କୁ ବହୁ ଆଘାତ ଦେଇଥିଲା । ତଥାପି ସେ ଭାଙ୍ଗି ନପଡ଼ି ଜୀବନର ଚଲାପଥରେ ବହୁ ସାହସ ଓ ଧୈର୍ଯ୍ୟର ସହ ଆଗେଇ ଚାଲିଥିଲେ । ସବୁ ସମସ୍ୟାର ସମାଧାନ ପରେ ନିଜର ମୋହ, ମାୟା, ଲୋଭ, ଆକାଂକ୍ଷାକୁ ଛାଡ଼ି ଆରପାରିକୁ ଚାଲିଯାଇଥିଲେ ।

ଡକ୍ଟର ବେହେରା ଜଣେ ସଚ୍ଚୋଟ, ବିଜ୍ଞ, ସାହସୀ, ନିର୍ଭୀକ, ଧୈର୍ଯ୍ୟବାନ, ଗବେଷକ, ସଂପାଦକ, ନିର୍ଦ୍ଦେଶକ ଓ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ବେଶ୍ ପରିଚିତ ଥିଲେ । ସାହିତ୍ୟ ସୃଷ୍ଟି କରିବା ଥିଲା ତାଙ୍କର ପେସା ଓ ନିଶା । ଅଧ୍ୟାପକ ଓ ଅଧ୍ୟାପନା କଳାକୁ ସେ ଟିକିନିଖି ପରୀକ୍ଷା କରି ତା'ର ନିର୍ଯାସକୁ ହୃଦୟଙ୍ଗମ କରିଥିଲେ । ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ପାଇଁ ସେ ବହୁ ଚେଷ୍ଟାକରି ସଫଳ ହୋଇଥିଲେ । ବଙ୍ଗାଳୀମାନେ ଓଡ଼ିଆ ଭାଷାକୁ ବିରୋଧ କରି ଓଡ଼ିଶାରେ ଓଡ଼ିଆ ସାହିତ୍ୟକୁ ବୁଡ଼ାଇ ଦେବା ପାଇଁ ଚାହିଁଥିଲେ । ଡକ୍ଟର ବେହେରା ଶାନ୍ତି ନିକେତନରେ ପାଠ ପଢ଼ିବା ସମୟରେ କବିତା, ପ୍ରବନ୍ଧମାନ ରଚନା କରି ଓଡ଼ିଆ ଭାଷାର ପରାକାଷ୍ଠା ଦେଖାଇଥିଲେ । ସେ ଥିଲେ ଯେଉଁଭଳି ସ୍ୱାଭୀମାନ, ସେହିପରି ନିର୍ଭୀକ ଓ ସ୍ପଷ୍ଟବାଦୀ । ଓଡ଼ିଆ ସାହିତ୍ୟର ସବୁ ବିଭାଗରେ ଲେଖନୀ ଚାଳନା କରି ସଫଳ ହୋଇଥିଲେ । 'ଚା' କପ୍‌ରେ ଝଡ଼', '୫୪, ଭାନୁବାଈ ଲେନ୍', 'ଲଘୁ ପଞ୍ଚକ' ପ୍ରଭୃତି କବିତା ରଚନା କରିଥିଲେ । କବିତାଗୁଡ଼ିକରେ ବାସ୍ତବତାର ସ୍ୱର ଓ ସ୍ୱାକ୍ଷର ଦେଖିବାକୁ ମିଳେ । ଯଥା ନଳସ୍ୟ ଦମୟନ୍ତୀ ନାଟ୍ୟକୃତୀ ବ୍ୟତୀତ, ସୃଷ୍ଟିର ସ୍ୱପ୍ନ, ବେଦୀ ଇତ୍ୟାଦି ଗଳ୍ପ, ନାରୀ ଏକ ନଦୀର ନାମ, ଐତରେୟ, ମାଟିମାଗୁଣି, ଶ୍ରେଷ୍ଠଗଳ୍ପ, ନାରୀମେଧ ପ୍ରଭୃତି ଗଳ୍ପ ସଂକଳନ ପ୍ରକାଶ କରିଥିଲେ । ଗଳ୍ପଗୁଡ଼ିକରେ ତତ୍କାଳୀନ ସମାଜର ବାସ୍ତବ ଚିତ୍ର ଦେଖିବାକୁ ମିଳେ । 'ବେଦୀ' ଗଳ୍ପ ପାଇଁ ସେ ବହୁ ବହୁ ସମାଲୋଚନାର ଶରବ୍ୟ ହୋଇଥିଲେ । ଏଥିରେ ମଣିଷର ଯୌନକ୍ଷୁଧାକୁ ଅତ୍ୟନ୍ତ ପ୍ରାଞ୍ଜଳ ଭାବରେ ପ୍ରକାଶ କରିଛନ୍ତି । ସେହିପରି ପ୍ରଗତି ସାହିତ୍ୟ, କଥା ସାହିତ୍ୟ, ଅଶ୍ଳୀଳତା ବିପକ୍ଷରେ, ଓଡ଼ିଆ ଉପନ୍ୟାସ, ଅଧ୍ୟାପକର ବେଦନା, ନାଟ୍ୟ ସାହିତ୍ୟ ପରିଚୟ, ସଂପାନ ସନ୍ଦର୍ଭ, କୁସୁମ କେଳି, କୃଷ୍ଣଚରଣ ବୀଥିକା, ବୀକ୍ଷାବିଚିତ୍ରା ପ୍ରଭୃତି ରଚନା କରି ଓଡ଼ିଆ ସାହିତ୍ୟର ନୂତନ ଆଲୋକର ସନ୍ଧାନ ଦେଖିଥିଲେ । ଏହା ବ୍ୟତୀତ ତାଙ୍କର ବହୁ ସଂପାଦିତ ପୁସ୍ତକ ଦେଖିବାକୁ ମିଳେ । ଯଥା- କବିଶେଖର ଚିନ୍ତାମଣି, ମୋଗଲ ତାମସା, ଚୟନିକା, ଏକାଙ୍କିକା ଚୟନ, କଳାବତୀ, କବିସୂର୍ଯ୍ୟ ଗ୍ରନ୍ଥାବଳୀ, ଫକୀରମୋହନ ଗ୍ରନ୍ଥାବଳୀ, ପ୍ରୀତିସୁଧାକର, ବୈଦେହୀଶ ବିଳାସ ପ୍ରଭୃତି ସଂପାଦନା କରି ଓଡ଼ିଆ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି କରିଥିଲେ । ସେ

ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ବର୍ଦ୍ଧିତ ହୋଇଥିଲେ । ବିଷ୍ଣୁବ ମିଳନ ପୁରସ୍କାର, କେଦାରନାଥ ଗବେଷଣା ପୁରସ୍କାର, ଉତ୍କଳ ପାଠକ ସଂସଦ ସାରସ୍ୱତ ସମ୍ମାନ, ନାଟ୍ୟଭୂଷଣ ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସାହିତ୍ୟ ଭାରତୀ ସମ୍ମାନ ପ୍ରଭୃତି ।

ଓଡ଼ିଆଭାଷାର ଶାସ୍ତ୍ରୀୟମାନ୍ୟତା ଓ ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ବହୁବାର ଚେଷ୍ଟା କରିଥିଲେ । ଡକ୍ଟର ବେହେରାଙ୍କ ଓଡ଼ିଆ ଉପନ୍ୟାସ, ନାଟ୍ୟ ସାହିତ୍ୟ ପରିଚୟ, ଗଳ୍ପ ଓ ଉପନ୍ୟାସ, ମୋଗଲ ତାମସା ପ୍ରଭୃତି ତାଙ୍କର ଅନବଦ୍ୟ ସୃଷ୍ଟି । ସେ ଜଣେ ଦକ୍ଷ ପୁସ୍ତକ ସମୀକ୍ଷକ । ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା' ତାଙ୍କର ଏକ ମାଇଲଷ୍ଟମ୍ଭ । 'ଏଷଣା'ରେ ବହୁ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କର ଲେଖା ଆତ୍ମପ୍ରକାଶ କରିବା ସଂଗେ ସଂଗେ ବହୁ ନୂତନ ପୁସ୍ତକର ସମୀକ୍ଷା ପ୍ରକାଶ ପାଇଥାଏ । ଜୀବନର ଶେଷନିଃଶ୍ୱାସ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଚଳଚଞ୍ଚଳ ଥିଲା । ଦୀର୍ଘକାଳ ଧରି ସାହିତ୍ୟର ବିଭିନ୍ନ ପରୀକ୍ଷାନିରୀକ୍ଷା, ସଂପାଦନା, ସଂଗଠନ, ସମୀକ୍ଷକ ଭାବରେ ନିଜକୁ ନିୟୋଜିତ କରିଥିଲେ । 'ଓଡ଼ିଆ ଗବେଷଣା ପରିଷଦ' ଗଠନ କରି ବହୁ ଉପାଦେୟ ପୁସ୍ତକର ପୁନରୁଦ୍ଧାର କରିଥିଲେ । ପ୍ରାଚୀ ସାହିତ୍ୟ ଭଳି ଗବେଷଣା ପରିଷଦ ମୁଣ୍ଡଟେକି ଠିଆ ହୋଇଥିଲା । ଗବେଷଣା ପରିଷଦର ମେମ୍ବର ସଂଗ୍ରହ କରି ଏଷଣା ପ୍ରକାଶ କରିବା ସଂଗେ ସଂଗେ ତା'ର ବାର୍ଷିକ ଉତ୍ସବ ଓ କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର ପ୍ରଦାନ କରିଛନ୍ତି । ଓଡ଼ିଆ ଗବେଷଣା ପରିଷଦ ଓ ଏଷଣା ଥିଲା ତାଙ୍କ ଜୀବନର ଥଲା ମହାନ ଲକ୍ଷ୍ୟ । ❖

ଅଧ୍ୟକ୍ଷ, ପି.ଏ. କଲେଜ, ବଉଳସାହି, ନୟାଗଡ଼
ମୋ-୯୪୩୭୩୬୬୨୬୭

# କୃଷ୍ଣଂ ବନ୍ଦେ ଜଗଦଗୁରୁଂ

ଡ. ଗୋପାଳକୃଷ୍ଣ ଆଚାର୍ଯ୍ୟ

ଗୋଟେ ଅସଜଡ଼ା ହାତକୁ ସିଏ ଏକ ରକମ ସଜାଡ଼ି ଦେଇଛନ୍ତି, ଦେଇଛନ୍ତି ବୋଲି ବାରମ୍ବାର ମୋ ଆଗରେ, ପଛରେ, କଡ଼ରେ-ନାଇଁ ତ ଏବେ ସବା ଉପରେ ମୋତେ ଆକଟୁଛନ୍ତି; ଆକଟୁଛନ୍ତି ତ ଆଦରର ହସ ଚେନାଏ ବିଛାଡ଼ି ଦେଉଛନ୍ତି । ଆଜି ତାଙ୍କର ଅବର୍ତ୍ତମାନକୁ ବର୍ଷେ ପୂରିଗଲାଣି । ସଢସଢ-ମୋଟେ ପ୍ରତେ ହେଉନି । ସେ ପ୍ରଜ୍ଞାଦୀପ୍ତ ଆଖିହଳକ, ସେ ତାରକସି ଅକ୍ଷରମାଳାର ତୂଳୀପଟକ ଏବେ ବି ଗହଳଚହଳ ମନୋଭୂମିରେ । କେଉଁଠି କେମିତି ବିନ୍ଦାସ ଚକାମାଡ଼ି ବସିଯାଇଛନ୍ତି । ମୁଁ ବିବାକ୍ ଶୂନ ହୋଇଯାଉଛି ତାଙ୍କ କଥା ହେତୁ କଲେ । ମୋ ଚୈତନ୍ୟରେ ଚନ୍ଦନ ହୋଇ ଚିରଦିନ ବସି ରହିବେ ମୋ ପ୍ରିୟ ଦିବ୍ୟଗୁରୁ ଗୁରୁମା'ଙ୍କ ଗୁରୁ- ପ୍ରଫେସର୍ ବେହେରା- ଡ.କୃଷ୍ଣଚରଣ ବେହେରା ।

ବିଲ୍‌କୁଲ ସାଦାସିଧା । ପରିଧାନ ଖଣ୍ଡିଏ ସାର୍ଟ ଓ ଗୋଟିଏ ଲୁଙ୍ଗି । ମୃଦୁମୃଦୁ କଥା । କଥା ଭିତରେ କେତେ ଯେ ଅଭିଜ୍ଞତା । କି ବିଶାଳ ପୁରୁଷାକାର ନଥିଲା ତାଙ୍କଠି ! ଚଷମା ତଳେ ଯେଉଁ ଆଖିଯୋଡ଼ାକ ସ୍ଥିର ଥିଲା, ସେ ଦୁଇଟି କଥାକୁହା ଥିଲେ । ଦେଖିବା ମାତ୍ରକେ ତ୍ରୁଟି ଅପସରି ଯାଉଥିଲା । ପ୍ରଥମେ ମୋ ଗାଇଡ୍ ପ୍ରିୟ ବଡ଼ଭଉଣୀ ପ୍ରତିମା ମନ୍ଦାକିନୀ ମାଡ଼ାମ୍(ଡ.ମନ୍ଦାକିନୀ ଦାସ) ମୋତେ ନେଇଯାଇଥିଲେ ସାର୍‌ଙ୍କ ଉତ୍କଳ ଆପାର୍ଟମେଣ୍ଟର ବାସଭବନର ଡ୍ରଇଂରୁମ୍ ଯାଏ । ମୁଁ ଶଙ୍କିତ ହେଉଥିଲି; ଶିହରିତ ବି ହେଉଥିଲି । ଶଙ୍କିତ ହେଉଥିଲି ଏଇଥିପାଇଁ ଯେ ଜଣେ ଶାଳପ୍ରାଂସୁ ତୁଙ୍ଗଶିଖରକୁ ମୁହଁ ଉଠେଇ ଅନେଇ ପାରିବି ତ ? ମୋର ସୀମିତ ଅଧ୍ୟୟନ ପ୍ରଚୁର ପ୍ରଗଳଭ୍‌ତାର ଭଣ୍ଡାମିକୁ ନେଇ ମୁଁ ଉପହସିତ ହେବିନି ତ ? ଶଙ୍କା ମଧ୍ୟରେ ମୋତେ ଦଗ୍‌ଧୀଭୂତ କରୁଥିଲା ଆଉ ଏକ ଉତ୍କଣ୍ଠା । ତାହା ହେଉଛି ମୁଁ ଏଭଳି ଅନୁବନ୍ଧ ସହିତ ସାମିଲ୍ ହୋଇ ସତରେ ସଫଳ ହୋଇପାରିବି ତ । ଯତ୍‌କିଞ୍ଚିତ୍ ଗପ, କବିତା ଲେଖି ଆଲୋକ ଦେଖିଥିବା ଏଇ କ୍ଷୁଦ୍ର ମଣିଷଟି ଗଦ୍ୟଗବାକ୍ଷରେ କୃଷ୍ଣଚରଣଙ୍କୁ ଉଚିତ୍ ନିରୀକ୍ଷଣ

କରିପାରିବ ତ ? ସତରେ କି ଦୁଃସାହସ ଓ ଆଶୀର୍ବାଦରେ ମୁଁ ଧାଇଁ ଯାଇ ନଥିଲି ସେଦିନ । ୨୦୦୭ ମସିହାର ଏକ ଅଳସ ଅପରାହ୍ଣରେ ମୋ ତତ୍ତ୍ୱାବଧାରକାଙ୍କ ସହ ମୁଁ ସେଦିନ ସାର୍‌ଙ୍କ ନାତି ଦୀର୍ଘ ଡ୍ରଇଂରୁମ୍‌ର ବାହାରପଟ କାନ୍ଥକୁ ଆଉଜି ଦ୍ରୁତ ହୃତ୍‌ସ୍ପନ୍ଦନରେ ଏମିତି କିଛି ଅଣ୍ଡିରେ ଆଶୁ ସମ୍ଭାବନାକୁ ସ୍ୱାଗତ କରିବାକୁ ଏକ ରକମ ପ୍ରସ୍ତୁତ ହୋଇଯାଇଥିଲି । ଏଥର ଆସିବା ଶିହରଣ ଆଡ଼କୁ । ମୁଁ ଶିହରିତ ଏଇଥିପାଇଁ ହେଉଥିଲି ଯେ 'ମୋଗଲ ତାମସା'ର ପ୍ରଚାରକୁ ଅସଂଖ୍ୟ ଗୁରୁମାନଙ୍କର ମାର୍ଗଦର୍ଶକ, ଜଣେ ସଫଳ ପ୍ରଗତିବାଦୀ କବି, ନାଟ୍ୟକାର, ଆଲୋଚକ, ସମ୍ପାଦକ, ସମୀକ୍ଷକ, ସ୍ତମ୍ଭକାର ତଥା ଅଭିନେତାଙ୍କୁ ଗୋଟିଏ ଆଳରେ ମୁଁ ଭେଟିବାର ସୁଯୋଗ ପାଇଛି । ଏହାଠାରୁ ବଳି ପରମସୌଭାଗ୍ୟ ମୋ ଜୀବନରେ ଆଉ କ'ଣ ଥାଏ ? ଶିହରିତ ହେବାର ଆଉ ଏକ ହେତୁ ହେଲା 'ଓଡ଼ିଆ ଗବେଷଣା ପରିଷଦ' ଭଳି ଏକ ନିରୋଳା ସାହିତ୍ୟ ନିରାଜନା ପ୍ରତିଷ୍ଠାନ; ଯାହା ଜରିଆରେ ପ୍ରଜ୍ଞା ଓ ସାରସ୍ୱତ ବୋଧିଚିତ୍ତର ବିକାଶ ଘଟେ, ତାହାର ପ୍ରତିଷ୍ଠା ତାଙ୍କର ସାନ୍ନିଧ ପ୍ରାପ୍ତିର ଆହ୍ଲାଦ ଉନ୍ମାଦନା । ମନେଅଛି ମୋର ଜ୍ୟେଷ୍ଠାଭଗ୍ନୀ ସମା ସହକର୍ମୀ ଡ. ମନ୍ଦାକିନୀ ଦାସ(ଯେ ପରେ ମୋ ମାର୍ଗଦର୍ଶିକା ହୋଇଥିଲେ) ଯେତେବେଳେ ହାତରେ ଦୁଇ ତିନିଖଣ୍ଡ 'ଏଷଣା' ଜର୍ଣ୍ଣାଲ ଧରି ତହିଁରୁ ଗୋଟିଏ ମୋତେ ମାଗଣାରେ ଦେଇଥାନ୍ତି, ସେତେବେଳେ ମୁଁ ନିଜକୁ କାହିଁରେ କ'ଣ ମନେ କରେ । 'ଏଷଣା' ପତ୍ରିକାର ଗାମ୍ଭୀର୍ଯ୍ୟ ଓ ସାରସତ୍ତାକୁ ମୁଁ ଅନେକ ପୂର୍ବରୁ ଉପଲବ୍ଧି କରିଛି । ଏହାର ଲେଖକ/ଲେଖିକାମାନଙ୍କୁ ମୁଁ ସବୁବେଳେ ବିଜ୍ଞ ଆଲୋଚକ/ ଆଲୋଚିକାଙ୍କ ସ୍ଥାନ ଦେଇଥାଏ । ଥରେ ମାଡ଼ାମଙ୍କୁ ମୁଁ ଗବେଷଣା ପରିଷଦର ସଦସ୍ୟ ହେବି ବୋଲି ଇଚ୍ଛା ପ୍ରକଟକରି କହିବାରୁ ମାଡ଼ାମ୍ ଏଥିପାଇଁ କେତେଗୁଡ଼ିଏ ଯୋଗ୍ୟତା ଓ ସର୍ତ୍ତାବଳୀ ଅଛି ବୋଲି କହିଥିଲେ । ମୁଁ ସେଇଦିନ ଟିକେ ଭାଙ୍ଗି ପଡ଼ିଥିଲି । ପରେ ଅବଶ୍ୟ ମାଡ଼ାମ୍ ମୋତେ ନେବାକୁ ଡ. ବେହେରା ରାଜି ଅଛନ୍ତି ବୋଲି କହିଲେ । ସେଦିନ ମୋର ଆନନ୍ଦ କହିଲେ ନ ସରେ । 'ଏଷଣା' ପତ୍ରିକାର ଏନ୍ତୁଡ଼ିଶାଳ ଥାଏ ଡ. ବେହେରାଙ୍କ ଘରେ । ଟିକିନିଖି ସବୁ ଲେଖାର ଶୀର୍ଷକଠାରୁ ଆରମ୍ଭ କରି ପ୍ରସଙ୍ଗ ନିର୍ବାଚନ ତଥା ଉପଯୁକ୍ତ କ୍ରମରେ ସଜାଇ ରଖି ଏହାକୁ ସମ୍ପୂର୍ଣ୍ଣ ନିର୍ଭୁଲ ଭାବରେ ଲୋକଲୋଚନକୁ ଆଣିବାକୁ ସାର୍ ଅନେକ ବିନିଦ୍ର ରଜନୀ ବିତାଇଥାନ୍ତି । କେବଳ ସେତିକି ନୁହେଁ ଛପା ହେବା ପରେ ବହିଗୁଡ଼ିକ ଯେପରି ବୁକ୍ ପୋଷ୍ଟରେ ସଦସ୍ୟମାନଙ୍କ ପାଖକୁ ଉଚିତ ସମୟରେ ପଠାଯିବ, ସେ କଥା ମଧ୍ୟ ବୁଝାନ୍ତି । ସାର୍ ଥରେ ଅସୁସ୍ଥତାରୁ ଉଠି ବହିଗୁଡ଼ିକ ମାଟିଆ ଖୋଳରେ ଅଠା ମରାହୋଇ କେମିତି ପଠାଯିବ, ସେଇ ଚିନ୍ତାରେ ଥାଆନ୍ତି । ମନ୍ଦାକିନୀ ମାଡ଼ାମ୍ ମୋତେ ନେଇ ସେଇଠି ହାବୁଡ଼େଇଲେ । ସାର୍ ସୋଫା ଉପରେ ବସି ସବୁ

ନିରେଖୁଥା'ନ୍ତି । ମୋର ବଙ୍କା ଟେଢ଼ା ଖୋଳ ମଡ଼ାଣ ଓ ଅଠାଦିଆ ଦେଖି ସେ ଆଉ ସମ୍ଭାଳି ନ ପାରି ନିଜେ ଉଠି ଆସିଲେ ଓ ମୋତେ ପ୍ୟାକିଂ କରିବାର ସୂତ୍ର ବତାଇ ଦେଲେ । କେଡ଼େ ଛୋଟ କଥାଟିଏ ହେଲେ ବି କି ନିଅତିଆ ଢଙ୍ଗରେ ସାର୍ ସେଇଟିକୁ ତୁଲଉ ନଥିଲେ ସତେ ! ଏହା ବୋଧହୁଏ 'ଡଗର'ର ଡେଉଁରିଆ । ଯେଉଁଟିକୁ ଏକଦା ହାତରେ ବାନ୍ଧି ସାର୍ ଭେଟିଥିଲେ ଅନେକ ପ୍ରତିଭା ପରଶମଣିକୁ । ସାର୍‌ଙ୍କ କଳାକୁଶଳତା, ନିଜ ମନୋଭାବ ସମଗ୍ର ଓଡ଼ିଶାରେ ପ୍ରାୟ ବହୁତ କମ୍ ଲୋକ ଆପଣେଇ ଥିବେ । କବିଚନ୍ଦ୍ର କାଳୀଚରଣ, ନିତ୍ୟାନନ୍ଦ ମହାପାତ୍ର, ସୁରେନ୍ଦ୍ର ମହାନ୍ତି ଓ ମାୟାଧର ମାନସିଂହ ଆଦିଙ୍କ ସଂସ୍ରବ ଓ ସାହଚର୍ଯ୍ୟରେ ସାର୍‌ଙ୍କ ସାରସ୍ୱତ ନିଳୟଟି ଯେପରି ଉର୍ଜ୍ଜସ୍ୱଳ ହୋଇଛି, ତତୋଽଧିକ ସୁମାର୍ଜିତ ମଧ୍ୟ ହୋଇପାରିଛି । ମାଡ଼ାମ୍ ଯେଉଁଦିନ ମୋ ହାତରେ ବଢ଼ାଇ ଦେଲେ 'ଆଖିର ଦେଖା ପ୍ରାଣର କଥା'; ମୁଁ ଏକାନିଃଶ୍ୱାସରେ ପଢ଼ିଗଲି ଗୋଟିଏ ରାତିରେ । ଏଡ଼େ ମୋଟ ବହି । ସାର୍‌ଙ୍କ ଜୀବନାନୁଭୂତି ଓ ସର୍ଜ୍ଜନାମାଳା ଏତେ ରୁଚିଶୀଳ ଓ ପ୍ରଭାବଶାଳୀ ଯେ ଏହାକୁ ନ ସାରିବାଯାଏ ଆଖିକୁ ନିଦ ଆସିଲା ନାହିଁ ।

ସାର୍‌ଙ୍କର ସତ୍‌ସାହସକୁ ସତରେ ମାନିବାକୁ ପଡ଼ିବ । ସେ ଖାଲ ହେଉ ବା ଢିପ ସେ ସବୁ ଅମଡ଼ା ମାଡ଼ି ଚାଲନ୍ତି । ଅନେକ ଥର ଝୁଣ୍ଟି ଲହୁଲୁହାଣ ଯେ ନ ହୋଇଛନ୍ତି, ସେ କଥା ନୁହେଁ । ଏଥିପାଇଁ  ତାଙ୍କୁ ପିନ୍ଧିବାକୁ ପଡ଼ିଛି ଅନେକ କଣ୍ଟକ ଓ କୁସୁମର ମାଳା । ପରବର୍ତ୍ତୀ ସମୟରେ ଏହା ମଧ୍ୟ ତାଙ୍କ ପ୍ରସିଦ୍ଧି ଲେଖକୀୟତାକୁ ଶ୍ରୀମନ୍ତ କରିପାରିଛି । 'ବେଦୀ' ଓ 'ମୋର ସେଇ ଅବ୍ୟର୍ଥ ଅଙ୍ଗ' ଦୁଇଟିକୁ କିଛି ଛଦ୍ମ ଭଦ୍ର ସାହିତ୍ୟିକ ନାକ ଟେକିଛନ୍ତି । 'ବେଦୀ' ଗପ ପାଇଁ ତାଙ୍କୁ କଲେଜ କର୍ତ୍ତୃପକ୍ଷଙ୍କ କାଠଗଡ଼ାରେ ଠିଆ ହେବାକୁ ପଡ଼ିଛି । ତଥାପି ସେ ହଟି ନାହାନ୍ତି । ବରଂ ଏହା ଖୋରାକ ଯୋଗାଇଛି ତାଙ୍କୁ ଲେଖିବାକୁ 'ଅଶ୍ଳୀଳତା ବିପକ୍ଷରେ' ।

ମନ୍ଦାକିନୀ ମାଡ଼ାମ୍ ଡ. ବେହେରାଙ୍କର ପିଏଚ୍.ଡ଼ି. ଛାତ୍ରୀ । ଏଥିପାଇଁ ତାଙ୍କୁ ବାରବର୍ଷ ଆଦିବାସୀ ବସ୍ତି ସହିତ ସିଧାସଳଖ ସମ୍ପର୍କ ରଖିବାକୁ ପଡ଼ିଛି । ଜଣେ ମହିଳାଙ୍କଠାରେ ଏପରି ଗବେଷଣାନିଷ୍ଠା ଓ ଉଦ୍ୟମ ପରାୟଣତା ଭରିଦେବା ସତରେ ଏକ ଦୁରୁହ ବ୍ୟାପାର । ସାର୍‌ଙ୍କ ଅନୁପ୍ରେରଣାରେ ମାଡ଼ାମ୍ ସେ କାମରେ ହାତ ଦେଇ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଛନ୍ତି । ମାଡ଼ାମ୍ ତାଙ୍କ ଅଧ୍ୟବସାୟ ଦିବସଗୁଡ଼ିକର ଶ୍ରାନ୍ତି ଓ ଶାନ୍ତି ପ୍ରସଙ୍ଗରେ ମୋ ଆଗରେ ଯେତେବେଳେ ବଖାଣି ବସନ୍ତି, ମୁଁ ଚକିତ ହୋଇଯାଏ । ଡ. ବେହେରାଙ୍କ ସହ ମାଡ଼ାମ୍‌ଙ୍କର ସମ୍ପର୍କ ଥିଲା ଏକାନ୍ତ ପାରିବାରିକ । ବାପୁଭାଇ ଓ ଟୁଟୁଭାଇଙ୍କୁ ମାଡାମ୍ ନିଜ ଭାଇଙ୍କ ପରି ଆଦର କରନ୍ତି । ଜୟନ୍ତୀ ମାଡ଼ାମ୍‌ଙ୍କ ଜୀବିତାବସ୍ଥାରେ ତାଙ୍କ ସହ ବେଶ୍ ଅନ୍ତରଙ୍ଗ ଭାବରେ ମିଶନ୍ତି । ଏହା ବୋଧହୁଏ

ସାର୍‌ଙ୍କ ଉତ୍ତମ ଗୁରୁଶିଷ୍ୟ ସମ୍ପର୍କର ବଡ଼ ନମୁନା । ମୋ ପରି କାର୍ଯ୍ୟଘେନା ପ୍ରୀତିକୁ ବିଶ୍ୱାସ କରିଥିବା ଲୋକଟି ସମ୍ଭବତଃ ସାର୍‌ଙ୍କର ଏଇଥିପାଇଁ ଏତେ ନିକଟତର ହୋଇ ପାରି ନଥିଲା । ମୋର ସାର୍‌ଙ୍କ ସହ ପ୍ରଥମ ଭେଟ ହେବାର ସ୍ମୃତି ଏବେ ବି ପୁଲକ ଭରି ଦେଉଛି ସାରା ତନ୍ତ୍ରୀରେ । ମାଡ଼ାମ୍ ସାର୍‌ଙ୍କ ସହ ମୋତେ ଚିହ୍ନା କରାଇଥିଲେ ୨୦୦୭ ମସିହାରେ । ମାତ୍ର ଏଗାରବର୍ଷର ସମ୍ପର୍କ ଭିତରେ ମୋ ଦ୍ୱାରା ଗୋଟିଏ ଭକ୍ତିଦୀପ ଜଳି ଉଠିଲା, ସେତିକି ମୋର ଲାଭ, ଜୀବନର ଏକ ମହାଭାବ, ମୋ ସଞ୍ଚିତ ସମସ୍ତ ସାରସ୍ୱତ ପୁଣ୍ୟର ମହାଭାଗ ଗବେଷଣା ନିବନ୍ଧ । 'ପ୍ରାବନ୍ଧିକ ଓ ସାହିତ୍ୟ ସମାଲୋଚକ ଡ. କୃଷ୍ଣଚରଣ ବେହେରା, ଏକ ଅଧ୍ୟୟନ' । ଏ ଲାଭର ସମସ୍ତ ଶ୍ରେୟ ସାର୍‌ଙ୍କର, ମୁଁ ନିମିତ୍ତ ମାତ୍ର । ଦୁଃଖ ରହିଗଲା ଯେ ଥେସିସ୍‌ଟି ଏଯାବତ୍ ମୁଦ୍ରିତ ରୂପ ପାଇପାରିଲା ନାହିଁ । ସାର୍‌ଙ୍କର ଶେଷ ଇଚ୍ଛା ପୂର୍ଣ୍ଣ ହୋଇ ପାରିଲା ନାହିଁ । ଏଇଟା କାର୍ଯ୍ୟଘେନା ପ୍ରୀତି ଛଡ଼ା କ'ଣ ହୋଇପାରେ ଯେ ?

ସାର୍‌ଙ୍କ ଘରକୁ ଗଲେ ଶେଷ କେଇଦିନ କଳାହାଣ୍ଡିଆ ମେଘମେଦୁର ମୁଖମଣ୍ଡଳରୁ ଦି'ଧାର ହସର ବିପୁଳ ଚମକ ଦେଖି ମୋ ପେଟ ପୂରିଯାଏ । ମୋ ଭୟ କ୍ରମଶଃ ଆନ୍ତରିକତାରେ ପରିଣତ ହୋଇସାରିଥାଏ । ସ୍ୱଭାବସୁଲଭ ଢଙ୍ଗରେ ମୁଁ ଅନେକ ଅପ୍ରାସଙ୍ଗିକ ପ୍ରଶ୍ନ ସାର୍‌ଙ୍କୁ ପଚାରି ବସେ । ସାର୍ ରାଗନ୍ତିନି । କେଜାଣି କେଉଁଠି ଅବା ଅଶାନ୍ତିର ଖିଅଟିଏ ଲୁଚାଇଥିବେ ସେ କଥା କହିପାରିବିନି, କିନ୍ତୁ ପ୍ରସନ୍ନ ଚିତ୍ତରେ ସେ ସବୁ କଥାର ଉତ୍ତର ଦେଇଥାନ୍ତି । ମୋତେ ଆମ ପରିବାର, ବାପା ଓ ଶ୍ରୀମତୀଙ୍କ ବିଷୟରେ ଅନେକ କଥା ପଚାରି ମୋର ଅଧିକ ନିକଟତର ହୋଇଯାଆନ୍ତି । ମୋ ପାଇଁ ଏହା ଥାଏ ବିରାଟ ପ୍ରାପ୍ତି, ଯାହା ମୋ ବିଗତ ଦିନମାନଙ୍କରେ ମୁଁ କେଉଁଠାରୁ ମଧ୍ୟ ପାଇ ନଥିଲି ।

ମୋ ଜୀବନରେ ମୁଁ ଦୁଇଜଣ ବର୍ଷିୟାନ ପ୍ରବାଦପୁରୁଷଙ୍କ ସଂସ୍ପର୍ଶରେ ଆସିଅଛି । ଜଣେ ହେଲେ ବିସ୍ମୟ ପ୍ରାବନ୍ଧିକ ଶ୍ରୀ ଚିତ୍ତରଞ୍ଜନ ଦାସ(ଚିତ୍ତଭାଇ) ଓ ଅନ୍ୟଜଣକ ହେଲେ ଜଣେ ସର୍ବଗୁଣ ସମ୍ପନ୍ନ ସାରସ୍ୱତ ସାଧକ ଡ. କୃଷ୍ଣଚରଣ ବେହେରା । ଦୁହିଁଙ୍କ ଭିତରେ ଯେଉଁ ପାର୍ଥକ୍ୟଟି ମୁଁ ବରାବର ଅନୁଭବ କରିଛି ତାହାହେଲା, ଚିତ୍ତଭାଇଙ୍କ ପାଖକୁ ଗଲେ ପ୍ରବଳ ଭୟ ଲାଗେ । କାରଣ ପାନରୁ ଚୂନ ଖସିଗଲେ ସେ ଖପା ହୁଅନ୍ତି, ଯଦିଓ ପରେ ସାମାନ୍ୟ ହସି ଦିଅନ୍ତି । କିନ୍ତୁ ଡ. ବେହେରାଙ୍କ ସହ ମନଇଚ୍ଛା ଆଳାପ କରିହୁଏ । ତାଙ୍କ ସହିତ ନିମିଷକରେ ପାରିବାରିକ ସଂପର୍କ ସ୍ଥାପିତ ହୋଇଯାଏ । ଡ. ବେହେରାଙ୍କ ସହିତ ମୋର ବୋଧହୁଏ ସର୍ଜନା ସଂପର୍କରେ ଭଗବାନ ଅନେକ ସାମଞ୍ଜସ୍ୟ ରଖିଥିଲେ (ଅବଶ୍ୟ ଡ. ବେହେରା ଈଶ୍ୱରଙ୍କ ଅସ୍ତିତ୍ୱକୁ ତାଙ୍କ ଲେଖାରେ ଆଦୌ ସ୍ଥାନ ନ ଦେଇଥିବାର

ମନେହୁଏ) । ପିଲାଦିନୁ ବାପା ଆଣିଥିବା ଗ୍ରାମଫୋନ୍ ରେକର୍ଡ଼ରୁ ଏକ ନାଟକ ଶୁଣି ସେ ନାଟକ ଲେଖାରେ ଖଡ଼ି ଛୁଇଁଥିଲେ ସର୍ବନାର । ମୁଁ ସେହିପରି ଦଶମ ଶ୍ରେଣୀ ପାସ୍ କଲା ପରେ ଏକ କାଳ୍ପନିକ ନାଟକ 'ତୃଷାର ତୃପ୍ତି' ଲେଖିଥିଲି, ଯାହା ଆମ ଗାଁରେ ମଞ୍ଚସ୍ଥ ହୋଇଥିଲା ଏବଂ ମୁଁ ତହିଁରେ ମଧ୍ୟ ଏକ ପ୍ରମୁଖ ଭୂମିକା ନେଇଥିଲି । ଡ. ବେହେରା ଅନେକବାର ତାଙ୍କ ଗାଁରେ ନାରୀ ଭୂମିକାରେ ମଧ୍ୟ ଅଭିନୟ କରିଛନ୍ତି । ପରେ ପରେ ପ୍ରଗତିବାଦୀ କବିତା, ରମ୍ୟରଚନା ଆଦିରେ ସେ ଦୋରସ୍ତ ହୋଇଛନ୍ତି । ତାଙ୍କ ଲିଖିତ କବିତା '୫୪ ଭାନୁବାଇ ଲେନ୍', 'ସେଇ ଝିଅଟିକୁ ଜାଣ କି' ଆଦି କବିତା ପଢ଼ି ମୁଁ ପୂର୍ବରୁ ଉଦ୍‌ବୁଦ୍ଧ ହୋଇଥିଲି । 'ଚା କପ୍‌ରେ ଝଡ଼' ତାଙ୍କର କାଳଜୟୀ ସୃଷ୍ଟି । ତାଙ୍କ ରଚିତ ନାଟକ 'ଯଥା ନଳସ୍ୟ ଦମୟନ୍ତୀ' ବହୁତ ଚମତ୍କାର । ଗବେଷଣା କରିବା ପରିପ୍ରେକ୍ଷୀରେ ସାର୍‌ଙ୍କର ନିବୀ ଅଧ୍ୟୟନ ଓ ଗଭୀର ଅନୁପ୍ରବେଶ ରୀତିକୁ ଦେଖି ମୁଁ ବିସ୍ମିତ ହୋଇଛି । ସେ ସବୁ ଲେଖାର ମୂଳ ଉତ୍ସକୁ ଯାଆନ୍ତି ଓ ସତ୍ୟକୁ ବାରମ୍ବାର ଉଖାରି ଚାଲନ୍ତି । ଦ୍ୱିତୀୟ ଉତ୍ସକୁ ସେ ଏକରକମ ଘୃଣା କରନ୍ତି । ଲେଖାଗୁଡ଼ିକ ଯଥାସମ୍ଭବ ରସାଳ ଓ ସରଳ କରିବା ତାଙ୍କର ଏକ ଉଲ୍ଲେଖନୀୟ ପ୍ରବୃତ୍ତି । କେଡ଼େ ଯତନରେ ସେ ପାଠକମାନଙ୍କୁ ତଥ୍ୟ ଓ ତତ୍ତ୍ୱର ଗଭୀର ଗର୍ଭଗୃହ ମଧ୍ୟକୁ ଭର୍ତ୍ତି କରିଦିଅନ୍ତି ସତରେ । ତାଙ୍କର ଅଧିକାଂଶ ପ୍ରବନ୍ଧ ଫିଚରଧର୍ମୀ ଓ ରମ୍ୟ । 'ମାଗିବାଠାରୁ ହୀନ ନାହିଁ', 'ଅବିବାହିତର ସମସ୍ୟା', 'ଅଧ୍ୟାପକର ବେଦନା', 'ତେଲ ପସରା ଓ ବେଲ ପସରା' ଓ 'ଏବର ଶିକ୍ଷା କି ଶୋଷଣର ପ୍ରତୀକ' ଆଦି ପଢ଼ିଲେ ଡ. ବେହେରାଙ୍କ ସମାଜତାତ୍ତ୍ୱିକ ଓ ମନସ୍ତାତ୍ତ୍ୱିକ ଧୀଷଣା ବିଷୟରେ ପାଠକଟିଏ ବେଶ୍ କିଛି ଅନୁମାନ କରିପାରେ । ସେ ସବୁବେଳେ ନୂଆ କଥା ହିଁ କୁହନ୍ତି । ଲୋକନାଟକର ମୌଳ ଉପାଦାନ ଖୋଜିଛନ୍ତି ସେ ଦାୟିକାରୁ । 'ରେବତୀ'କୁ ସେ ପ୍ରଥମ କ୍ଷୁଦ୍ରଗଳ୍ପ ନ କହି ପ୍ରଥମ ଆଧୁନିକ ଗଳ୍ପ ବୋଲି କହିଛନ୍ତି । ସମାଲୋଚନାର ସମାଲୋଚନା ଲେଖି ସେ ଏକ ନୂଆ ପରମ୍ପରା ଆରମ୍ଭ କରିଛନ୍ତି । ତାଙ୍କର 'ବୀକ୍ଷା ବିଚିତ୍ରା', 'ପ୍ରସଙ୍ଗ ସାହିତ୍ୟାଲୋଚନା', 'ପ୍ରସଙ୍ଗ ନାଟକ ଓ ଏକାଙ୍କିକା' ଇତ୍ୟାଦିର ରଚନାଶୈଳୀ ଓ ନିର୍ଯ୍ୟାସ ସମ୍ପୂର୍ଣ୍ଣ ନିଆରା । ଲିଖିତ ଅଭିଭାଷଣକୁ ନେଇ ସେ ତିଆରିଛନ୍ତି 'ସଂପାନ ସନ୍ଦର୍ଭ' ଓ 'କେତୋଟି ସାହିତ୍ୟିକ ଅଭିଭାଷଣ' । ଧର୍ମ ସଂପର୍କରେ ତାଙ୍କର ଯୁଗାନ୍ତକାରୀ ଦୃଷ୍ଟିଭଙ୍ଗୀ ମଧ୍ୟ ବିଚାରଯୋଗ୍ୟ । ସେ କୌଣସି ଆନୁଷ୍ଠାନିକ ଧର୍ମକୁ ସ୍ୱୀକାର କରିନାହାନ୍ତି । ଅଯଥା ଜୀବହତ୍ୟା ଓ ନୃଶଂସତାକୁ ବିରୋଧ କରି ଲେଖିଛନ୍ତି ନୃଶଂସତା କାହିଁ ତୋ ବେଶ ଭୀଷଣ ।' ଗୋପାଳକୃଷ୍ଣ ଓ କବିସୂର୍ଯ୍ୟ ଆଦିଙ୍କ ରଚନାବଳୀକୁ ନେଇ ସେ ସୁନ୍ଦର ଉପକ୍ରମଣିକା ଓ ଭାଷ୍ୟ ପ୍ରସ୍ତୁତ କରିଛନ୍ତି । ଏଣୁ, ସାରାଜୀବନ ସାହିତ୍ୟ ଓ ସାହିତ୍ୟ ସଂଗଠନର ପାରମାର୍ଥିକ ସଂସାରରେ ବୁଡ଼ି

ରହିଥିବା କରିତକର୍ମା ପୁରୁଷପୁଙ୍ଗବଟିଏର ଅଭ୍ୟୁଦୟ ସତରେ ଏ ସଂସାର ପାଇଁ ବିରଳ । ଏକା ଜଣେ ବ୍ୟକ୍ତି କ'ଣ ଏପରି ଅନୁଷ୍ଠାନ ପାଲଟିପାରେ ?

ସାର୍‌ଙ୍କ ଘରକୁ ଏକଦା ମୋ ଗାଇଡ୍ ମାଡ଼ାମ୍‌ଙ୍କ ସହ ଯାଇଥାଏ । ସାର୍ ଅପରାହ୍ଣରେ ବିଶ୍ରାମ ନେଉଥାନ୍ତି । ହଠାତ୍ ଘରେ ଏକ କରୁଣ କ୍ରନ୍ଦନରୋଳ ଭରିଗଲା । ମାଡ଼ାମ୍ ବିବ୍ରତ ହୋଇ କହିଲେ, 'ଗୋପାଳ ତୁମେ ଯାଅ, ଟୁଟୁ ଚାଲିଗଲା ।' ଆମେ ଏକଥା କେହି ବିଶ୍ୱାସ କରିପାରୁ ନଥିଲୁ । ବାପୁଭାଇଙ୍କର ଝିଅ ବିକଳ ହୋଇ କହୁଥାଏ, 'ବାପା (ସାନବାପା)ଙ୍କର କ'ଣ ହେଲା ? 'ଏହିଭଳି ଅବସ୍ଥାରେ ସାର୍‌ଙ୍କର ନିଦ ଭାଙ୍ଗିଗଲା । ସବୁ ଜାଣି ସାରିଥିଲେ ସାର୍ ପରୋକ୍ଷରେ । କିଛି ନ ଜାଣିବା ପରି ସେ ଅଭିନୟ କରି ସ୍ୱଭାବ ସୁଲଭ ଭଙ୍ଗୀରେ ମୋତେ ଭଲମନ୍ଦ ପଚାରିଲେ, ପରିବାରକୁ ସାନ୍ତ୍ୱନା ଦେଲେ । ଟୁଟୁଭାଇଙ୍କର କ୍ରିୟାକର୍ମରେ ସକ୍ରିୟ ଅଂଶଗ୍ରହଣ କଲେ । ଟୁଟୁଭାଇ(ଶୁଭକାନ୍ତ ଭାଇ) ସାର୍‌ଙ୍କର ରତ୍ନଭଣ୍ଡାର ଥିଲେ । ତାଙ୍କର ଅବର୍ତ୍ତମାନ ସାର୍‌ଙ୍କ ପାଇଁ ଏକ ଅପୂରଣୀୟ କ୍ଷତି ଥିଲା । ସ୍ଥିତପ୍ରଜ୍ଞ ପରି ସେ ସବୁ ସମ୍ଭାଳି ଥିଲେ । ଆଗରୁ ମାଡ଼ାମ୍ ଚାଲିଯାଇଥିଲେ । ସାନପୁଅ ବି ଚାଲିଗଲେ । ଶାରୀରିକ ଦୁର୍ବଳତା ସମସ୍ତଙ୍କ ଅଲକ୍ଷ୍ୟରେ ମାନସିକ ଭାରସାମ୍ୟହୀନତା ବା ଏ ରକ୍ତମାଂସର ମଣିଷକୁ କେତେଦିନ ରହିବାକୁ ଦେଇଥାନ୍ତା ? ମହାକାଳ ଶେଷରେ ଜିତିଗଲା । ବାପୁଭାଇଙ୍କର ଅକ୍ଳାନ୍ତ ପରିଶ୍ରମ ଫଳଶୂନ୍ୟ ହୋଇଗଲା । ସାର୍ ବର୍ଷେ ହେଲା ନଶ୍ୱର ଦେହରେ ଆଉ ନାହାନ୍ତି ।

ମୁଁ ଡକ୍ଟରେଟ୍ ପାଇବା ପରଦିନ ସାର୍‌ଙ୍କ ଘରକୁ ଯାଇଥିଲି । ସାର୍‌ଙ୍କର ସେଦିନର ସ୍ନେହପୂର୍ଣ୍ଣ ସମ୍ଭାଷଣ ମୋର ଏବେ ବି କାନରେ ବାଜିଯାଉଛି । 'କ'ଣ ଡକ୍ଟର ଆଚାର୍ଯ୍ୟ ଆସିଗଲ ?' ବୋଲି ପଦଟିଏ ସେ କହିଥିଲେ । କି ସ୍ୱପ୍ନ, କି ଆବେଗ ଓ କି ଅନ୍ତରଙ୍ଗତାର ପ୍ରାପ୍ତି ଥିଲା ସେଇ ଦିନଟି ସାର୍‌ଙ୍କ ପାଇଁ ମୋ ଅପେକ୍ଷାରେ ସତରେ । ମୁଁ କ'ଣ କିଛି ହିଁ ଜାଣିଥିଲି ? ସବୁ ଥିଲା ସାର୍‌ଙ୍କର ଅବଦାନ । ସାର୍‌ଙ୍କ ହାତଗଢ଼ା କଣ୍ଢେଇଟିଏ ଥିଲି ମୁଁ । ଜୀବନର ସାୟାହ୍ନରେ ସାର୍‌ଙ୍କ ସହ କେଇଦିନ ମୋ ପାଇଁ ଥିଲା ବୈକୁଣ୍ଠ ବିଚରଣ । ମୋର ଦୁର୍ଭାଗ୍ୟ ମୁଁ ଏଇ ସନ୍ତୋଷର ସହଭାଗୀ ବେଶିକ୍ଷଣ ହୋଇପାରିଲି ନାହିଁ ।

ଅନ୍ତିମ ଦର୍ଶନ ପାଇଥିଲି ସତୀଚଉରାରେ । ଅନେକ କଥା ବୁଝିବାକୁ ବାକି ରହିଗଲା ? ସାର୍ କ'ଣ ଆଉ ଜନ୍ମକୁ ବିଶ୍ୱାସ କରନ୍ତି ? ହାଃ !! ❖

ଆସିଷ୍ଟାଣ୍ଟ ପ୍ରଫେସର,
ଓଡ଼ିଆ, ରମାଦେବୀ ମହିଳା ମହାବିଦ୍ୟାଳୟ

# କୃଷ୍ଣସାର୍ ମୋ ପାଇଁ ଅମର

ଇଂ ଦୁଃଶାସନ ବାରିକ

ଜୀବନ ଆଜି ଅଛି, କିଛି ସମୟ ପରେ ନଥିବ । କିନ୍ତୁ ମଣିଷର କର୍ମ ହିଁ ପରିଚୟ ସୃଷ୍ଟି କରେ । ତାହା ହିଁ ମୋ କୃଷ୍ଣ ସାର୍‌ଙ୍କ କ୍ଷେତ୍ରରେ ଅତୁଳନୀୟ କର୍ମ ପରିଚୟର ପ୍ରତିବିମ୍ବ ସୃଷ୍ଟି କରିଯାଇଛନ୍ତି ଆମ ଓଡ଼ିଆ ସହିତ୍ୟ କ୍ଷେତ୍ରରେ । ଯାହା ହିଁ ତାଙ୍କୁ ଅମର କରି ରଖିଛି ଓ ରଖିବ ।

ମୋ ସହିତ ତାଙ୍କର କେବେ ପରିଚୟ ହେଇଛି ତାହା ମୁଁ ସଠିକ୍ ଭାବରେ କହି ନ ପାରିଲେ ବି ବୋଧହୁଏ ଯୁଗଯୁଗର ସମ୍ପର୍କ ଆମ ଭିତରେ ଥିଲା । ଯେବେବି ଯେଉଁଠି ଦେଖାହୁଏ, ତାଙ୍କ ପାଦରୁ ପାଦଧୂଳି ନେଇ ମଥାରେ ମାରିଲା ବେଳେ କାହିଁକି ମୋତେ ବହୁତ ନିଜର ନିଜର ଲାଗନ୍ତି । ବାପା ଓ ପରିବାର କଥା ଅକୁଣ୍ଠ ଚିତ୍ତରେ ପଚାରି ବୁଝନ୍ତି, ସତେକି ମୋର ପରିବାରର ଜଣେ । ମୋ ଦୁଃଖରେ ଦୁଃଖୀ ହେଇ ଆଖି ଛଳଛଳ କରିଦିଅନ୍ତି ।

ସାର୍ ମୋ ବାପାଙ୍କୁ ଜାଣନ୍ତି, ବାପା ଆମ ଇଲାକାରେ ଜଣେ ଜଣାଶୁଣା ବ୍ୟକ୍ତିତ୍ୱ ଥିଲେ । କୃଷ୍ଣସାରଙ୍କର ବାପାଙ୍କ ସହିତ ଅତି ନିବିଡ଼ ଭଲପାଇବା ଥିଲା । ସେଥିଲାଗି ସାର୍ ମୋତେ ବହୁତ ଭଲପାଆନ୍ତି ଏବଂ ଦୁଃଖସୁଖର କଥା ଭିତରେ ଆମ ସମୟ କଟିଯାଏ ।

ମୁଁ ଯେତେବେଳେ ଯାହା ଲେଖିଛି, ସଙ୍ଗେ ସଙ୍ଗେ ସାର୍‌ଙ୍କ ଘରକୁ ଯାଇ ସାର୍‌ଙ୍କୁ ଶୁଣାଏ । ବହୁତ ଭଲ ହେଇଛି ନ କହିଲେ ବି ହେଇଛି, ଆହୁରି ଭଲ ହେବ । ଲେଖିଚାଲ ।

ଥରେ ସାର୍ କହିଲେ, ଆରେ ଦୁଃଶାସନ, ତୁମେ ଏକ୍ଷଣାର ମେମ୍ବର ହୁଅ । ମୁଁ କହିଲି-ସାର୍ ମୁଁ ତ ପ୍ରବନ୍ଧ କିଛି ଲେଖିନି- ଖାଲି କବିତା, ଗଳ୍ପ, ଶିଶୁ ଗଳ୍ପ ଓ କବିତା ଓ ଅନୁବାଦ କିଛି କରିଛି । ସାର୍ ତତ୍‌କ୍ଷଣାତ କହି ଉଠିଲେ ସେଥିରୁ କ'ଣ ଅଛି, ଜଣେ ଇଞ୍ଜିନିୟର ହେଇ ସାହିତ୍ୟରେ ରୁଚି ରଖିବା କ'ଣ କମ୍ ବଡ଼ କଥା, ଯାହା ହେଉ

ସାର୍‌ଙ୍କ କଥାନୁସାରେ ମୁଁ ଫର୍ମ ଆଣି ମେମ୍ବର ହେବାପାଇଁ ଦରଖାସ୍ତ କରିଲି । ସାର୍ ଏଷଣା ବୋର୍ଡ଼ ମିଟିଂରେ ମୋ ସପକ୍ଷରେ ଅନେକ ଯୁକ୍ତିବାଢ଼ି ମୋତେ ମେମ୍ବର କରିଥିଲେ ।

ସାର୍‌ଙ୍କର ମାନ ରଖିବା ପାଇଁ ମୁଁ ପ୍ରବନ୍ଧ ଲେଖିବା ପାଇଁ ଆଗ୍ରହ କରି ଲେଖିଲି । ବିଷୟ ବସ୍ତୁ ଥିଲା 'ବିବେକାନନ୍ଦ ଓ ବଙ୍କିମ୍‌ଚନ୍ଦ୍ରଙ୍କ ଦୃଷ୍ଟିରେ କୃଷ୍ଣ ଚେତନା' । ସାର୍‌ଙ୍କୁ ଲେଖି ତାଙ୍କ ଘରେ ଶୁଣେଇଲି । ସାର୍ ବହୁତ ଭଲ ହେଉଛି କହିଲେ । କିଛି ତ୍ରୁଟି ଅଛି । ତାଙ୍କୁ ଭଲକରି ଲେଖି ଆଣିବୁ । ମୁଁ ତାକୁ ଠିକ୍ କରି ଏଷଣାରେ ପ୍ରକାଶ କରିବି । କିନ୍ତୁ ମୁଁ ହତଭାଗା ସାର୍‌ଙ୍କର କଥା ଜୀବଦ୍ଦଶାରେ ରଖିପାରିଲି ନାହିଁ ।

ଥରେ 'ମାରୁତି ମଣ୍ଡପ' ଚୌଧୁରୀ ବଜାର ତରଫରୁ ରାମଙ୍କ ବିଷୟରେ ପ୍ରବନ୍ଧ ଲେଖିବା ପାଇଁ ଅନୁରୋଧ କରିଥିଲେ । ମୁଁ ବହୁ ପରିଶ୍ରମ କରି ଏକ ୧୬ ପୃଷ୍ଠାର ପ୍ରବନ୍ଧ ଲେଖିଥିଲି । 'ସେ ପ୍ରବନ୍ଧଟି ଥିଲା 'ରାମାୟଣରେ ରାମଙ୍କର ଚରିତ୍ର' । ଅନେକ ଭାଷାର ରାମାୟଣ ବହି ଆଣି ପ୍ରବନ୍ଧଟି ଶେଷକରି ସାର୍‌ଙ୍କୁ ଶୁଣେଇଲି ସାର୍ କହିଲେ, ବହୁତ ଭଲ ହେଇଛି । କିନ୍ତୁ ରାମଙ୍କର ବିରୋଧାଭାଷ ଏ ପ୍ରବନ୍ଧରେ ଫୁଟି ଉଠୁଛି । ଏ ସମାଜର ବଡ଼ ବଡ଼ ଲେଖକମାନେ ଯାହା କରି ନଥିଲେ ଆଜି ତୁ ତାହା କରି ଦେଖେଇଦେଲୁ । କିନ୍ତୁ ମୋ ହୃଦୟ ଭିତରେ ଡରର ଏକ ପ୍ରଚ୍ଛାୟା ସୃଷ୍ଟି କରୁଥିଲେ । ଏତେ ବଡ଼ ସଂସାରରେ ସମସ୍ତେ ରାମଙ୍କୁ ପୂଜୁଥିବା ବେଳେ ମୁଁ ରାମଙ୍କୁ ଏ ପ୍ରବନ୍ଧରେ ଏକ ଭିଲିୟାନ୍‌ର ରୂପ ଦେଇଥିବାରୁ ମୋ ବିବେକ୍ ବାଧା ଦେଇଥିଲା । ତେଣୁ ସେ ପ୍ରବନ୍ଧଟିକୁ ଚିରି ଫୋପାଡ଼ି ଦେଲି । ସାର୍ ମୋ ଉପରେ ଅନେକ ବିରକ୍ତି ପ୍ରକାଶ କରିଥିଲେ ।

ମୋର ପ୍ରଥମ ଅନୁବାଦ ଗଳ୍ପ 'ବିଶ୍ୱଗଳ୍ପ' ପ୍ରକାଶ ପାଇବା ପାଇଁ ଯୋଜନା ଚାଲୁଥାଏ । ଡକ୍ଟର ଗୋବିନ୍ଦ ଚାନ୍ଦଙ୍କ ତତ୍ତ୍ୱାବଧାନରେ ବହିଟି ପ୍ରକାଶ ପାଇଲା । ସାର୍ ମୋର ଗଳ୍ପ ଉନ୍ମୋଚନ ସଭାରେ ସଭାପତି ଆସନରେ ବସିଥାନ୍ତି । ମୋର ପ୍ରଥମ ବହି ଉନ୍ମୋଚନ ସଭା । ମୋତେ କିନ୍ତୁ ବହୁତ ଡର ଲାଗୁଥାଏ, ସାର୍ କିନ୍ତୁ ମୋତେ ସାହସ ଦେଉଥାନ୍ତି । ଯାହାହେଉ ସଭାଟି ଭଲରେ ଭଲରେ ସରିଗଲା ।

ସାର୍‌ଙ୍କର ହସରେ ଏତେ ଉନ୍ମାଦନା ଭରିଥାଏ ଯେ ମୁଁ ତାହା ପରୋକ୍ଷରେ ଅନୁଭବ କରିଛି । ଯେତେ ଦୁଃଖରେ ଥିଲେ ବି ସାର୍‌ଙ୍କର ହସ ମୋତେ ବହୁତ ଆନନ୍ଦ ଦିଏ । ତାଙ୍କ ହସରେ ଏକ ଗାମ୍ଭୀର୍ଯ୍ୟତାପୂର୍ଣ୍ଣ ଭାବ ଭରିଥାଏ । ସାର୍ ମୋ ଜୀବନରେ ଏକ ସହନଶୀଳତାର ବତୀଘର । ଜୀବନରେ ମୋ ଭଳି ଏତେ ଦୁଃଖ କଷ୍ଟରେ ଥିଲେ ବି ସାହିତ୍ୟ ଆଲୋଚନାରେ ବା କୌଣସି ସଭା ସମିତିରେ କୌଣସି ଦୁଃଖର ଚାଷାଙ୍କନ ସୃଷ୍ଟି କରନ୍ତି ନାହିଁ । ଦେଖୁ ଦେଖୁ ବର୍ଷଟିଏ ବିତିଗଲାଣି । ସାର୍‌ଙ୍କର ଆତ୍ମା ଆଜି କେଉଁଠି

ମୁଁ ଜାଣିନି । ତଥାପି ମୋ ପାଇଁ ସାର୍ ଅମର । ତାଙ୍କ ଜୀବନରେ ଘଟିଯାଇଥିବା ଦୁଃଖଦ ଘଟଣା ଓ ମୋ ଜୀବନରେ ଘଟିଯାଇଥିବା ସମଦୁଃଖଦ ଘଟଣା ଏକା ଥିଲେବି, ସାର୍ କିନ୍ତୁ ଶେଷ ପର୍ଯ୍ୟନ୍ତ ଭାଙ୍ଗିପଡ଼ିନାହାନ୍ତି । ସାହିତ୍ୟ ସାଧନାରତ ମଣିଷଟିଏ, ସାହିତ୍ୟ ସାହିତ୍ୟ ପାଗଳାମି କରୁଥିବା ମଣିଷଟିଏ ଆଜି ଆକାଶରେ ତାରା ପାଲଟି ଯାଇଛନ୍ତି । ମୁଁ ସେହି ତାରାଟିର ମିଞ୍ଜିମିଞ୍ଜି ଆଲୁଅର ଧାରା ଭିତରେ, ସାହିତ୍ୟରେ ସାଧନାରତ ନହେଲେବି ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସାହିତ୍ୟର ବାଲିଗରଡ଼ା ସାଉଁଟିବାକୁ କିଞ୍ଚିତ୍ ପ୍ରୟାସ କରି ଚାଲିଛି ।

ମୋ ଦୁଃଖରେ ଦୁଃଖୀ
ମୋ ସୁଖରେ ସୁଖୀ
ତାଙ୍କ ହସର ଧାରା ମୋତେ
ଦେଉଥିଲା ସୁଖ କେତେ,
ପତ୍ନୀ, ପୁତ୍ର ହାରି ବି ହସୁଥିଲେ,
ସାହିତ୍ୟର ବାଟକୁ ସଜାଡ଼ି ସଜାଡ଼ି
ଆକାଶର ତାରା ପାଲଟିଗଲେ ।
ମୁଁ ବି ହସୁଛି, ମୁଁ ବି କାନ୍ଦୁଛି
ଦୁଃଖରେ ହେଉବା ସୁଖରେ,
ମନେପଡ଼େ ବିଗତର ଯେତେ ସ୍ମୃତି
ପାରିବିନି ଭଲି ତାଙ୍କ ସ୍ନେହ ଆଉ ପ୍ରେମ
ଯାହା ଭରିଛି ମୋ ଛାତିରେ । ❖

କାନପୁର, ପୀରହାଟ
ଭଦ୍ରକ-୭୫୬୧୩୧

# ଅକିଞ୍ଚନର ଅନୁଭବ

ଦେବପ୍ରସାଦ ଖୁଣ୍ଟିଆ

*ଡକ୍ଟର କୃଷ୍ଣଚରଣ ବେହେରା ଥିଲେ ମୋ ଭଉଣୀ ମିନୁର ଶ୍ୱଶୁର । ତାଙ୍କୁ ପିତୃଜ୍ଞାନ କରୁଥିଲି । ତାଙ୍କ ସହିତ ବ୍ୟକ୍ତିଗତ ସଂପର୍କରେ ଆସିଲା ଦିନୁ, ସମସ୍ତ ସମ୍ଭାବ୍ୟ ସମ୍ବୋଧନ ମଧ୍ୟରୁ 'ସାର୍' ଡାକଟିକୁ ଆଦରି ନେଲି । ନିଜକୁ ତାଙ୍କର ଛାତ୍ର ଆସନରେ ମନେ ମନେ ବସାଇଲି । ତାଙ୍କ ସଂପର୍କରେ ଏ ଅକିଞ୍ଚନର ଅନୁଭବ ଲେଖିବାର ସୁଯୋଗ ପାଇ, ପ୍ରଥମ ଶ୍ରାଦ୍ଧବାର୍ଷିକୀରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।*

ସାର୍ ଥିଲେ ସାହିତ୍ୟ ସାଧକ । ୧୯୯୦ ମସିହାର ରେଭେନ୍ସା କଲେଜରୁ ଅଧ୍ୟାପକ ଜୀବନରୁ ଅବସର ଗ୍ରହଣ କରିବା ପରେ ମଧ୍ୟ ଓଡ଼ିଆ ସାହିତ୍ୟ ସାଧନାରେ ଥିଲେ ନିମଗ୍ନ । ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସେ ଓଡ଼ିଆ ସାହିତ୍ୟ ଦାୟିତ୍ୱରୁ ମୁକ୍ତ ହୋଇ ପାରି ନଥିଲେ । ନିଜର ପାରିବାରିକ ଦାୟିତ୍ୱ ଅପେକ୍ଷା ଓଡ଼ିଆ ସାହିତ୍ୟ ପରିବାରକୁ ସମୃଦ୍ଧ କରିବା ପାଇଁ ତାଙ୍କର ସେ ଓଡ଼ିଆ ସାହିତ୍ୟ ସାଧନା ଯୋଗୁଁ ମନକୁ ଦୃଢ଼ ରଖିପାରିଥିଲେ ।

ସାର୍ ତାଙ୍କର ଜୀବନ କାଳରେ ଦେବାଦେବୀ ନେଇ ଧାର୍ମିକ ରୀତି ନୀତିକୁ ପାଳନ କରିବାର କୌଣସି ଆଗ୍ରହ ଦେଖାଉ ନଥିଲେ ବରଂ ଏହାକୁ ନେଇ ବ୍ୟଙ୍ଗ କରୁଥିଲେ, ତେଣୁ ସେ ନାସ୍ତିକ ଭାବରେ ଗଣାଯାଉଥିଲେ । କିନ୍ତୁ ତାଙ୍କର ସେହି ନାସ୍ତିକ ଭାବ ତାଙ୍କର ମଣିଷ ପଣିଆ ବା ମାନବିକତା ଉପରେ କୌଣସି ନକାରାତ୍ମକ ପ୍ରଭାବ ପକାଇ ପାରି ନଥିଲା । ସେ ସଦାବେଳେ ଛୋଟ, ବଡ଼ ସମସ୍ତଙ୍କୁ ସମ୍ମାନ ଦେଇ ଆସିଛନ୍ତି, ଅଭାବଗ୍ରସ୍ତ ଲୋକଙ୍କ ପାଇଁ ସହାୟତାର ହାତ ମନକୁ ମନ ବଢ଼ାଇଛନ୍ତି । ନିଜ ଗ୍ରାମର ଆତ୍ମୀୟ । ସ୍ୱଜନଙ୍କ ପାଇଁ ତାଙ୍କର ଦୁର୍ବଳତା ଶେଷ ପର୍ଯ୍ୟନ୍ତ ବଜାୟ ଥିଲା । ଛୁଆଁ ଓ ଅଛୁଆଁର ପାର୍ଥକ୍ୟ ତାଙ୍କ ପାଇଥିଲା ଶୂନ୍ୟ ମଣିଷର ମାନବିକତା ଗୁଣ, ସବୁପ୍ରକାର ଧାର୍ମିକ ରୀତିନୀତିର ଊର୍ଦ୍ଧ୍ୱରେ ସେ ଥିଲେ ଏହାର ଦୃଷ୍ଟାନ୍ତ ଏବଂ ମଣିଷର ସମ୍ବେଦନାଶୀଳତା ମାପରେ ଥିଲେ ପୂରାପୂରି ଆସ୍ତିକ ।

ତାଙ୍କର ଶେଷ ଦୁଇବର୍ଷ ମଧ୍ୟ ଯେତେବେଳେ ଦେଖାହେଉଥିଲା ସେ କହୁଥିଲେ ମୁଁ ଆଉ ପାରୁନାହିଁ- ଏବେ ମୃତ୍ୟୁକୁ ଅପେକ୍ଷା କିନ୍ତୁ ତାଙ୍କର ଦୃଢ଼ମନ ଦ୍ୱାରା ବିଭିନ୍ନ ଘାତ ପ୍ରତିଘାତରେ ନିଜକୁ ସମ୍ଭାଳି, ପୁଣି ଓଡ଼ିଆ ସାହିତ୍ୟକୁ ନେଇ ନିଜକୁ ବ୍ୟସ୍ତ ରଖୁଥିଲେ । ଏହି ସମୟରେ ବାରମ୍ବାର ଦେହ ଖରାପ ହେବା, ମେଡ଼ିକାଲ ଦିବା, କିଛିଦିନର ଚିକିତ୍ସା ପରେ ସୁସ୍ଥ ହୋଇ ଫେରିବା ପରେ ତାଙ୍କର ଓଡ଼ିଆ ଗବେଷଣା ପରିଷଦର ମଧ୍ୟ କାର୍ଯ୍ୟଭାର ତୁଲାଉଥିଲେ । ଆମଭଳିଆ କର୍ମବ୍ୟସ୍ତତାକୁ ବଜାୟ ରଖିପାରିନଥିଲେ ମଧ୍ୟ ନିଜକୁ ସଂପୂର୍ଣ୍ଣ ଦାୟିତ୍ୱମୁକ୍ତ କରିପାରି ନଥିଲେ ।

ତାଙ୍କର ଶେଷ ମେଡ଼ିକାଲ ଯାତ୍ରା ଯେ ଅନ୍ତିମଯାତ୍ରା ହୋଇଯିବ ବୋଲି ସେ କଳ୍ପନା କରିପାରିନଥିଲେ, ହଠାତ୍ ତାଙ୍କର କ୍ରିୟାଶୀଳ ଜୀବନ ଯେ ମୂର୍ଚ୍ଛା ଅବସ୍ଥାକୁ ଆସିଯାଇଥିଲା କିନ୍ତୁ ଭାଷାରେ ପରିପ୍ରକାଶ କରିପାରୁ ନଥିଲେ ମ୍ଫ ସେ ଯେ ଅନେକ କିଛି ଦାୟିତ୍ୱ(ଓଡ଼ିଆ ଗବେଷଣା ପରିଷଦ) ବିଷୟରେ କଥାବାର୍ତ୍ତା ହେବା ପାଇଁ ଚାହୁଁଥିଲେ, ତାଙ୍କର ଅଙ୍ଗଭଙ୍ଗୀରୁ ଜଣାଯାଉଥିଲା ଏବଂ ସେ ମେଡ଼ିକାଲରେ ହିଁ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ତାଙ୍କର ଓଡ଼ିଆ ସାହିତ୍ୟକୁ ନେଇ ଦୁର୍ବଳତା ତାଙ୍କର ନିମ୍ନୋକ୍ତ ଉକ୍ତିରୁ ବୁଝାପଡ଼ିବ- ଓଡ଼ିଶାରେ ଇଂଲିଶ୍ ମିଡ଼ିୟମ୍ ସ୍କୁଲ୍ ଦିନକୁ ଦିନ ବ୍ୟାପିବାରେ ଲାଗିଛି । ଓଡ଼ିଆ ସ୍କୁଲରେ ଶିକ୍ଷା ଅବସ୍ଥା ଦିନକୁ ଦିନ ଖରାପ ହେବାରେ ଲାଗିଛି, ତେଣୁ ଆଗମୀ ଦିନରେ ଓଡ଼ିଆ ଭାଷାର ସ୍ଥାନ କେଉଁଠି ପହଞ୍ଚିବ, ସାର୍‌ଙ୍କର ଉତ୍ତର ଥିଲା ଯାହା ହେଲେବି ଇଂଲିଶ୍ ହେଲା ପେଟର ଭାଷା ମାତ୍ର ଓଡ଼ିଆ ହେଉଛି ହୃଦୟର ଭାଷା, ବାପା ମା'ମାନେ ପିଲାଙ୍କର ପେଟ ପାଟଣା ସକାଶେ ଇଂଲିଶ୍‌ର ସହାୟତା ନେଉଛନ୍ତି ମାତ୍ର ଥରେ ତା' ପୂର୍ଣ୍ଣ ହେଲେ, ମଣିଷ ମନକୁ ମନ ହୃଦୟପ୍ରତି ନଜର ଦେବ । ତେଣୁ ଓଡ଼ିଆ ଭାଷାର ସ୍ଥାନ ହୃଦୟରେ ।

Working for success will make you a master but
Working for satisfaction will make you a legend. ❖

ଜଟଣୀ, ଖୋର୍ଦ୍ଧା

# ଅଧାବାଟେ ହାତ ଛାଡ଼ିଦେଲେ

ଡ. ଶାନ୍ତିଲତା ବେହେରା

ସେଦିନ ଥିଲା ଜୁଲାଇ ୨୯ ତାରିଖ ଶନିବାର ଏକ ଅଶୁଭ ସକାଳ । ସକାଳୁ ସକାଳୁ ସୂର୍ଯ୍ୟଙ୍କର ପ୍ରଥମ କିରଣ ପୃଥିବୀ ପୃଷ୍ଠ ଛୁଇଁଲାରୁ ମାତ୍ରେକ ଜୀବଜନ୍ତୁ ନୂଆ ଜୀବନ ଆରମ୍ଭ ହେଲା ବେଳେ ଗୋଟିଏ ମହାନ ଆତ୍ମା ପୃଥିବୀ ପୃଷ୍ଠରୁ ବିଦାୟ ନେଲ ସେ ମହାନ୍ ପୁରୁଷ ଥିଲେ ଡକ୍ଟର କୃଷ୍ଣଚରଣ ବେହେରା । ସେ ଥିଲେ ଅନେକ ଛାତ୍ରଛାତ୍ରୀଙ୍କର ହୃଦୟର ସ୍ପନ୍ଦନ । ଅନେକ ସାହିତ୍ୟିକ ହେବାର ପ୍ରେରଣାର ଇନ୍ଧନ । ତାଙ୍କ ଅବର୍ତ୍ତମାନରେ ଓଡ଼ିଆ ସାହିତ୍ୟ ଜଗତରେ ଏକ ଶୂନ୍ୟସ୍ଥାନ ସୃଷ୍ଟି ହୋଇଛି । ମାନବବାଦୀ, ଛାତ୍ରବତ୍ସଳ, ଏକନିଷ୍ଠ ସାହିତ୍ୟ ସାଧକ, ବାଣୀପୁତ୍ର କୃଷ୍ଣଚରଣ ବେହେରା ଅନେକ କୃତିତ୍ୱର ତଥା ପୁରସ୍କାର ବିଜେତା ଥିଲେ ମଧ୍ୟ ଅତି ସରଳ ଓ ନିରାଡ଼ମ୍ବର ନିଆରା ମଣିଷଟିଏ ।

ଶନିବାର ସକାଳୁଆ ସ୍କୁଲ । ସ୍କୁଲରେ ପାଦ ଦେଉ ଦେଉ ମୋବାଇଲ ରିଂହେଲା । କଲ୍‌ଟି ଥିଲା ଡକ୍ଟର ଚିତ୍ତରଞ୍ଜନ ବେହେରାଙ୍କ 'ଶାନ୍ତି ସାର୍‌ଙ୍କ ଦେହ ସିରିଅସ୍' । ଏହା ଶୁଣିଲାପରେ ମୋ ପାଦତଳୁ ମାଟି ଖସିଗଲା ପରି ଲାଗିଲା । ସଙ୍ଗେ ସଙ୍ଗେ ପ୍ରଧାନଶିକ୍ଷକଙ୍କୁ ଜଣାଇ ଏକମାତ୍ର କଟକ ଫେରନ୍ତା ବସ୍ ଧରି ସିଧା ଆପୋଲ ହସ୍‌ପିଟାଲରେ ପହଞ୍ଚିଲି । ସେଠାରେ ସାର୍‌ଙ୍କୁ ଶେଷଥର ପାଇଁ ଦେଖିବା ପରେ ମୋର ମୁଣ୍ଡ ଘୂରିଯାଇଥିଲା ଓ ମୁଁ ନିଜର ଅସ୍ତିତ୍ୱ ଭୁଲିଯାଇଥିଲି । ଭାବିଲି ସାର୍ ମୋତେ ଅଧାବାଟେ ଛାଡ଼ି ଦେଇ ସବୁଦିନ ପାଇଁ ଶୋଇଗଲେ । ତା'ପରେ ମୁଁ ତାଙ୍କ ଶେଷଯାତ୍ରା ଦେଖିବାରୁ ବଞ୍ଚିତ ହୋଇଥିଲି ।

ସାର୍‌ଙ୍କ କଥା ଭାବିଲେ ମୋତେ ବହୁତ କଷ୍ଟ ହୁଏ । ସାର୍‌ଙ୍କ ସହିତ ମୋର ୨୫ବର୍ଷର ସଂପର୍କ । ସାର୍ ୧୯୮୯ ମସିହାରେ ରେଭେନ୍‌ସାରେ ଥିଲାବେଳେ ମୁଁ ତାଙ୍କର ଏମ୍.ଏ. ଶ୍ରେଣୀର ଛାତ୍ରୀ ଥିଲି । ପ୍ରଥମ ବର୍ଷ ତାଙ୍କ ପାଖରେ ପାଠ ପଢ଼ିବା ଛଡ଼ା ସେମିତି ଘନିଷ୍ଠ ସଂପର୍କ ନ ଥିଲା । ସେତେବେଳେ ଡକ୍ଟର ରତ୍ନାକର ଚଇନି, ଡକ୍ଟର

ଲାବଣ୍ୟ ନାଏକ, ଡକ୍ଟର ଦାଶରଥି ଦାସ, ଡକ୍ଟର ବାଉରୀବନ୍ଧୁ କର, ଡକ୍ଟର ମାଳବିକା ରାୟ, ଡକ୍ଟର ହୃଷୀକେଶ ମଲ୍ଲିକ ଇତ୍ୟାଦି ଅନେକ ସାର୍ ଆମକୁ ପାଠ ପଢ଼ାଉଥିଲେ । କିନ୍ତୁ କୃଷ୍ଣସାରଙ୍କ ପାଠପଢ଼ା ନିଆରା ଥିଲା । ଆମର ସେ ନାଟକ କ୍ଲାସ୍ ନେଉଥିଲେ । ମୋର ଠିକ୍ ମନେଅଛି, ସେ ହସ ହସ ମୁହଁରେ କ୍ଲାସ୍‌ରେ ପ୍ରବେଶ ପୂର୍ବକ ଅତି ଆପଣାର ଲୋକଙ୍କ ପରି କ୍ଲାସ୍ ନିଅନ୍ତି । ସତେ ଯେପରି ସମସ୍ତେ ତାଙ୍କର ପୁଅ ଝିଅ । ସେ ଚାହୁଁଥିଲେ ଓଡ଼ିଆ ଯେଉଁମାନେ ପଢ଼ୁଛନ୍ତି ଭବିଷ୍ୟତରେ ଜଣେ ଜଣେ ସାହିତ୍ୟିକ ହୁଅନ୍ତୁ । ତେଣୁ ସେ ପାଠ ଛଡ଼ା ଓଡ଼ିଶାରେ ଥିବା ବିଭିନ୍ନ ସ୍ଥାନ ଭ୍ରମଣ କରିବା, ବିଭିନ୍ନ ଲାଇବ୍ରେରୀ ଯିବା, ବାରବାଟୀ ଦୁର୍ଗ, ସତୀଚଉରା, ଷ୍ଟେଟ ମ୍ୟୁଜିୟମ, ଇତ୍ୟାଦି ଯାହା ଆମ ସାହିତ୍ୟକୁ ପୃଷ୍ଟକରେ ତାକୁ ଭଲକରି ଜାଣିବା ଉଚିତ ବୋଲି କହନ୍ତି । ଥରେ ରଙ୍ଗମଞ୍ଚର ସୃଷ୍ଟି ଓ ବିକାଶ ବିଷୟରେ ଆଲୋଚନା କଲାବେଳେ ବିଭିନ୍ନ ଦେଶ ବିଦେଶର ରଙ୍ଗମଞ୍ଚର ଚିତ୍ରଆଣି ଗୋଟି ଗୋଟି କରି ପିଲାଙ୍କୁ ଦେଖାଉଥିଲେ । ବିଭିନ୍ନ ଉଦାହରଣ ଫଟୋଚିତ୍ର ଦେଖାଇ ପିଲାଙ୍କୁ ପାଠ ପଢ଼ାପ୍ରତି ଆଗ୍ରହ ସୃଷ୍ଟି କରୁଥିଲେ । ସେତେବେଳେ ତାଙ୍କ ପାଠ ପଢ଼ାର ଶୈଳୀ ମୋତେ ବହୁତ ଭଲଲାଗେ । ତା'ଛଡ଼ା ତାଙ୍କର ରୂପ ମୋ ବାପାଙ୍କ ଚେହେରା ସହିତ ଅନେକ ସାମଞ୍ଜସ୍ୟ ରହିଥାଏ ।

୧୯୯୧ ମସିହାରେ ମୋର ଏମ୍.ଏ. ପାସ୍ ପରେ ପିଏଚ୍.ଡ଼ି. କରିବା ପାଇଁ ଭାବିଲି । ହଠାତ୍ ଦିନେ ସାର୍‌ଙ୍କ ସହ ରେଭେନ୍ସା କଲେଜ ସାମ୍ନାରେ ଥିବା ମାଗାଜିନ୍ ଷ୍ଟଲ୍‌ରେ ଦେଖାହେଲା । ମୁଁ ମୋ କଥା କହିଲାପରେ ସାର୍ ତାଙ୍କର କଲ୍ୟାଣୀ ନଗରସ୍ଥ ବାସଭବନର ଠିକଣା ଦେଲେ ଓ କହିଲେ- ଘରକୁ ଆସ । ଔପନ୍ୟାସିକ 'କମଳାକାନ୍ତ'ଙ୍କ ବିଷୟ ଗବେଷଣା କରିବା ପାଇଁ ପରାମର୍ଶ ଦେଲେ । ତା'ପରେ ମୋର ତାଙ୍କ ପରିବାର ସହିତ ସଂପର୍କ ଘନିଷ୍ଠ ହେଲା । ମାଉସୀ(ସାର୍‌ଙ୍କ ପତ୍ନୀ)ଙ୍କ ସହ ମୋର ଗପସପ କଥାବାର୍ତ୍ତା ସଂପର୍କକୁ ଆହୁରି ନିବିଡ଼ତର କଲା ।

ମୁଁ ଟିକେ ଅଳସୁଆ ବୋଲି ସାର୍ ଭଲଭାବେ ଜାଣିଥିଲେ । ତେଣୁ ସେ ମୋତେ ହାତଧରି ଟାଣି ଟାଣି ନେବାକୁ ଚେଷ୍ଟା କଲେ । ଏପରିକି 'କମଳାକାନ୍ତ'ଙ୍କ ବାସସ୍ଥାନ କଟକସ୍ଥ ମେରିଆବଜାରକୁ ନେଇଥିଲେ । ଏପରି କମ୍ ଗାଇଡ୍ ଥାନ୍ତି ଯେ ଏପରି ସାହାଯ୍ୟ କରନ୍ତି । ତା'ପରେ ମୋର ଗବେଷଣା କାର୍ଯ୍ୟ ଠିକ୍ ଠାକ୍ ଚାଲିବ କି ନାହିଁ ଜାଣିବା ପାଇଁ ଯୋବ୍ରାସ୍ଥ ମୋର ବାସଭବନକୁ ଯାଇଥିଲେ । ଗବେଷଣା ପ୍ରତି ମୋ ଆଗ୍ରହ ବଢ଼ାଇବା ପାଇଁ ଥରେ ମୋତେ ଷ୍ଟେଟ୍ ମ୍ୟୁଜିୟମକୁ ଦେଖାଇଥିଲେ । 'ଗବେଷଣା ପରିଷଦ' ତଥା ଏଷଣାର କାର୍ଯ୍ୟ କରିବା ପାଇଁ ମୋତେ କହନ୍ତି । ପୁସ୍ତକ ରିଭିୟୁ କରିବା ପାଇଁ ମୋତେ ଦିଅନ୍ତି । ବେଳେବେଳେ ମୋତେ ବିରକ୍ତି ହୁଅନ୍ତି । କରୁଣାର ଅବତାର

ସେ ଥିଲେ । ଯେ ଟିକେ କୌଣସି ଦିଗରୁ କମ୍ ଥାଏ ତା'ପ୍ରତି ସାର୍‌ଙ୍କ କୃପା ଅତୁଳନୀୟ । ଇତର ଶ୍ରେଣୀପ୍ରତି ସେ ଖୁବ୍ ଦୟାଳୁ ଥିଲେ ବୋଲି ତାଙ୍କର 'ଇତରଇତରା' ଗଳ୍ପ ସଂକଳନରୁ ଅନୁମେୟ ।

ସେ ଥିଲେ ବିରାଟ କଳ୍ପବଟ ସଦୃଶ । ଯେ କେହି ତାଙ୍କ ପାଖରେ ପହଞ୍ଚିଲେ ତାଙ୍କୁ ଆଶ୍ରୟ ଦିଅନ୍ତି ଓ ଆଶା ପୂରଣ କରନ୍ତି । କେହି ଖାଲିହାତରେ ଫେରନ୍ତି ନାହିଁ । ସେ ନିଜେ ଯେତିକି ପରିଶ୍ରମ କରନ୍ତି ଅନ୍ୟମାନଙ୍କୁ ସେତିକି ଖଟାନ୍ତି । କହନ୍ତି ନ ଘଟିଲେ କିଛି ହେବନି । ମୋତେ ବାରମ୍ବାର ତାଙ୍କ ସାହିତ୍ୟିକ କାର୍ଯ୍ୟରେ କାମ କରାନ୍ତି । ସେ ଜଣେ ବିଶିଷ୍ଟ ସଂପାଦକ ଥିଲେ । କବିସୂର୍ଯ୍ୟ ଗ୍ରନ୍ଥାବଳୀ ସଂପାଦନା କଲାବେଳେ ମୁଁ ତାଙ୍କୁ ସଂପାଦନା କାର୍ଯ୍ୟରେ ସାହାଯ୍ୟ କରିଥିଲି ବୋଲି ଗ୍ରନ୍ଥାବଳୀର ମୁଖବନ୍ଧରେ ମୋର ନାମ ଉଲ୍ଲେଖ କରିଛନ୍ତି । ସେ ସର୍ବଦା ମୋର ଉନ୍ନତି ଚାହୁଁଥିଲେ ବୋଲି 'ଗବେଷଣା ପରିଷଦର ପୁସ୍ତକ ପ୍ରଦର୍ଶନୀର ଦାୟିତ୍ୱ ମୋତେ ଦେଇଥାନ୍ତି । ଛାତ୍ରମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ଭରସା ଅତୁଟ ଥିଲା । ସେ କହନ୍ତି ମୋ ଛାତ୍ରଛାତ୍ରୀ ମାନେ ହିଁ ମୋର 'ଆସେଟ୍‌ସ' । ବାରମ୍ବାର ଫୋନ କରି ମୋତେ ଡାକନ୍ତି । ଘରେ ପ୍ରବେଶ କରୁ କରୁ ମିନୁ ଭାଉଜ(ତାଙ୍କର ବଡ଼ବୋହୂ)ଙ୍କୁ ଡାକି କୁହନ୍ତି 'ଶାନ୍ତି ସାଅନ୍ତାଣୀ ଆସିଲେ କିଛି ଖାଇବାକୁ ବ୍ୟବସ୍ଥା କର । ସେ ସ୍ନେହଶ୍ରଦ୍ଧା ଆଉ ମୋତେ କିଏ ଦେବ ? ବ୍ଲାଙ୍ଗେରିଆରେ ଥିଲା ବେଳେ ମୋର ଗବେଷଣା ବିଷୟ କେତେଦୂର ଗଲା ତାହା ଭାବି ଚିଠି ମଧ ଦେଇଥିଲେ । ମୋର ଜୀବିକା ପାଇଁ ଯେବେ ମୁଁ ବ୍ୟସ୍ତ ଥିଲି ସେତେବେଳେ ମୋତେ 'ମାତୃଭବନ' କଲେଜରେ ଅଧାପନା କାର୍ଯ୍ୟରେ ନିଯୁକ୍ତି ଦେଖି ତାଙ୍କର ପ୍ରେରଣା ଓ ଉତ୍ସାହ ମୁଁ କେବେବି ଭୁଲିବି ନାହିଁ ।

୨୦୦୮ ଜାନୁଆରୀ ୨୬ ଗୋଟିଏ ଶନିବାର ଥିଲା ଯେଉଁଦିନ ସାର୍‌ଙ୍କ ପ୍ରିୟତମା ପତ୍ନୀ ଇହଧାମ ତ୍ୟାଗ କରିଥିଲେ । ପିଲାଦିନୁ ବାପ, ମା' ଛେଉଣ୍ଡ ହୋଇଥିଲେ ମଧ ସବୁ ଦୁଃଖ ସୁଖ ବାଣ୍ଟୁଥିବା ପତ୍ନୀ ତାଙ୍କୁ ଛାଡ଼ି ଚାଲିଗଲେ । ତଥାପି ସେ ଅଟକି ନ ଥିଲେ । ୨୦୧୨ ନଭେମ୍ବର ୯ ଆଉ ଏକ ଦିନ ଯେଉଁ ଦିନଟି ତାଙ୍କ ପାଇଁ ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଥିଲା । ସୁଯୋଗ୍ୟ ପୁତ୍ର ଶୁଭକାନ୍ତଙ୍କୁ ହରାଇଥିଲେ । ତଥାପି ଆମ୍ଭମାନଙ୍କୁ ଭରସା କରି ପୁଣି ଅଣ୍ଟା ସଳଖି ଚାଲିଥିଲେ । ଦିନ, ରାତି ଓଡ଼ିଆ ସାହିତ୍ୟ ଉନ୍ନତି ତାଙ୍କର ଥିଲା ସଂକଳ୍ପ ପଢ଼ିବା ଲେଖିବା ସଭାସମିତି ଗଢ଼ିବା ତାଙ୍କର ଥିଲା ପ୍ରତିଜ୍ଞା । ପୂର୍ଣ୍ଣ ପରିଣତ ଜୀବନରେ କେତେ ଘାତପ୍ରତିଘାତ ସହି ପ୍ରତିକୂଳ ପରିସ୍ଥିତିରେ ସେ ସଚେତନ ଥିଲେ ଓ ଅନ୍ୟମାନଙ୍କୁ ସଚେତନ କରୁଥିଲେ । ଚର୍ତୁଃପାର୍ଶ୍ୱରେ ଷୋଳ ସହସ୍ର ପୁସ୍ତକ ଗୋପୀତୁଲ୍ୟ କହ୍ନେଇଙ୍କ ଲୀଳା ଅପୂର୍ବ ଥିଲା । ବର୍ଷ ବର୍ଷ ତପସ୍ୟା ଆଜି ଶେଷ ହୋଇଯାଇଛି ।

୨୦୧୭ ଜାନଆରି ୧ ତାରିଖ ମୋ ପାଇଁ ଥିଲା ଶୁଭଦିନ । ସାର୍‌ଙ୍କ କରକମଳରେ ମୋର ପୁସ୍ତକ 'କଥାକାର କମଳାକାନ୍ତ' ଉନ୍ମୋଚିତ ହେଲା । ସାର୍ ଭାବିଲେ ତାଙ୍କର ସବୁ ଦାୟିତ୍ୱ ସରିଗଲା । ଏହି ସଭା ଥିଲା ସାର୍‌ଙ୍କର ଶେଷ ଉନ୍ମୋଚନୀ ସଭା, ତା'ର ଠିକ୍ ୨ମାସ ପରେ ସାର୍ ଅସୁସ୍ଥ ହୋଇଗଲେ । ସାର୍ ଠିକ୍ ଜାଣିଥିଲେ ତାଙ୍କ ବିନା ମୋ ପୁସ୍ତକ ଅପ୍ରକାଶିତ ହୋଇରହିବ । ତେଣୁ ସେ ତରବରିଆ ଭାବେ କାମ ସାରିଦେଲେ । କିନ୍ତୁ ଜାଣିନାହାନ୍ତି ମୁଁ ସେଇଠି ହିଁ ରହିଗଲି । ପୂର୍ଣ୍ଣାଙ୍ଗ ମଣିଷଟିଏ ପୂର୍ଣ୍ଣଛେଦ ଟାଣି ଚାଲିଗଲେ । କିନ୍ତୁ ସବୁଦିନ ପାଇଁ ଅଧାବାଟେ ଅପୂର୍ଣ୍ଣ ହୋଇ ରହିଗଲି । ଈଶ୍ୱରଙ୍କୁ ପ୍ରାର୍ଥନା ତାଙ୍କ ଭଳି ଗୁରୁ ମୋତେ ଜନ୍ମେ ଜନ୍ମେ ମିଳୁ । ଜଗନ୍ନାଥଙ୍କ ନିକଟରେ ମୋର ପ୍ରାର୍ଥନା ତାଙ୍କର ଆତ୍ମା ବୈକୁଣ୍ଠ ଲାଭ କରୁ । ❖

ପାରେଶ୍ୱର ସାହି, ଯୋବ୍ରା, କଟକ

# ପୂଜ୍ୟ ଗୁରୁଦେବଙ୍କ ପାଇଁ ପଦେ

ସୁଜାତା ସାହୁ

ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁଦେବ ମହେଶ୍ୱର
ଗୁରୁ ସାକ୍ଷାତ ପରମ୍ବ୍ରହ୍ମ ତସ୍ମୈଶ୍ରୀ ଗୁରବେ ନମଃ ।

ପ୍ରକୃତରେ ଗୁରୁ ହେଉଛନ୍ତି ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ଗୁରୁଙ୍କୁ ସାକ୍ଷାତ କରିବାମାନେ ପରମବ୍ରହ୍ମଙ୍କର ଦର୍ଶନ ଲାଭ କରିବା, ଅଜ୍ଞାନ ଅନ୍ଧକାର ମଧ୍ୟରୁ ଯେଉଁ ଶିକ୍ଷକ ଛାତ୍ରର ହାତଧରି ଆଲୋକମୟ ପଥଆଡ଼କୁ ନେଇ ଯାଆନ୍ତି, ସେହି ହେଉଛନ୍ତି 'ଗୁରୁ' ।

ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନଞ୍ଜନ ଶଳାକାୟଃ
ଚକ୍ଷୁ ଉନ୍ମିଳିତଂ ଯେନଃ ତସ୍ମୈ ଶ୍ରୀଗୁରବେ ନମଃ

ତେଣୁ ଗୁରୁ ଶିଷ୍ୟର ସମ୍ବନ୍ଧ ଆତ୍ମା ପରମାତ୍ମାର ସମ୍ବନ୍ଧ ଅଟେ । ତେଣୁ ଏହି ଦୃଷ୍ଟିରୁ ବିଚାର କଲେ, ଜଣେ ଆଦର୍ଶ ଦକ୍ଷ ଶିକ୍ଷାଗୁରୁ ହେଉଛନ୍ତି ଆମର ଅତି ପ୍ରିୟଗୁରୁ ଡକ୍ଟର । ସର୍ବପ୍ରଥମେ, ମୋର ଅନ୍ତରର ନିଭୃତ କୋଣରୁ ମୁଁ ତାଙ୍କୁ ପ୍ରଣାମ ଜଣାଉଅଛି । ତାଙ୍କ ସମ୍ବନ୍ଧରେ ଦୁଇପଦ ଲେଖିବା ପାଇଁ ବାପୁଭାଇ ମୋତେ ଦୂରାଭାଷ ଯୋଗେ କହିଥିଲେ । ସେତେବେଳେ ମୁଁ ଭାବିଲି, ମୁଁ ଅଧମ, ମୋର ବା ଶକ୍ତି ସାମର୍ଥ୍ୟ କାହିଁ ? ଏତେ ବଡ଼ ପଥିତଯଶା, କର୍ମନିଷ୍ଠ ସଦାଚାରୀ, ପ୍ରସନ୍ନ ବଦନ ସମୃଦ୍ଧ, ବରେଣ୍ୟ ପୁରୁଷ, ପୁଣ୍ୟାତ୍ମାଙ୍କ ସମ୍ବନ୍ଧରେ ଲେଖିବା ପାଇଁ ।

ସାର୍ ଆମ ସମସ୍ତଙ୍କର ଚିରନମସ୍ୟ, ତାଙ୍କୁ ଆମେ ଏଠାରେ ସ୍ମରଣ କରିବା ଉଚିତ, ଯଦି ତାଙ୍କୁ ଏଠାରେ ସ୍ମରଣ ନ କରାଯାଏ, ତେବେ ଆମେ ଅପରାଧୀ ହୋଇଯିବା । କାରଣ ଆମ ପରମ୍ପରା, ଆମ ସଂସ୍କୃତିରେ ଆମେ ପୂଜ୍ୟପୂଜାକୁ ନେଇ ବଞ୍ଚିଥାଉ ।

ମୁଁ ଯେତେବେଳେ ରେଭେନ୍ସା ବିଶ୍ୱବିଦ୍ୟାଳୟରେ ୧୯୮୭ ମସିହାରେ ଓଡ଼ିଆ ସ୍ନାତକୋତ୍ତର ବିଭାଗରେ ନାମ ଲେଖାଇଲି । ସେଠାରେ ମୋର ପୂଜ୍ୟ ସାର୍‌ଙ୍କ ସାଙ୍ଗରେ ସାକ୍ଷାତ ହୋଇଥିଲା । ତାଙ୍କୁ ଯେତେବେଳେ ମୁଁ ପ୍ରଥମେ ଦେଖିଲି ସେତେବେଳେ ମୋ

ମନରେ ଗୋଟିଏ ଶିହରଣ ସୃଷ୍ଟି ହେଲା । ସେତେବେଳେ ପ୍ରଥମ ଦେଖାରେ ସେ ମୋତେ କହିଥିଲେ, ଯାହା ହେଉ ଓଡ଼ିଆ ସାହିତ୍ୟ ପ୍ରତି ତୁମର ରୁଚି ଅଛି । ଶୁଣି ଖୁସି ଲାଗିଲା । ତାଙ୍କର କହିବା, ଦକ୍ଷତାକୁ ଦେଖି ମୁଁ ଯାହା ଅନୁଭବ କଲି, ସେ ଏକାଧାରରେ ହେଉଛନ୍ତି ଆଦର୍ଶ ଶିକ୍ଷକ, ସମାଜସେବୀ, ନମ୍ର, ମିଷ୍ଟଭାଷୀ ଓ ସରଳ ପ୍ରକୃତିର ମଣିଷ । ତାଙ୍କର ବ୍ୟକ୍ତିତ୍ୱ ନିକଟରେ ମଥା ଆପେ ଆପେ ନଇଁ ଆସେ ।

ମୋର ଏମ୍.ଏ.ରେ ସ୍ପେଶିଆଲ ପେପର ଥିଲା ନାଟକ (ଡ୍ରାମା) । ସାର୍ ଆମର ନାଟକ ପେପର ପଢ଼ାଉଥାନ୍ତି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଓଡ଼ିଆ ନାଟ୍ୟ ସାହିତ୍ୟ ପରମ୍ପରା, ଏସବୁ ବିଷୟ ସାର୍ ଆମକୁ ପଢ଼ାଉଥାଆନ୍ତି । ପ୍ରାଚ୍ୟଯୁଗରୁ ଆରମ୍ଭ କରି...ପାଶ୍ଚାତ୍ୟଯୁଗ ପର୍ଯ୍ୟନ୍ତ....ଏତେ ସୁନ୍ଦର ଭାବରେ ସାର ଆମକୁ ପଢ଼ାଉଥାଆନ୍ତି, ବାସ୍ତବିକ ତାହା ଅବର୍ଣ୍ଣନୀୟ । ନାଟକ କ୍ଲାସ୍ ଆସିଲେ ପିଲାମାନେ ସମସ୍ତେ ଥାଆନ୍ତି । ମୋର ଦେଖିବାରେ ସାର୍‌ଙ୍କ କ୍ଲାସ୍ କେହି କେବେହେଲେ ମିସ୍ କରନ୍ତି ନାହିଁ । ଯେତେ ଯାହା ହେଲେ ବି ସାର୍‌ଙ୍କ ତୁଣ୍ଡରୁ ଦୁଇପଦ ଶୁଣିବା ପାଇଁ ସମସ୍ତେ ଯେପରି ବ୍ୟାକୁଳ, ଚାତକ ପରି ଚାହିଁରହିଥାନ୍ତି । ସାର୍‌ଙ୍କର ପଢ଼େଇବାର ଶୈଳୀ ସ୍ୱତନ୍ତ୍ର ନିଆରା । ବହୁତ ଉଚ୍ଚକୋଟୀର, ସହଜ, ସରଳ ଓ ବୋଧଗମ୍ୟ, ସେ ଜାଣିଥିଲେ କେମିତି ପଢ଼େଇଲେ ପିଲାମାନେ ସହଜରେ ହୃଦୟଙ୍ଗମ କରିପାରିବେ, ବିଭିନ୍ନ କୋଟେସନ୍, ବିଭିନ୍ନ ଉଦାହରଣ ଦେଇ ଏମିତି ପଢ଼େଇବେ ଯେମିତିକି ମନ ମଧ୍ୟରେ ସେ ଲିପିବଦ୍ଧ ହୋଇ ରହିଯାଏ, ତାଙ୍କର ଭାଷାକୁ ଭୁଲି ହୁଏନା । ମୋର ପ୍ରଥମ ଗୁରୁ ମୋର ବାପା/ମା', ତା'ପରେ ମୋର ଗୁରୁ ହେଉଛନ୍ତି, ଡକ୍ଟର କୃଷ୍ଣଚରଣ ବେହେରା ।

ମଣିଷ ଯେତେବଡ଼ ହେଉନା କାହିଁକି, ତା'ର ସ୍ମୃତି ସବୁ କେବେ ମନରୁ ଭୁଲେନା, ଆଜି ବି ମନେ ପଡ଼େ ସେ ଦିନର କଥା । ଜଣାପଡୁଛି, ଯେମିତି ଏଇ କେତେଦିନ ତଳର ଏ ସବୁ ଘଟଣା ଘଟିଥିଲା । ସ୍ମୃତିର ପଟଳରେ ସେ ସବୁ ଯେମିତି ଚକ୍ ଚକ୍ କରୁଛି । କେଉଁଠି ବି କିଛି ବି ଧୂଳି ଧୂସରିତ ହୋଇନି । ସତେ ଯେମିତି ସେଇ ପୁରୁଣା ଦିନକୁ ଏ ମନ ଖୋଜୁଛି । ଆଖିରେ ଲୋତକ ଆସିଯାଏ । ସେତେବେଳେ ପି.ଜି.ର ଶେଷବର୍ଷ । ଏଇ ପି.ଜି.ର ଶେଷବର୍ଷରେ ସାର୍ ଗୋଟିଏ ଦିନରେ ସମସ୍ତ ଛାତ୍ରଛାତ୍ରୀମାନଙ୍କୁ ତାଙ୍କର ଘରେ ନିମନ୍ତ୍ରଣ କରି ଖାଇବାକୁ ଦେଇଥାନ୍ତି । ସାର୍ ସେତେବେଳେ ତାଙ୍କର ସରକାରୀ କ୍ୱାର୍ଟର, ରେଭେନ୍ସା ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ରହୁଥାନ୍ତି । ସାର୍, ମ୍ୟାଡ଼ାମ୍‌କୁ ଡାକି କହୁଥିଲେ, ଶୁଣୁଛ, ପିଲାମାନଙ୍କର ଏ ହେଉଛି, ଶେଷବର୍ଷ । ତୁମେ ବିଭିନ୍ନ ଆଇଟମ୍ ପ୍ରସ୍ତୁତ କର, ପିଲାମାନେ ସମସ୍ତେ ଆମ ଘରେ ଆଜି ଖାଇବେ, ମ୍ୟାଡ଼ାମ୍ ରାନ୍ଧୁଥିଲେ, ତା'ପରେ ଆମେ ସମସ୍ତେ ସେଦିନ ତାଙ୍କ ଘରେ ଆନନ୍ଦରେ

ଭୋଜନ କରୁଥିଲୁ । ମ୍ୟାଡ଼ାମ୍ ଆମ୍ଭ ସମସ୍ତଙ୍କୁ ଯେତେବେଳେ ଖାଦ୍ୟ ପରସୁଥାଆନ୍ତି, ସେ କେତେ ଆନନ୍ଦ ପାଉଥିଲେ, କେତେ ତୃପ୍ତି ପାଉଥିଲେ, ପିଲାମାନଙ୍କର ପେଟ ଚିହ୍ନୁଥିଲେ, ଯିଏ ଯେତେବେଳେ ତାଙ୍କ ଘରକୁ ଯିବ, ସାର୍/ମ୍ୟାଡ଼ାମ୍ କେବେ ନ ଖୁଆଇ ଛାଡ଼ିବେ ନାହିଁ । ମ୍ୟାଡ଼ାମ୍ ଆଜି ନାହାନ୍ତି, ସାର୍ ଆଜି ନାହାନ୍ତି, ସେ ସବୁ ସ୍ମୃତି ହୋଇଯାଇଛି, କିନ୍ତୁ ତାଙ୍କର ଆମ୍ଭମାନଙ୍କ ପ୍ରତି ଯେଉଁ ସ୍ନେହ, ପ୍ରେମ, ଭଲପାଇବା ଛାଡ଼ିଦେଇ ଯାଇଛନ୍ତି, ତାହା କ'ଣ କେବେ ଭୂଲିହୁଏ ? ସାର୍ ଥିଲେ ବହୁତ ସରଳ, ମିଷ୍ଟଭାଷୀ ମହାନ ଶିକ୍ଷାଗୁରୁ । ସାର୍ ଏକ ନିଆରା ପରିଚୟ ସୃଷ୍ଟି କରି ସମସ୍ତଙ୍କର ଆଦରର ତଥା ମନର ମଣିଷ ଭାବେ ଏକ ସ୍ୱତନ୍ତ୍ର ସ୍ଥାନ ଅଳଙ୍କୃତ କରି ପାରିଥିଲେ ।

ମୁଁ କବି ବା ଲେଖକ ନୁହେଁ । ସମୁଦ୍ର ବେଳାଭୂମି ବାଲିରେଣୁ ସାଉଁଟିଲା ପରି, ମୋର ଅତି ପ୍ରିୟ ସାର୍‌ଙ୍କ ଜୀବନ ଦର୍ଶନରୁ କାଣିଚାଏ ସ୍ମୃତିର ବଳୟ ମଧ୍ୟକୁ ଆଣିବା ମୋର ଲକ୍ଷ୍ୟ । ସାର୍ ସବୁବେଳେ କହୁଥିଲେ ବିଦ୍ୟା ହେଉଛି, ସବୁଠାରୁ ବଡ଼ ଧନ, ଏହାକୁ ଦାନ କଲେ ଏହା କ୍ଷୟ ପରିବର୍ତ୍ତେ ବୃଦ୍ଧି ହୁଏ ।

ଗୁରୁ/ସାର୍‌ଙ୍କର ସିନା ପରଲୋକ ହୋଇଯାଇଛି । କିନ୍ତୁ ତାଙ୍କର ଶିକ୍ଷାର/ ଆଦର୍ଶର ପରଲୋକ ହୋଇ ନାହିଁ । ସେ ଥିଲେ ଏକ ଅସାଧାରଣ ବ୍ୟକ୍ତିତ୍ୱ । ସେ ଥିଲେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ସେହି ଜ୍ୟୋତିଷ୍କ ଆଜି ଚିରଦିନ ପାଇଁ ଲିଭିଗଲା କିନ୍ତୁ ସେ ଯେଉଁ ଆଲୋକର ବର୍ତ୍ତିକା ଜଳାଇ ଦେଇଗଲେ, ତାହା ତାଙ୍କର ହାତଗଢ଼ା ଅନେକ ଅଗଣିତ ଛାତ୍ରଛାତ୍ରୀଙ୍କ ହୃଦୟରେ ସବୁଦିନ ପାଇଁ ରହିଥିବ । ସାର୍‌ଙ୍କର ଅନେକ ଛାତ୍ର/ଛାତ୍ରୀ ଆଜି କେଉଁଠି ନା କେଉଁଠି ଉଚ୍ଚ ପଦପଦବିରେ ପ୍ରତିଷ୍ଠିତ ହୋଇ ସାରିଛନ୍ତି । ତାଙ୍କର ବ୍ୟକ୍ତିତ୍ୱ ନିକଟରେ ମୁଣ୍ଡ ଆପେ ଆପେ ନଇଁ ଆସେ ।

ବିଦାୟ ଗୁରୁଜୀ ଘେନିବେ ପ୍ରଣାମ
ଅନ୍ତରୁ ଭକତି ଢାଳି
ଦେବତା ସମାନ ରହିବ ତୁମେ ହେ
ହୃଦୟ ମନ୍ଦିରେ ଆଜି ।

ସାର୍, ମୃତ୍ୟୁ ପରେ ମଧ୍ୟ ଅମର ହୋଇ ରହିଛନ୍ତି । କାଳ ତାଙ୍କୁ ଗ୍ରାସ କରିପାରେ ନାହିଁ । ଗୋପବନ୍ଧୁ ଧର୍ମପଦ କବିତାରେ ଲେଖିଥିଲେ-

ମାନବ ଜୀବନ ନୁହଁଇ କେବଳ
ବର୍ଷମାସ ଦିନ ଦଣ୍ଡ
କର୍ମେ ଯିଏ ନର କର୍ମ ଏକାତାର
ଜୀବନର ମାନ ଦଣ୍ଡ ।

ଏ ସଂସାରରେ ଜନ୍ମ / ମୃତ୍ୟୁର ପରମ୍ପରା ଲାଗିଛି । ସମସ୍ତେ ଜନ୍ମ ହେବେ ଏବଂ ସମସ୍ତେ ଦିନେ ନା ଦିନେ ମରିବେ । କିନ୍ତୁ କେତେକ ବ୍ୟକ୍ତି ଅଛନ୍ତି, ସେମାନେ ମରି ମଧ୍ୟ ଅମର । ଆମର ଇତିହାସ ପୃଷ୍ଠାରୁ ଆଲୋଚନା କଲେ, ରବୀନ୍ଦ୍ରନାଥ ଠାକୁର, ମାଳତୀ ଚୌଧୁରୀ, ରମାଦେବୀ, ଗୋପବନ୍ଧୁ, ଗଙ୍ଗାଧର ମେହେର, ନାରୀକବି କୁନ୍ତଳା କୁମାରୀ ସାବତ୍, ମଧୁସୂଦନ ରାଓ ପ୍ରମୁଖ ଅନ୍ୟତମ । ଏମାନେ ମୃତ୍ୟୁ ପରେ ମଧ୍ୟ ଅମର ହୋଇ ଏ ସମାଜ ପାଖରେ ରହିଛନ୍ତି । ତେଣୁ ମୃତ୍ୟୁ ପାଇଁ ଆଦୌ ଶୋକ କରିବା ଉଚିତ ନୁହେଁ । ଏଥିପାଇଁ ଶ୍ରୀମଦ୍ ଭାଗବତ ଗୀତା ଯେଉଁଟାକି ଭଗବାନଙ୍କ ମୁଖନିସୃତ ବାଣୀ ଏଠାରେ କୁହାଯାଇଛି-

ଜାତସ୍ୟହି ଧ୍ରୁବୋମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟଚ
ତସ୍ମାଦ ପରିହାର୍ଯ୍ୟେଥେନତ୍ୱଂ ଶୋଚିତୁ ମର୍ହସି ।
କେତେ ଜନ୍ମିଛନ୍ତି କେତେ ମରିଛନ୍ତି
ଏହି ଅନିତ୍ୟ ସଂସାରେ
କାଳର ଗ୍ରାସରେ ଛାଡ଼ିଦେଇଥାନ୍ତି
କିର୍ତ୍ତୀ, ଯଶ, ଆଲୋକରେ ।

ସାର୍ ସବୁଦିନ ଆମ ହୃଦୟ ମଧ୍ୟରେ ସବୁବେଳ ପାଇଁ ଜୀବିତ ଥିବେ । ତାଙ୍କର ଭଲ କାମ ଓ ଗୁଣ ପାଇଁ ସେ ଆମ ନିକଟରେ ସଦାବେଳେ ଜୀବିତ ଥିବେ । ତାଙ୍କର ଆଶୀର୍ବାଦ ଓ ଆଦର୍ଶ ଏବଂ ପ୍ରେରଣାର ଉସ୍ଥ ସେମିତି ଆମ ଉପରେ ଝରିପଡୁ । ତାଙ୍କର ପ୍ରେରଣା ଆମ ଜୀବନର ଲକ୍ଷ୍ୟ ହେଉ ।

ତାଙ୍କ ଘରକୁ ଗଲେ ଆଜି ତାଙ୍କ ଗୃହ ଶୂନ୍ୟ ଶୂନ୍ୟ ଲାଗୁଛି । ତାଙ୍କ ଘରେ ସାର୍ ଥିରେ ମୁଖ୍ୟ ଆକର୍ଷଣ । 'କୃଷ୍ଣ' ଆଜି ନାହାନ୍ତି । ତାଙ୍କ ବିହୁନେ ସବୁ ଥାଇ ମଧ୍ୟ କିଛି ନ ଥାଇ, ନ ଥାଇ ଲାଗୁଛି । ତାଙ୍କର ଇହଲୀଳା ସମ୍ବରଣ କରିବା ବର୍ଷେ ହୋଇଗଲା । ଜୀବନ ଜଞ୍ଜାଳ କଷାଘାତରେ ନିରୁତ୍ସାହିତ ନ ହୋଇ ସାହିତ୍ୟ ସାଧନ ବ୍ରତରେ ବ୍ରତୀ ହୋଇ, ଯେଉଁ ଜ୍ୱଳନ୍ତ ଦୃଷ୍ଟାନ୍ତ ରଖିଯାଇଛନ୍ତି ତାହା ସବୁଦିନ ପାଇଁ ଗୌରବମୟ ଇତିହାସ ହୋଇରହିବ । ମଣିଷ ଗଢ଼ି ତୋଳିବା ତାଙ୍କର ଏକ ନିଶା ଥିଲା । ସାହିତ୍ୟ ଜଗତର ଏକ ଦୀପ୍ତିମନ୍ତ ସୂର୍ଯ୍ୟଙ୍କର ଅସ୍ତିମିତରେ ଅନ୍ଧାର ହୋଇଗଲା ସବୁଦିନ ପାଇଁ ସତ, ହେଲେ ତାଙ୍କର ଯଶ ସବୁଦିନ ପାଇଁ ଅନେକ ଛାତ୍ରଛାତ୍ରୀଙ୍କ ହୃଦୟରେ ସଜୀବ ହୋଇ ରହିଥିବ ।

ଧନ୍ୟ କୃଷ୍ଣସାର ଜନ୍ମ ଶୁଭକ୍ଷଣେ
ମୃତ୍ୟୁଞ୍ଜୟ ହୋଇ ଏ ତିନି ଭୁବନେ
ତୁମ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ ॥

ସାର୍, ଆପଣ ମୋ ହୃଦୟ କନ୍ଦରରେ ସବୁଦିନ ପାଇଁ ଜୀବିତ ଥିବେ । ଆପଣଙ୍କ ଆଦର୍ଶକୁ ପାଥେୟ କରି ମୁଁ ମୋର ଚଲାପଥକୁ ଆଗେଇ ଆଗେଇ ଚାଲୁଥିବି । ଏଭଳି ବ୍ୟକ୍ତି ବିଶେଷଙ୍କୁ ହରାଇଲେ କଷ୍ଟ ଲାଗେ । କାରଣ ଏଭଳି ଅଭାବ ଅପୂରଣୀୟ ହୋଇ ରହିଥାଏ.... ।

ଆପଣ ଯେଉଁଠାରେ ଥିଲେ ମଧ୍ୟ ଆମ ସମସ୍ତଙ୍କୁ/ ଆପଣଙ୍କର ପରିବାରକୁ ଆଶୀର୍ବାଦ କରନ୍ତୁ । ଆପଣ ସବୁବେଳେ ଯେଉଁ ଚେୟାରରେ ବସୁ ଥିଲେ । ସେ ଚେୟାରର ଶୂନ୍ୟସ୍ଥାନ ପଡ଼ିଯାଇଛି । ଆପଣ ସମସ୍ତ ଭୋଗବିଳାସ ତ୍ୟାଗ କରି ଆଜି ଆମଠାରୁ ଦୂରକୁ ବହୁ ଦୂରକୁ ଚାଲିଯାଇଛନ୍ତି, ଯେଉଁଠୁ ଆଉ କେହି କେବେ ଫେରି ଆସେନି । ସାହିତ୍ୟ ଜଗତର ଜାଗ୍ରତ ପ୍ରହରୀଙ୍କର ମରଶରୀର ଗୋଟିଏ ମୁହୂର୍ତ୍ତରେ ପୋଡ଼ି ପାଉଁଶ ହୋଇଗଲା କିନ୍ତୁ ଶିକ୍ଷାର ଅଧ୍ୟବସାୟ ଓ କର୍ତ୍ତବ୍ୟ ପରାୟଣର ଲମ୍ବା ରାସ୍ତାଟିଏ ଅଗଣିତ ଦାୟାଦମାନଙ୍କ ପାଇଁ ଛାଡ଼ି ଦେଇଗଲେ । ତାଙ୍କର ପ୍ରେରଣା, ମାର୍ଗଦର୍ଶନ, ସ୍ୱଷ୍ଟତା ଓ ଆଦର୍ଶ ଆମ ପାଇଁ ଅବିସ୍ମରଣୀୟ । ସାର୍ ତୁମେ ଅମର ରୁହ ।

ଆଜିର ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଅବସରରେ ତାଙ୍କର ଅମ୍ଳାନ ବ୍ୟକ୍ତିତ୍ୱ ଓ ଅସାଧାରଣ ପାଣ୍ଡିତ୍ୟ ଓ ଛାତ୍ରବତ୍ସଳତାକୁ ବାରମ୍ବାର ପ୍ରଣାମ ଜଣାଇ ମୋର ଏହି କ୍ଷୁଦ୍ର ଅନ୍ତରର ପରିଭାଷାକୁ ମୁଁ ମୋର ଗୁରୁଦେବଙ୍କ ପାଦଯୁଗଳରେ ଅର୍ପଣ କରିବା ସହିତ ବିଭୁଙ୍କ ପାଖରେ ମୋର ଏତିକି ପ୍ରାର୍ଥନା :-

ତୁମ ଗୁଣଗାନ କରନ୍ତି ସଭିଏଁ
ମରିବି ହୋଇ ଅମର
ଆତ୍ମା ତୁମର ଲଭୁ ସଦ୍‌ଗତି
ଏତିକି, ବିଭୁଙ୍କୁ ପ୍ରାର୍ଥନା ଆମର
ବିଭୁଙ୍କୁ ପ୍ରାର୍ଥନା ଆମର । ❖

# କୃଷ୍ଣଙ୍କ ବଂଶୀସ୍ୱନ

ପବିତ୍ର ପାଣିଗ୍ରାହୀ

ସାରସ୍ୱତ ସାଧକ ଡ. କୃଷ୍ଣଚରଣ ବେହେରାଙ୍କ ନାମ ପ୍ରଥମେ ଶୁଣିଥିଲି ଛାତ୍ରାବସ୍ଥାରେ ତାଙ୍କର ବହୁଚର୍ଚ୍ଚିତ ଗଳ୍ପ 'ବେଦୀ' ପାଇଁ । ତା'ପରେ ଖୋଜି ଖୋଜି ତାଙ୍କ ବେଦୀ ଓ ଅନ୍ୟାନ୍ୟ ଗଳ୍ପ' ଏବଂ 'ଚା କପ୍‌ରେ ଝଡ଼' ବହି ଦୁଇଟି ପଢ଼ିଥିଲି । ତାଙ୍କୁ ଦେଖିବାର ଓ ତାଙ୍କ ବକ୍ତବ୍ୟ ଶୁଣିବାର ପ୍ରଥମ ସୁଯୋଗ ପାଇଲି ଭଦ୍ରକ ଟାଉନ୍ ହଲର କୌଣସି ଏକ ସାହିତ୍ୟ ସଭାରେ । ତାଙ୍କର ନିରଳସ ବ୍ୟକ୍ତିତ୍ୱ ଓ କହୁକହୁ ମନକୁ ମନ ଈଷତ୍ ହସଧାରେ ଫିଙ୍ଗିଦେବାର ନିଆରା କଳା ମୋତେ ମୁଗ୍ଧ କରିଥିଲା ।

ତାଙ୍କ ସହ ମୋର କିନ୍ତୁ ପରିଚୟ ହେଲା ସେ ଭଦ୍ରକ ମହିଳା ମହାବିଦ୍ୟାଳୟରେ ଅଧ୍ୟକ୍ଷ ଭାବେ ଯୋଗଦେଲା ପରେ । ମୋ ପତ୍ନୀ ସେଠାରେ ଅଧ୍ୟାପିକା ଭାବେ କାର୍ଯ୍ୟରତ ଥିଲେ ଓ କୃଷ୍ଣସାର୍‌ଙ୍କ ଝିଅ ଚୁନିଅପା ପତ୍ନୀଙ୍କର ସହକର୍ମୀ ଥିଲେ, ସେଇ ସୂତ୍ରରେ । ଝିଅ ଜ୍ୱାଇଁଙ୍କ ସହ ରହୁଥିବା ସାର୍‌ଙ୍କ ସହ ଅନେକଥର ଭେଟହେଲା ଓ ଆଲୋଚନା କରିବାର ସୁଯୋଗ ମିଳିଲା ବିଭିନ୍ନ ସାହିତ୍ୟ ପ୍ରସଂଗକୁ ନେଇ ।

ମୁଁ ସେତେବେଳେ ଭଦ୍ରକ ସାହିତ୍ୟ ପରିଷଦର ସଂପାଦକ ଦାୟିତ୍ୱରେ ଥିଲି । ଦିନେ କୃଷ୍ଣ ସାର୍ ମୋତେ ଡକାଇ ପ୍ରସ୍ତାବ ଦେଲେ ତାଙ୍କ ସଂପାଦିତ କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କ 'ମୋଗଲ ତାମସା'ର ଏକ ଘଣ୍ଟିକିଆ ନାଟ୍ୟରୂପ ଆକାଶବାଣୀ କଟକ କେନ୍ଦ୍ରରେ ପରିବେଷଣ କରିବାର ଦାୟିତ୍ୱ ନେବାକୁ । ମୁଁ ଆଗପଛ ଚିନ୍ତା ନକରି ତାଙ୍କ କଥାରେ ହଁ ମାରିଦେଲି । ବହୁ କଷ୍ଟସ୍ୱୀକାର କରି ନାଟ୍ୟ ନିର୍ଦ୍ଦେଶକ ବାଦଲ ସିକଦାର୍‌ଙ୍କ ସହଯୋଗ କ୍ରମେ ନାଟ୍ୟରୂପ ପ୍ରସ୍ତୁତ ହୋଇ ବ୍ୟାପକ ପ୍ରସ୍ତୁତି ପରେ ରେକର୍ଡ଼ିଂ ହେଲା ସମ୍ଭବତଃ ୧୯୯୦ରେ । ପ୍ରାୟ ଦଶବର୍ଷ ଧରି ଆକାଶବାଣୀ, କଟକ କେନ୍ଦ୍ରରୁ ତାହା ମଝିରେ ମଝିରେ ପ୍ରସାରିତ ହୋଇଥିଲା ।

ସେ ଥିଲେ ଛଳନାହୀନ ନିର୍ଭେଜାଲ ମଣିଷଟିଏ । କାହାରି ଭଲଗୁଣଟିଏ ଦେଖିଲେ ସେ ସିଧାସଳଖ ପ୍ରଶଂସା କରୁଥିଲେ । ସେ ଥଆନ୍ତି କବି ପଦ୍ମନାଭ ବେହେରା ସ୍ମୃତି ସଂସଦର ସ୍ଥାୟୀ ଓ ପ୍ରତିଷ୍ଠାତା ସଭାପତି । ଅନୁଷ୍ଠାନର ବାର୍ଷିକୋତ୍ସବର ସାଧାରଣ ସଭା ଚାଲିଥାଏ ଭଦ୍ରକ ଶହୀଦ ସ୍ମୃତି ଭବନ (ଟାଉନ୍ ହଲ)ରେ । ମୋର ସ୍ୱଭାବ ସୁଲଭ ଢଂଗରେ ମୁଁ ବସିଥାଏ ଶ୍ରୋତାଙ୍କ ଶେଷ ଧାଡ଼ିରେ । ହଠାତ୍ ସେ ମୋ ନାମୋଚ୍ଚାରଣ

କରିବାରୁ ମୁଁ ଆଶ୍ଚର୍ଯ୍ୟଚକିତ ହେଲି । 'ନବଲିପି' ପତ୍ରିକାର ଶାରଦୀୟ ସଂଖ୍ୟାରେ ପ୍ରକାଶିତ ମୋର ଗପଟିଏ ତାଙ୍କୁ ଭଲ ଲାଗିଥିବାରୁ ସେ ସଂପର୍କରେ କେତୋଟି ଶ୍ରଦ୍ଧାଶୀଳ ବାକ୍ୟ ସେ ଉଚ୍ଚାରଣ କରିଥିଲେ ଅକପଟ ଭାବେ । ସଭାରେ ସଶ୍ରଦ୍ଧ ମତାମତ ପାଇଁ କୃତଜ୍ଞତା ଜଣାଇବାକୁ ମୁଁ ତାଙ୍କୁ ସାକ୍ଷାତ କରିଥିଲି ସଭା ସରିଲା ପରେ ।

ସାର୍‌ଙ୍କ କନିଷ୍ଠ ପୁତ୍ର ଶୁଭକାନ୍ତର ମୋରି ବିଭାଗରେ ବାଣୀବିହାରରେ ପଢ଼ୁଥିଲେ ମୋ ତଳ କ୍ଲାସରେ । ସେ ଆଇ.ଏଫ୍.ଏସ୍ ପାଇଲା ପରେ ବିଦେଶ ରହୁଥିଲେ ବି ଭଲ ଗପ ଲେଖୁଥିଲେ । ଆମ ଭିତରେ ଖୁବ୍ ବେଶି ଘନିଷ୍ଠତା ନଥିଲେ ମଧ୍ୟ ଯୋଗାଯୋଗ ଅବ୍ୟାହତ ଥିଲା । ତାଙ୍କର ଆକସ୍ମିକ ତିରୋଧାନରେ ଖୁବ୍ କଷ୍ଟ ଲାଗିଥିଲା ମୋତେ । ସାର୍ ବେଶ୍ ଭାଂଗି ପଡ଼ିଛନ୍ତି ବୋଲି ଶୁଣିଥିଲି ଅନ୍ୟମାନଙ୍କଠୁ । କିନ୍ତୁ କଟକ ଯାଇ ତାଙ୍କୁ ସାକ୍ଷାତ କରିବାକୁ ମୋର ସାହସ ହେଉ ନଥିଲା । କିଛିମାସ ପରେ ଆମ ସହରର ଏକ ସାହିତ୍ୟ କାର୍ଯ୍ୟକ୍ରମକୁ ସେ ଅତିଥି ହୋଇ ଆସି ବିଶ୍ରାମ ନେଉଥାନ୍ତି ତାଙ୍କ ଝିଅ-ଜ୍ୱାଇଁ ଚୁନିଅପା ଓ ଦାମ ସାର୍‌ଙ୍କ ଘରେ । ସପତ୍ନୀକ ଯାଇ ତାଙ୍କୁ ସାକ୍ଷାତ କଲି । ଆମକୁ ଦେଖୁ ଦେଖୁ ସେଇ ଦୁର୍ବୋଧ୍ୟ ହସ ଧାରେ ଖେଳି ଗଲା ତାଙ୍କ ଓଠରେ । ସବୁଥର ପରି ପଚାରିଲେ କେମିତି ଅଛ । ଲେଖା ଲେଖି ଚାଲିଚି ନା ନାହିଁ । ତା'ପରେ ଭଦ୍ରକର ସାହିତ୍ୟିକ ପାଣିପାଗ ଓ ସାହିତ୍ୟ ଆଲୋଚନାରେ ସେ ଏମିତି ମଜ୍ଜି ଗଲେ ଯେ ଆମେ ଶୁଭକାନ୍ତ ପ୍ରସଂଗ ଉଠାଇ ଆଂତରିକ ସମବେଦନା ପଦେ ଜଣାଇବାର ଅବକାଶ ପାଇଲୁ ନାହିଁ ।

କୃଷ୍ଣସାର୍‌ଙ୍କୁ ନେଇ ଏମିତି ଅନେକ ଅଭୁଲା ସ୍ମୃତି ରହିଛି ମୋର । ସବୁ କଥା କହିଲେ ହୁଏତ ନିଜକଥା କହିଲା ପରି ଲାଗିବ । ତାଙ୍କ ପରି ସ୍ଥିତପ୍ରଜ୍ଞ ମଣିଷଙ୍କ ବିଷୟରେ ଅଧିକ କଥା ବଖାଣିବାର ଆବଶ୍ୟକତା ଅଛି କି, ବିଶେଷ କରି ତାଙ୍କ ଅବର୍ତ୍ତମାନରେ ! ଖୁବ୍ ଧୀରେ ଧୀରେ ଅଳ୍ପ କଥା ସେ କହୁଥିଲେ, କିନ୍ତୁ କହୁଥିଲେ ନିଦାକଥା । ତାଙ୍କୁ କେବଳ ବାହାରୁ ଦେଖି ତାଙ୍କ ସହ ନମିଶିଲା ଯାଏ କେହି ଜାଣିପାରୁନଥିଲା ସେ ସତରେ କେତେ ରୋମାଂଟିକ, ପ୍ରାଣପ୍ରାଚୁର୍ଯ୍ୟରେ କେତେ ଛଳଛଳ ଥିଲେ ନିଜ ଭିତରେ । ଜଣେ ଉଚ୍ଚକୋଟିର ଗବେଷକ ଓ ସମାଲୋଚକ ହେଲେ ମଧ୍ୟ ତାଙ୍କର ମୌଳିକ ସାରସ୍ୱତ ସୃଜନ ଥିଲା ନିଆରା । ଉଭୟ ଗଦ୍ୟ ଓ ପଦ୍ୟ ରଚନାରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କ ସଂପାଦନା ଓ ସାଂଗଠନିକ ଦକ୍ଷତାରେ ବି ପଟାନ୍ତର ନଥିଲା । ବର୍ଷେ ହେଲା ସେ ବିଦାୟ ନେଲେଣି ଆମ ଗହଣରୁ । ହେଲେ ତାଙ୍କ ସୃଜନର ସାରସ୍ୱତ ବଂଶୀସ୍ୱନ ଏବେ ବି ଶୁଭିଯାଉଚି ଆମକୁ । ଶୁଭୁଥିବ ସବୁଦିନେ । ତାଙ୍କ ଦିବଂଗତ ଅମର ଆତ୍ମାକୁ ମୋର ସଶ୍ରଦ୍ଧ ଓ ସଭକ୍ତି ପ୍ରଣାମ । ❖

ପ୍ରାଧ୍ୟାପକ ଓ ଇତିହାସ ବିଭାଗ ମୁଖ୍ୟ
ବିଏନ୍‌ଏମ୍‌ଏ କଲେଜ, ପାଳିଆବିନ୍ଧା , ଭଦ୍ରକ

# ଶ୍ରୀଗୁରୁ ସ୍ମରଣେ

ଶୈଳେନ୍ଦ୍ର ପ୍ରସାଦ ଆଚାର୍ଯ୍ୟ

୧୯୮୬ ମସିହାରେ ସ୍ନାତକୋତ୍ତର ଓଡ଼ିଆ ବିଭାଗର ଛାତ୍ରରୂପେ ରେଭେନ୍ସା ମହାବିଦ୍ୟାଳୟରେ ମୁଁ ଅଧ୍ୟୟନ କରୁଥାଏ । ସେତେବେଳେ ମୋର ପୂଜ୍ୟଗୁରୁ ସ୍ୱର୍ଗତ କୃଷ୍ଣଚରଣ ବେହେରା ବିଭାଗୀୟ ମୁଖ୍ୟ ଥାନ୍ତି ଏବଂ ଦାପ୍ତରିକ କାର୍ଯ୍ୟ ସହ ଅଧ୍ୟାପନା କାର୍ଯ୍ୟ ଖୁବ୍ ନିଷ୍ଠାପର ଭାବେ ସମ୍ପାଦନ କରୁଥାନ୍ତି । ତାଙ୍କ ଅଧ୍ୟାପନା ଶୈଳୀ ଅନ୍ୟ ଅଧ୍ୟାପକଙ୍କଠାରୁ ଥିଲା ସଂପୂର୍ଣ୍ଣ ଭିନ୍ନ । କଥୋପକଥନ ଶୈଳୀରେ ବିଷୟବସ୍ତୁର ସାରତତ୍ତ୍ୱ ଛାତ୍ରମାନଙ୍କ ବୋଧଗମ୍ୟ ହେଲାଭଳି ଏକାଗ୍ରତାର ସହ ପାଠ ପଢ଼ାଇବାରେ ସେ ଖୁବ୍ ଦକ୍ଷ ଥିଲେ । ଯଦ୍ୱାରାକି କୌଣସି ଛାତ୍ର କ୍ଲାସ୍‌ରୁମ୍‌ରେ ଅନ୍ୟ ମନସ୍କ ହେବାର ଅବକାଶ ପାଉ ନଥିଲା । ବୃତ୍ତିଗତ ସ୍ୱଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ନିଷ୍ଠା ଥିଲା ।

ମୋ ଜୀବନରେ ପ୍ରାଥମିକ ଶିକ୍ଷା ପର୍ଯ୍ୟାୟରୁ ସ୍ନାତକୋତ୍ତର ଶିକ୍ଷା ପର୍ଯ୍ୟନ୍ତ ଯେଉଁ ପ୍ରମୁଖ ଶିକ୍ଷାଦାତା ଗୁରୁଙ୍କ ସଂସ୍ପର୍ଶରେ ଆସିଛି ସେମାନଙ୍କ ମଧ୍ୟରେ ସ୍ୱର୍ଗତ କୃଷ୍ଣଚରଣ ବେହେରା ହିଁ ମୋର ଏକାନ୍ତ ଆପଣାର ଥିଲେ । ତାଙ୍କ ପ୍ରତି ମୋ ହୃଦୟରେ ପ୍ରଗାଢ଼ ଭକ୍ତି-ସ୍ନେହ ଓ ଆନ୍ତରିକତା ଥିଲା । ତଦାନୁରୂପେ ଗୁରୁ ମଧ୍ୟ ମୋତେ ସ୍ନେହସିକ୍ତ ନିବିଡ଼ ବନ୍ଧନରେ ବାନ୍ଧି ରଖିଥିଲେ । କଳାହାଣ୍ଡିରୁ ମୁଁ ଯେବେବି କୌଣସି କାର୍ଯ୍ୟ ନେଇ କଟକ ଯାଏଁ, ତାଙ୍କୁ ନିହାତି ସାକ୍ଷାତ କରିବାକୁ ଭୁଲି ନ ଥାଏ । ଯଦିବା କେବେ କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ସାକ୍ଷାତ କରିବାର ଅବସର ପାଏ ନାହିଁ, ତେବେ କଟକ ଆସି କିଛି ଗୋଟାଏ କାମ ମୋର ଅଧୁରା ରହିଗଲା ଭଳି ଅନୁଭବ କରେ । ଯେତେବେଳେ ତାଙ୍କୁ ସାକ୍ଷାତ କରିବାକୁ ଯାଏ ପ୍ରାୟତଃ ସବୁବେଳେ କଳାହାଣ୍ଡି ବନଜାତ ଓ ନିଜସ୍ୱ କୃଷିଜାତ ଫଳମୂଳ-ଶସ୍ୟାଦି କିଛି ଭେଟି ଦେବାକୁ ଭୁଲିନଥାଏ । କାରଣ ତାଙ୍କୁ କିଛି ଭେଟି ଦେବାରେ ମୁଁ ପରମତୃପ୍ତି ଲାଭ କରୁଥିଲି । ସେ ମଧ୍ୟ ମୋ ଉପହାର ପ୍ରଦତ୍ତ ସାମଗ୍ରୀ ଅତି ଆନନ୍ଦରେ ଗ୍ରହଣ ପୂର୍ବକ ତାଙ୍କ ବଡ଼ ବୋହୂ 'ମିନୁ'ଙ୍କୁ ଡାକି ସେଗୁଡ଼ିକ ଘର ଭିତରକୁ ଘେନି ଯିବା ପାଇଁ ନିର୍ଦ୍ଦେଶ କରୁଥିଲେ । ସେତେବେଳେ ତାଙ୍କ ମୁଖଭାବଭଙ୍ଗୀରୁ ମୁଁ

ଅନୁଭବ କରିଛି, ସତେ ଅବା ସେ ତାଙ୍କ ବୋହୂଙ୍କୁ କହୁଥିଲେ- "ଆରେ ଦେଖ୍ ମୋର ପ୍ରିୟ ଛାତ୍ର କଳାହାଣ୍ଡିରୁ ମୋ ପାଇଁ କ'ଣ ଆଣିଛି ? ସେ ନିଜେ ଖୁସି ହେଉଥିଲେ ଏବଂ ପରିବାରର ସଦସ୍ୟଙ୍କୁ ଖୁସି କରାଉଥିଲେ । ଏ ପରିପ୍ରେକ୍ଷୀରେ ସାର୍‌ଙ୍କ ମନରେ ଦ୍ରବ୍ୟଗତ ମୂଲ୍ୟର ବିଚାର ନ ଥିଲା, ଥିଲା ସ୍ନେହଗତ ମୂଲ୍ୟବୋଧର ଭାବସ୍ପନ୍ଦନ । ସେଥିପାଇଁ ତାଙ୍କୁ ମୁଁ ଜଣେ ଭାବଗ୍ରାହୀ ମଣିଷରୂପେ ଠିକ୍ ଚିହ୍ନି ପାରିଥିଲି । ତାଙ୍କ ପ୍ରତି ଥିବା ମୋ ହୃଦୟର ନିର୍ମଳ ଭାବ-ଭକ୍ତି ଓ ସ୍ନେହ ସେ ଯଥାନୁରୂପ ଗ୍ରହଣପୂର୍ବକ ମୋତେ ପୁତ୍ରବତ୍ ଭଲ ପାଇ ବାତ୍ସଲ୍ୟ ସ୍ନେହରେ ବାନ୍ଧି ରଖିଥିଲେ । ସେଥିପାଇଁ ମୋ ପ୍ରୀତି ଉପହାର ଗ୍ରହଣ କରିବାକୁ କେବେ ସେ ଦ୍ୱିଧାବୋଧ କରୁ ନଥିଲେ । ଯେବେବି ମୁଁ ତାଙ୍କ ପାଖକୁ ଯାଇଛି ବଡ଼ପୁଅ ଓ ବୋହୂଙ୍କ ନିର୍ଦ୍ଦେଶ କରି କହୁଥିଲେ- 'ଆରେ ଶୈଳେନ୍ଦ୍ର ଆସିଛି, ତାକୁ କିଛି ଖାଇବାକୁ ଦିଅ ।' କାହା ଘରକୁ ଗଲେ ସୌଜନ୍ୟତା ଦୃଷ୍ଟିରୁ କିଛି ଖାଦ୍ୟ-ପାନୀୟ ଦେଇ ଆପ୍ୟାୟିତ କରିବା ଏକ ସାମାଜିକ ପରମ୍ପରା । କିନ୍ତୁ ସାର୍ ସେହି ଚିନ୍ତନ ଦୃଷ୍ଟିରୁ ମୋତେ କିଛି ଖାଇବା ପାଇଁ କହୁଥିଲେ ବୋଲି ମୁଁ ଅନୁଭବ କରିନାହିଁ । ବରଂ ତାଙ୍କ ପ୍ରାଣପ୍ରିୟ ଛାତ୍ର ନିକଟରେ ସ୍ନେହସିକ୍ତ ଭାବ ପ୍ରଦର୍ଶନ କରୁଥିବା ମୁଁ ଉପଲବ୍ଧି କରିଛି । ସେ ମୋତେ ଚିଠି ଲେଖିଲେ ପ୍ରଥମେ ପ୍ରିୟ ଶୈଳେନ୍ଦ୍ର ବୋଲି ସମ୍ବୋଧନ କରି ହିଁ ଲେଖା ଆରମ୍ଭ କରୁଥିଲେ । ତାଙ୍କ ପ୍ରେରିତ ସମସ୍ତ ଚିଠି ମୋ ପାଖରେ ଅମୂଲ୍ୟ ସମ୍ପତ୍ତି ରୂପେ ସାଇତା ହୋଇ ରହିଛି ।

ରେଭେନ୍ସା ମହାବିଦ୍ୟାଳୟରେ ମୁଁ ପାଠ ପଢୁଥିବାବେଳେ ପ୍ରତିବର୍ଷ ଏହି ଶିକ୍ଷାନୁଷ୍ଠାନର ବାର୍ଷିକ ମୁଖପତ୍ର 'ରେଭେନ୍ସାଭିଯାନ' ପ୍ରକାଶିତ ହେଉଥିଲା । ଏ ନିମନ୍ତେ ସାର୍ କ୍ଲାସ୍‌ରୁମ୍‌ରେ ଛାତ୍ରମାନଙ୍କୁ ଲେଖା ଦେବା ପାଇଁ ଆହ୍ୱାନ କରୁଥିଲେ । ମୋ ମନରେ ଲେଖାଟିଏ ଦେବା ପାଇଁ ଇଚ୍ଛା ଜାତ ହେଲା । ହେଲେ କେଉଁ ବିଷୟରେ ଲେଖିବି ମୁଁ କିଛି ନିର୍ଦ୍ଧାର୍ଯ୍ୟ କରି ପାରୁ ନଥାଏ । ଏଣୁ ଦିନେ ସନ୍ଧ୍ୟା ସମୟରେ ସାର୍‌ଙ୍କ ବସାକୁ ଗଲି ଏବଂ ମୋ ମନର ଇଚ୍ଛା ଜଣାଇ ତାଙ୍କର ପରାମର୍ଶ ଚାହିଁଲି । ମୋତେ ପଚାରିଲେ- 'ତମ ଘର କେଉଁଠି ?' ମୁଁ କହିଲି 'ମୋ ଘର କଳାହାଣ୍ଡି ।' ପୁଣି ସେ ପଚାରିଲେ- 'କଳାହାଣ୍ଡିର କେଉଁ ଜାଗା ?' ମୁଁ କହିଲି- 'ମଦନପୁର ରାମପୁର' । ଏହା ଶୁଣି ତତ୍‌କ୍ଷଣାତ୍ ସେ ମୋତେ କହିଥିଲେ- 'ତମ ଗାଁ ରାଜା ଜଣେ ନାଟ୍ୟକାର ଥିଲେ ଏବଂ ତାଙ୍କର ଗୋଟିଏ ନିଜସ୍ୱ ରଂଗମଂଚ ଥିଲା । ଓଡ଼ିଆ ନାଟ୍ୟ ସାହିତ୍ୟ ପ୍ରତି ତାଙ୍କର ବିଶେଷ ଅବଦାନ ରହିଛି । ତାଙ୍କ ଉପରେ ତମେ ପ୍ରବନ୍ଧଟିଏ ଲେଖୁନ ?' ସାର୍‌ଙ୍କ ମୁହଁରୁ ସେଦିନ ମୋ ଗାଁ ଜନ୍ମମାଟିର ସାରସ୍ୱତ ମର୍ଯ୍ୟାଦା ଶ୍ରବଣ କରି ଖୁବ୍ ଉଲ୍ଲସିତ ହୋଇଥିଲି । ସାର୍ ମୋତେ ତାଙ୍କ ଫାଇଲ ଖୋଲି ଆମ ଗାଁ ରାଜା ଦୁର୍ଗାମାଧବ ସିଂହଦେଓଙ୍କ ଜୀବନୀ ଓ

ତାଙ୍କ ଦ୍ୱାରା ୧୯୨୩ ମସିହାରେ ସଂସ୍ଥାପିତ 'ଚନ୍ଦ୍ରମଣି ରଂଗମଂଚ' ସମ୍ବନ୍ଧରେ ସବିଶେଷ ତଥ୍ୟ ଯୋଗାଇଦେଲେ । ମୁଁ ପ୍ରବନ୍ଧ ଲେଖିଲି ଏବଂ ତାହା ସେ 'ରେଭେନ୍ସାଭିଯାନ'ରେ ପ୍ରକାଶ କଲେ । ଏ ପ୍ରସଙ୍ଗ ଏଠାରେ ଉଲ୍ଲେଖ କରିବା ଅଭିପ୍ରାୟ ହେଉଛି, ଓଡ଼ିଆ ଭାଷା ସାହିତ୍ୟର ବିକାଶ ନିମନ୍ତେ ମୋ ଗୁରୁଙ୍କ ଦୃଷ୍ଟି-ଚେତନା ଆଂଚଳିକତାର ସୀମାରେଖା ଡେଇଁ ସମଗ୍ର ଓଡ଼ିଆ ଭାଷା-ଭାଷୀ ଭୂମଣ୍ଡଳରେ ପରିବ୍ୟାପ୍ତ ଥିଲା । ସେ ଭଲ ପାଉଥିଲେ ଓଡ଼ିଆ ମାଟିକୁ, ଭାଷାକୁ ଓ ତାହାର ସଂସ୍କୃତିକୁ । ସେଥିପାଇଁ ସେ 'ପୁରୁଣା ବହି-ନୂଆପାଠକ' ଶୀର୍ଷକ ଗୋଟାଏ ପ୍ରବନ୍ଧରେ ଲେଖିଥିଲେ- 'ଆମ ରାଜ୍ୟର ସୀମାନ୍ତ ଅଂଚଳ ତଥା ବିଛିନ୍ନାଂଚଳରେ ମାତୃଭାଷାର କେତେକ ଉଲ୍ଲେଖଯୋଗ୍ୟ ସାରସ୍ୱତ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଛି ଏବଂ ବର୍ତ୍ତମାନ ମଧ ହେବାରେ ଲାଗିଛି । ଏକ ପ୍ରକାର କୋଣ ଠେସା ହୋଇ ମଧ ସେ ଅଂଚଳର ବିଭିନ୍ନ କବି ଲେଖକ ସାହିତ୍ୟ ସୃଷ୍ଟିରେ ନିଷ୍ଠାପର ମନୋନିବେଶ କରି ଆସିଛନ୍ତି । × × × ଏହି ଆଲୋଚକ ବାରମ୍ବାର ମତ ପ୍ରକାଶ କରିଛି ଯେ ଓଡ଼ିଆ ସାହିତ୍ୟ କେବଳ କଟକ, ଭୁବନେଶ୍ୱରର ସାହିତ୍ୟ ନୁହଁ, ଏହା ସମଗ୍ର ଭୌଗୋଳିକ ଓ ରାଜନୈତିକ ଓଡ଼ିଶାର ସମସ୍ତ ବିଚ୍ଛିନ୍ନାଞ୍ଚଳ ଏବଂ ପ୍ରବାସୀ ଓଡ଼ିଆ ଭୂମିର ସାହିତ୍ୟ । ଆମ ସାହିତ୍ୟକୁ ଏହି ଦୃଷ୍ଟିରୁ ବିଚାର ନକଲେ, ଜାତୀୟ ସାଂସ୍କୃତିକ ସଂହିତ କ୍ଷୁଣ୍ଣ ଓ ଖଣ୍ଡିତ ହୋଇପଡ଼ିବ ଓ ତାହାର ପରିଣତି ହେବ ଭୟାବହ ।"(୧୯୭୭-ସମାଜର ବାର୍ଷିକୀ ସଂଖ୍ୟାରେ ପ୍ରକାଶିତ) ।

ମୋ ଗୁରୁଙ୍କର ଉପରୋକ୍ତ ବକ୍ତବ୍ୟ ଆଂଚଳିକତାବାଦ ବିରୁଦ୍ଧରେ କେତେ ଶାଣିତ ଏବଂ ନିର୍ଭୀକଭାବ ପ୍ରଣୋଦିତ ତଥା ଓଡ଼ିଆ ଭାଷା ସାହିତ୍ୟର ବିକାଶ କଳ୍ପେ ତାଙ୍କର ଚିନ୍ତା-ଚେତନା ଓ ଦୃଷ୍ଟିବଳୟ କେତେ ସୁପ୍ରଶସ୍ତ, ତାହା ସହଜେ ଅନୁମେୟ । ଜଣେ ସୁସାହିତ୍ୟିକର ଭାବଦୃଷ୍ଟି ହିଁ ସେୟା । ସେ କେବେ ସଂକୀର୍ଣ୍ଣତାକୁ ପ୍ରଶ୍ରୟ ଦିଏ ନାହିଁ । ଆଂଚଳିକତାବାଦର ଊର୍ଦ୍ଧ୍ୱରେ ରହି ଓଡ଼ିଆ ଭାଷାରେ ସୃଷ୍ଟ ସମସ୍ତ ସାରସ୍ୱତ କୃତିସମୂହ ଆଲୋଚିତ ଓ ସଂରକ୍ଷିତ ହେଲେ ଯାଇ ଓଡ଼ିଆ ସାହିତ୍ୟର ମର୍ଯ୍ୟାଦା ଓ ମୂଲ୍ୟବୋଧ ସଂସ୍ଥାପିତ ହୋଇପାରିବ ଏହା ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ ବୋଲି ଉପରୋକ୍ତ ମନ୍ତବ୍ୟ ପ୍ରକାଶ କରିଛନ୍ତି । ନୋହିଲେ କି କଳାହାଣ୍ଡିର ଜଣେ ସ୍ୱଳ୍ପ ପରିଚିତ ରାଜା (ଦୁର୍ଗାମାଧବ ସିଂହଦେଓ)ଙ୍କର ନାଟ୍ୟକୃତିର ଆଲୋଚନା ପୂର୍ବ ଓଡ଼ିଶାର ଗୋଟାଏ ବିରାଟ ଶିକ୍ଷାନୁଷ୍ଠାନର ମୁଖପତ୍ର(ରେଭେନ୍ସାଭିଆନ୍)ରେ ସ୍ଥାନିତ କରିବାକୁ ମୋତେ ସେ ତଥ୍ୟ ପ୍ରଦାନ କରି ପ୍ରବନ୍ଧ ଲେଖିବାକୁ ପ୍ରବର୍ତ୍ତାଇ ଥାନ୍ତେ ?

ସ୍ନାତକୋତ୍ତର ଓଡ଼ିଆ ପାଠପଢ଼ା ସମାପ୍ତି ପରେ ମୁଁ ସାର୍‌ଙ୍କ ପାଖକୁ ଯାଇ ଗବେଷଣା ନିମନ୍ତେ ପରାମର୍ଶ କଲି । ସେତେବେଳେ ସେ କହିଥିବା ଗୋଟିଏ ମହତ୍ତ୍ୱପୂର୍ଣ୍ଣ କଥା

ଏବେବି ମୋ ମାନସରୁ ବିସ୍ମୃତ ହୋଇନାହିଁ । ସେ କହିଥିଲେ- "ତମେ ଓଡ଼ିଆ ଭାଷା-ସାହିତ୍ୟର ଗବେଷଣା କରିବାକୁ କାହିଁକି ଚାହୁଁଛ ? କ'ଣ ପି.ଏଚ୍.ଡି. ଡିଗ୍ରୀ ଆଶାରେ ନା' କିଛି ଭଲ କାମ କରିବା ଉଦ୍ଦେଶ୍ୟରେ ? ଯଦି ଡିଗ୍ରୀ ଆଶା ରଖି ଗବେଷଣା କରିବାକୁ ଚାହୁଁଛ, ତେବେ ମୁଁ ତମର ଗାଇଡ୍ ହେବି ନାହିଁ । ଯାଅ ଅନ୍ୟତ୍ର ଚେଷ୍ଟା କର । ଟଙ୍କା କିଛି ଖର୍ଚ୍ଚ କଲେ ତମେ ଆରାମରେ ତମ ଉଦ୍ଦେଶ୍ୟ ପୂରଣ କରିପାରିବ । ନାଇଁ ଯଦି ପ୍ରକୃତରେ ଓଡ଼ିଆ ସାହିତ୍ୟ ପାଇଁ କିଛି ଭଲ କାମ କରିବାର ଆକାଂକ୍ଷା ରଖିଛ ତେବେ ମୋ ପାଖକୁ ଆସ ।" ଏତକ ଶୁଣି ମୋ ଗୁରୁଙ୍କର ମହାନ୍ ସାରସ୍ୱତ ବ୍ୟକ୍ତିତ୍ୱ ଏବଂ ଓଡ଼ିଆ ଭାଷା-ସାହିତ୍ୟ ପ୍ରତି ଥିବା ତାଙ୍କର ଏକାନ୍ତ ଚିତ୍ତାନୁରାଗ ମୁଁ ହୃଦୟଙ୍ଗମ କରିପାରିଥିଲି । ଅଧିକନ୍ତୁ ମାଳମାଳ ପି.ଏଚ୍.ଡ଼ି. ଡିଗ୍ରୀଧାରୀଙ୍କର ଅନ୍ତର୍ନିହିତ ମୂଲ୍ୟବୋଧ ସଂପର୍କରେ ମଧ ଚେତନା ପାଇଲି । ତାଙ୍କ ପାଖରେ ଯିଏ ବି ଗବେଷଣା କାର୍ଯ୍ୟ କରିଛି ସେମାନଙ୍କୁ ଓଡ଼ିଆ ଭାଷା ସାହିତ୍ୟର ଭୂୟୋବିକାଶ କକ୍ଷେ ଯଥାଯଥ ଦିଗଦର୍ଶନ ହିଁ ଦେଇ ଆସିଛନ୍ତି ଏବଂ ଠିକ୍ କାମ ଆଦାୟ କରିଛନ୍ତି ।

ମୁଁ ତାଙ୍କଠାରୁ କେବଳ ସାହିତ୍ୟ ବିଷୟଗତ ଜ୍ଞାନ ଆହରଣ କରିନାହିଁ ଆତ୍ମ ସମ୍ମାନୋଚିତ ଜୀବନ ଧାରା ସଂବାହନର ଗୁରୁଜ୍ଞାନ ମଧ ଲାଭ କରିଛି । ଜୀବନର ମାନଦଣ୍ଡକୁ କେଉଁ ରୂପେ ସଜାଡ଼ିବା ଉଚିତ ତାହା ମୋତେ ସେ ଶିକ୍ଷା ଦେଇଛନ୍ତି । ନିଜ ଛାତ୍ରମାନଙ୍କ ବ୍ୟକ୍ତିଗତ ଜୀବନର ସୁଖଦୁଃଖ ସହ ସମଭାଗୀ ହୋଇ ସାହିତ୍ୟ ସାଧନା ପଥରେ ହାତ ଧରି ବାଟ କଢ଼େଇ ନେବାରେ ସେ ଥିଲେ ଯଥାର୍ଥ ମାର୍ଗଦର୍ଶକ । ଗବେଷଣାତ୍ମକ ପ୍ରବନ୍ଧ କେଉଁ ଧାରାରେ ଓ କେଉଁ ବୈଶିଷ୍ଟ୍ୟତାର ଆଧାରରେ ଲେଖିବା ଉଚିତ ତାହା ମୁଁ ତାଙ୍କଠାରୁ ଶିଖିଛି । ସେ କୌଣସି କ୍ଷେତ୍ରରେ ପ୍ରଚାର ସର୍ବସ୍ୱ ସାହିତ୍ୟ ସୃଷ୍ଟିର ସପକ୍ଷରେ ନ ଥିଲେ । କଳ୍ପନାତ୍ମକ ଅତିରଞ୍ଜନ ବ୍ୟାଖ୍ୟା ମଧ ତାଙ୍କ ସାହିତ୍ୟରେ ନାହିଁ । ଯାହା ଯୁକ୍ତି ଗ୍ରାହ୍ୟ, ବିଶ୍ୱାସ ଯୋଗ୍ୟ ତଥା ମୌଳିକ ଭାବସତ୍ତା ଆଧାରିତ ସେଭଳି ତତ୍ତ୍ୱ ଓ ତଥ୍ୟ ଗବେଷଣାତ୍ମକ ପ୍ରବନ୍ଧରେ ଉଲ୍ଲିଖିତ ହେବା ସମ୍ବନ୍ଧରେ ସେ ଅନେକ ଥର ମୋ ପ୍ରବନ୍ଧଗୁଡ଼ିକ ସଂଶୋଧନ କଲାବେଳେ ମୋତେ ବୁଝାଇଛନ୍ତି ଏବଂ ମୋର ବହୁ ପ୍ରବନ୍ଧ 'ଏଷଣା' ପତ୍ରିକାରେ ପ୍ରକାଶ କରିଛନ୍ତି ।

ଯଥାର୍ଥରେ ସେ ସାହିତ୍ୟ ଓ ସଂସ୍କୃତିର ଥିଲେ ଏକନିଷ୍ଠ ପୂଜାରୀ । ସ୍ନେହ, ଶ୍ରଦ୍ଧା ଓ ମାନବିକତାର ଦିବ୍ୟ ଚିନ୍ତନରେ ତାଙ୍କର ଅନ୍ତର ଆତ୍ମା ଥିଲା ପରିପୁଷ୍ଟ । ସାରସ୍ୱତ ସାଧନା ଏକ ଆଧ୍ୟାତ୍ମିକ କର୍ମ । ଏହି କର୍ମର ସୁସାଧକ ସର୍ବଦା ନିରହଙ୍କାରୀ ଏବଂ ଆତ୍ମାଭିମାନୀ ହୋଇଥାଏ । ତଦ୍ୱାରା ସେ ବିଭୁପ୍ରଦତ୍ତ ପରମତୃପ୍ତି ଲାଭରେ ସମର୍ଥ ହୁଏ । ଅନ୍ତରରେ ଅନାବିଳ ଭାବ ନରହିଲେ, ପରିଶୁଦ୍ଧ ଓ ନୀତିନିଷ୍ଠ ଜୀବନଶୈଳୀ ସଂବାହନ

ନକଲେ କୌଣସି ସାରସ୍ୱତ ସାଧକ ଦିବ୍ୟାନନ୍ଦ ଲାଭରେ ସମର୍ଥ ହୋଇପାରିବ ନାହିଁ, ଏହା ନିରାଟ ସତ୍ୟ । ଜଣେ ସୁସାହିତ୍ୟିକାର ଅନ୍ତଃକରଣ ସ୍ନେହ-ଶ୍ରଦ୍ଧା-ପ୍ରେମ ଓ ମାନବିକତାର ସ୍ପନ୍ଦନରେ ଉଜ୍ଜୀବିତ ଥାଏ । ଯାହାକି ମୋ ଗୁରୁଙ୍କର ଥିଲା । ସେ କେବେବି ସଂକୀର୍ଣ୍ଣ ସ୍ୱାର୍ଥାନ୍ୱେଷୀ ମଣିଷ ନ ଥିଲେ । ନିଜର ପ୍ରସିଦ୍ଧି ଓ ପ୍ରତିଷ୍ଠା ପାଇଁ ସେ କାହାକୁ ତୋଷାମଦ କରି କଥା କହୁନଥିଲେ । ଜୀବନ ଜିଇଁବାର ପ୍ରକୃଷ୍ଟ ମାଧ୍ୟମ ରୂପେ ସାହିତ୍ୟ ସାଧନାକୁ ସେ ଆଦରି ନେଇଥିଲେ । ନଥିଲା ସେଥିରେ ପୁରସ୍କାର ପ୍ରାପ୍ତିଜନିତ ସଂକୀର୍ଣ୍ଣ ଅଭିଳାଷ କିମ୍ବା ନଥିଲା ସାହିତ୍ୟ ଜଗତରେ ଯଶ-ଖ୍ୟାତି ପ୍ରାପ୍ତି ନିମିତ୍ତ ଆତ୍ମପ୍ରଚେଷ୍ଟା । ସେ ଥିଲେ କର୍ମଯୋଗୀ ଓ ଜ୍ଞାନଯୋଗୀ । ଯାବତ୍ ଜୀବନ ଓଡ଼ିଆ ସାହିତ୍ୟର ସେବାରେ ହିଁ ସେ ଅତିବାହିତ କରିଛନ୍ତି । ବୈଷୟିକ ଉନ୍ନତି କଣ୍ଟେ ତାଙ୍କ ଚେତନା କେବେବି ମୋହଗ୍ରସ୍ତ ଥିବା ମୁଁ ଅନୁଭବ କରିନାହିଁ । ଆଡ଼ମ୍ବରପୂର୍ଣ୍ଣ ଜୀବନଶୈଳୀ ମଧ୍ୟ ତାଙ୍କର ନଥିଲା । ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରି ସମଗ୍ର ଜୀବକୁନ ସାହିତ୍ୟ ସାଧନାରେ ହିଁ ଉତ୍ସର୍ଗ କରିଥିଲେ । ସେହି ମହାନ୍ ସାରସ୍ୱତ ସାଧକଙ୍କ ଆତ୍ମାର ସଦ୍‌ଗତି ହେଉ ଏତିକି ବିଭୁପଦାରବିନ୍ଦରେ ମୋର କାମନା-ପ୍ରାର୍ଥନା । ❖

ମଦନପୁର ରାମପୁର ମହାବିଦ୍ୟାଳୟ, କଳାହାଣ୍ଡି
ମୋ- ୯୪୩୮୦୬୮୭୭୮

# କୃଷ୍ଣସାର୍

ଅନ୍ନପୂର୍ଣ୍ଣା ପଣ୍ଡା

ସମୟ ସକାଳ ପ୍ରାୟ ୭ଟା ହେବ । ମୁଁ ଝିଅ ପାଖରେ ରହୁଥାଏ । ଝଡ଼ ପରି ସିଏ ଘର ଭିତରକୁ ପଶି ଆସି କହିଲେ, ସାର ଚାଲିଗଲେ (କୃଷ୍ଣସାର୍) ବର୍ତ୍ତମାନ ଫୋନ୍ ଆସିଛି ମୁଁ କଟକ ଯାଉଛି । ମୁଁ ତାଙ୍କୁ ଚାହିଁ କିଛି କ୍ଷଣ ପାଇଁ ନିରବ ରହିଗଲି । ସତେ ଯେପରି ମୋ ପାଦତଳୁ ମାଟି ଖସିଯାଉଥିଲା । ମୁହଁଟି ତାଙ୍କର ଶୁଖି କଳାକାଠ ପଡ଼ିଯାଇଥାଏ । ସେ ପାଟିରେ କିଛି ନକହିଲେ ବି ତାଙ୍କ ମନ ଭିତରେ ଦାରୁଣ ଧକ୍କା ଲାଗିଥିଲା । ଯେଉଁଟାକୁ ସେ ପ୍ରକାଶ କରିବା ଅବସ୍ଥାରେ ନଥିଲେ । ମୁଁ କେବଳ ଗୋଟିଏ କଥା ଅଭିମାନରେ କହିଲି ମୋତେ ଟିକେ ସାର୍‌ଙ୍କ ପାଖକୁ ନେଇଯାଅ, ଶେଷଥର ପାଇଁ ସାର୍‌ଙ୍କ ଚରଣ ସ୍ପର୍ଶ କରିବି । ସେ କିଛ ନକହି ଝିଅ ପାଖରୁ କିଛି ଟଙ୍କା ନେଇ କଟକ ବାହାରିଗଲେ ।

ସତରେ ସେ ଦିନଟି ଆମ ପାଇଁ ଶୁଭ ସକାଳ ନଥିଲା । ରାତି ପାହୁ ପାହୁ ଏଭଳି ଅଶୁଭ ଖବର । ସେ ଯିବା ପରେ ପରେ ମୁଁ କିଛି ସମୟ ଚୁପ୍ ହୋଇ ଭାବୁଥିଲି ପିତୃପ୍ରତିମ କୃଷ୍ଣସାର୍‌ଙ୍କୁ ଦର୍ଶନ କରିବା ମୋ ଭାଗ୍ୟରେ ଆଉ ନାହିଁ । ଏକ ଶୋକାକୂଳ ପରିବେଶରେ ସେ ସାର୍‌ଙ୍କ ଅନ୍ତିମ ଦର୍ଶନ କରି ଓ ଶବ ସତ୍କାର ସାରି ଭଦ୍ରକ ଫେରିଲେ । ଅନ୍ତିମ ମୁହୂର୍ତ୍ତରେ ମଧ ସାର୍‌ଙ୍କ ମୁଖ ମଣ୍ଡଳରେ ସ୍ମିତସୁଲଭ ହସ ଲାଗି ରହିଥିଲା । ମୁଁ କହିଲି ଆଉ ସାର୍‌ଙ୍କ ଘର ଖବର କ'ଣ ? ସେ କହିଲେ କଟକ ଆଜି କାନ୍ଦୁଛି । ସାରସ୍ୱତ ଆକାଶର ଅମ୍ଳାନ ଜ୍ୟୋତିଷ୍କ ନିଷ୍ପ୍ରଭ ହୋଇଯାଇଛି । ମୋତେ ପୁଣି ମଝିରେ ମଝିରେ କଟକ ଯିବାକୁ ପଡ଼ିବ । ତୁମକୁ ମଧ ବାରମ୍ବାର କହିଛନ୍ତି ୧୧ଦିନରେ ଯିବାପାଇଁ । ଭଦ୍ରକରୁ ଗାଡ଼ି ଯିବ । ସାର୍‌ଙ୍କୁ ଭଲ ପାଉଥିବା ଲୋକ ଅନେକ ଅଛନ୍ତି । ସେମାନଙ୍କ ମଧ୍ୟରୁ ନିମନ୍ତ୍ରିତ କିଛି ତାଙ୍କର ପ୍ରିୟ ଲୋକ ଯିବେ । ଆମେ ତାଙ୍କ ସହିତ ଯିବା । ସେମାନଙ୍କୁ ନେବା ଓ ଭଦ୍ରକରେ କାର୍ଡ଼ ବାଣ୍ଟିବା ଦାୟିତ୍ୱ ମୋର । ଏକଥା ଶୁଣି ଭାବିଲି ଯାହାହେଉ ସାର୍‌ଙ୍କ କାର୍ଯ୍ୟରେ ତ ଯୋଗ ଦେଇପାରିବି । ୧୯୯୦ ମସିହାରେ

ମୁଁ କୃଷ୍ଣସାର୍‌ଙ୍କୁ ପ୍ରଥମେ ଦେଖିବାର ସୁଯୋଗ ପାଇଥିଲି । ଏହା ଆଗରୁ ମୁଁ ସାର୍ ବିଷୟରେ ଶୁଣି ଶୁଣି ମୋର ସାରଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଆସି ଯାଉଥିଲା । ସାର୍ ତାଙ୍କ ପାଇଁ ଈଶ୍ୱରଙ୍କ ଠାରୁ ମଧ୍ୟ ଉର୍ଦ୍ଧ୍ୱରେ ଥିଲେ । ୧୯୯୦ ମସିହା ଘଟଣା, ନୂଆ ନୂଆ ଆମେ ଭଦ୍ରକରେ ପାଦ ଥାପି ଥାଉଁ । ମୋତେ ଆସି କହିଲେ କାଲି ରବିବାର କୃଷ୍ଣସାର ଆମ ଘରକୁ ଆସିବେ । ସାର୍ ଦେଶି କୁକୁଡ଼ା ଭଲ ପାଆନ୍ତି । ରୋଷେଇ କରିବ ସାର୍ ଆମ ଘରେ ଖାଇବେ ଓ ତୁମେ ତାଙ୍କୁ ଦେଖିବାର ସୁଯୋଗ ପାଇବ । ସତରେ ମୁଁ ସେଦିନ ଏକଥା ଶୁଣି ଭାରି ଖୁସି ହୋଇ ଯାଇଥିଲି । ସମୟ ସନ୍ଧ୍ୟା ୭, ୮ଟା ଭିତରେ ସେ ଘର ଭିତରକୁ ପଶି ଆସିଲେ ତାଙ୍କ ସହିତ ଆମ ପ୍ରିୟ କୃଷ୍ଣସାର୍ ।

ମୁଁ ଅତି ସନ୍ତର୍ପଣରେ ସାର୍‌ଙ୍କୁ ଭୂମିଷ୍ଠ ପ୍ରଣାମ କଲି ଓ ପାଦ ଧୋଇବାକୁ ପ୍ରସ୍ତୁତ ହୁଅନ୍ତେ, ସାର୍ ମୋତେ ବାରଣ କଲେ ପାଦରେ ମୋଜା ଅଛି ସେ ସବୁର ଆବଶ୍ୟକତା ନାହିଁ । ତୁମେ ଆସ ମୋ ପାଖରେ ବସ ଓ ଛୁଆମାନଙ୍କୁ ଡାକ, ତାଙ୍କ ସହିତ ପରିଚିତ ହେବି । ଛୁଆମାନେ ଆସି ସାର୍‌ଙ୍କୁ ପ୍ରଣାମ କଲେ, ସାର୍ ମୋ ନାମ ଓ ଛୁଆମାନଙ୍କର ନାମ, ପଢ଼ାପଢ଼ି ସଂକ୍ଷେପରେ ବୁଝିନେଲେ । ସାର୍ ମୋତେ ଗୋଟିଏ କଥା କହିଲେ ଅନ୍ନପୂର୍ଣ୍ଣା, କୈଳାଶ ଗୋଟିଏ ପାଗଳ ପିଲା, କିପରି ସେ ହାଇସ୍କୁଲରେ ହେଡମାଷ୍ଟର ହେବା ସଙ୍ଗେ ସଙ୍ଗେ ନିଜର ପରିବାରକୁ ଚଳାଉଛି । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗୁଛି । ଅନ୍ନପୂର୍ଣ୍ଣା ସବୁ ଠିକ୍ ଠାକ୍ ଚାଲିଛି ତ ? ତା'ର ଜୀବନଚର୍ଯ୍ୟା ଭାରି ବ୍ୟତିବ୍ୟସ୍ତ । ତା'ର ଲଗାମ୍ ଠିକ୍‌ସେ ଧରିଥିବ । ସେଦିନ ମୁଁ ତାଙ୍କୁ ଭକ୍ତି ମିଶା ଡରରେ କିଛି କହି ପାରିନଥିଲି କିନ୍ତୁ ମନେ ମନେ କହିଥିଲି ସାର୍ ମୁଁ କ'ଣ ତାଙ୍କ ଲଗାମ ଧରିବି, ଆମ ବିବାହ ଦିନଠୁଁ ମୋ ଲଗାମ ତାଙ୍କ ହାତରେ । ସେ ସମୟରେ ସାର୍ ଅବସର ନେଇ ଭଦ୍ରକ ମହିଳା ମହାବିଦ୍ୟାଳୟରେ ଅଧ୍ୟକ୍ଷ ଥାଆନ୍ତି । ତାଙ୍କ ରହଣି ମଧ୍ୟରେ ସାର୍ ଆମ ଘରକୁ ତିନି-ଚାରି ଥର ଆସିଛନ୍ତି । ସାର୍‌ଙ୍କ ଚୁଟି ସବୁ ଧଳା ହୋଇଯାଇଥିଲା । ଦେହର ରଙ୍ଗ ଠିକ୍ କୃଷ୍ଣରଙ୍ଗ ଭଳି ହେଲେ ମୁହଁରେ ସର୍ବଦା ଯୁବସୁଲଭ ହସ ଯାହା ତାଙ୍କ ମୃତ୍ୟୁ ପରେ ମଧ୍ୟ ତାଙ୍କ ମୁଖ ମଣ୍ଡଳରେ ଲାଗି ରହିଥିଲା । ତାଙ୍କର ସ୍ନେହବୋଳା କଥା, ସୁଠାମ ସୁନ୍ଦର ଚେହେରା ଯେ କେହି ତାଙ୍କ ପ୍ରତି ଆକର୍ଷିତ ହୋଇଯିବ । ମୁଁ ସାର୍‌ଙ୍କୁ କେତେଗୁଡ଼ିଏ ମିଟିଙ୍ଗ ଓ ତାଙ୍କ ଘରେ ମଧ୍ୟ ଦେଖିବାର ସୁଯୋଗ ପାଇଥିଲି । ସାର୍‌ଙ୍କୁ ମୁଁ ଯେତେବେଳେ ଦେଖେ ତାଙ୍କ ସ୍ୱଭାବ ସୁଲଭ ଶୈଳୀରେ ମୋତେ ପଚାରନ୍ତି ଅନ୍ନପୂର୍ଣ୍ଣା କୈଳାଶର ଲଗାମ ଠିକ୍ ଭାବରେ ଧରିଛ ତ ? ସେ ଗୋଟାଏ ପାଗଳ ଆଉ ଚଗଲା ମଧ୍ୟ । ତା' ଛଡ଼ା ଅନେକଥର ଏହିକଥା ମୋତେ ଦୂରଭାଷରେ କହିଥାଆନ୍ତି । ଆଜି ତାଙ୍କ ଅବର୍ତ୍ତମାନରେ ମୁଁ ଭାବେ ତାଙ୍କ ଭଳି ମିଠା କଥା କିଏ କହିବ । କହିବା ବାହୁଲ୍ୟ ଏହା

କେବଳ ମୋ ପାଇଁ ନଥିଲା ସଭିଙ୍କ ପାଇଁ । ଏତେ ଜ୍ଞାନର ଅଧିକାରୀ ହୋଇଥିଲେ ମଧ୍ୟ ତାଙ୍କୁ ଗର୍ବ, ଅହଙ୍କାର ସ୍ପର୍ଶ କରି ନଥିଲା । ଏହା ହେଉଛି ତାଙ୍କ ଚିରତ୍ରର ବିଶେଷ ଗୁଣ । କଟକ କଲ୍ୟାଣୀନଗର ଉତ୍କଳ ଆର୍ପାଟମେଣ୍ଟରେ ସେ ରହୁଥିଲେ । ଆମେ କେତେଥର ତାଙ୍କ ଘରକୁ ଯାଇଛୁ । କୌଣସି ଅତିଥି ତାଙ୍କ ଘରୁ କେବେ ନଖାଇ ଫେରିନି । ତାଙ୍କ ପାଖରେ ତାଙ୍କ ବଡ଼ ପୁଅ, ବୋହୂ ଓ ନାତୁଣୀ ମଧ୍ୟ ରହୁଥିଲେ । ସେମାନେ ମଧ୍ୟ ସାର୍‌ଙ୍କ ଭଳି ଆମକୁ ଖୁବ୍ ଆପଣାର ଲାଗନ୍ତି । ତାଙ୍କର ଏକାଦଶ ଦିନ ଆମେ ତାଙ୍କ ଘରକୁ ଯାଇଥିଲୁ । ତାଙ୍କ ପାଇଁ ଶୋକ ସଭା ଚାଲିଥାଏ । ବହୁତ ମାନ୍ୟଗଣ୍ୟ ବ୍ୟକ୍ତିଙ୍କର ସମାବେଶ । ମୁଁ ଦୂରରୁ ଥାଇ ତାଙ୍କ ତୈଳଚିତ୍ରକୁ ଭକ୍ତିପୂତ ପ୍ରଣାମ କଲି । ମୋତେ ଯେପରି ଜଣା ପଡୁଥିଲା, ସାର୍ ତାଙ୍କ ନିତ୍ୟ ଯୁବ ସୁଲଭ ହସରେ ମୋତେ ଚେତାଇ ଦେଉଥିଲେ ଲଗାମ୍ ଠିକ୍ ସେ ଧରିଛ ତ ? କିଛି ସମୟ ପାଇଁ ସ୍ତବ୍ଧ ହୋଇ ଯାଇଥିଲି । ମୋର ଆଖିରେ ଲୁହ ଆସିଯାଇଥିଲା । ସତରେ ସ୍ନେହବୋଳା ଅନ୍ନପୂର୍ଣ୍ଣା ଡାକ ମୋ ପାଇଁ ସ୍ୱପ୍ନ । ସତରେ ସାର୍, ମୁଁ ତାଙ୍କ ଲଗାମ ଧରିପାରିବିନି, ସେ ଲଗାମ ଆପଣ ହିଁ ଧରିଥିଲେ, ଆଜି ଲଗାମ ଛଡ଼ା ହୋଇଗଲେ । ଆମେ ସେହିଦିନ ଭୋଜନ ପରେ ତାଙ୍କ ପରିବାରକୁ ଭେଟିବାକୁ ଘରକୁ ପ୍ରବେଶ କରନ୍ତେ, ପ୍ରଥମ କୋଠରିଟି ତାଙ୍କ ତୈଳ ଚିତ୍ର ଓ ମାନପତ୍ରରେ ପରିପୂର୍ଣ୍ଣ ଥିଲା ପାଖରେ ଗୋଟାଏ ଚଉକିରେ ଖାତା ଓ ଡଟ୍‌ଟିଏ ରହିଥିଲା । ଯେଉଁମାନେ ଯାଉଥିଲେ କ'ଣ ଟିକିଏ ଲେଖି ଦେଉ ଥାଆନ୍ତି । ମୁଁ କିଛି ବୁଝି ପାରୁ ନଥାଏ, ଆଉ ଠିକ୍ ବୁଝିବା ବେଳକୁ ମୋତେ ଡାକ ପଡ଼ିଲା ଆସ ସମସ୍ତେ ଗାଡ଼ିରେ ବସିଲେଣି ।

ମୋର ଭାରି ଇଚ୍ଛାଥିଲା ମୁଁ ବି କିଛି ଲେଖିଥାଆନ୍ତି । ସତରେ ସାର୍ ମୁଁ ଆପଣଙ୍କ ବିଷୟରେ କ'ଣ ବା ଲେଖି ପାରିବି । ସେଭଳି ଶିକ୍ଷା, ଦିକ୍ଷା ମୋର ନାହିଁ । ତଥାପି ଆପଣଙ୍କ ସ୍ନେହ ଶ୍ରଦ୍ଧାକୁ ପାଥେୟ କରି ଲେଖିବାକୁ ଦୁଃସାହସ କରିଥାଆନ୍ତି । ଥରେ ମୁରଲୀବାବୁଙ୍କ ଶ୍ରାଦ୍ଧ ବାର୍ଷିକୀ ଭଦ୍ରକ ସନ୍‌ସାଇନ୍ ପଡ଼ିଆରେ ହେଉଥାଏ । ଆପଣ ସେଠାକୁ ମୁଖ୍ୟ ଅତିଥି ହୋଇ ଆସିଥିଲେ ଓ ସମ୍ବର୍ଦ୍ଧିତ ହେଲେ । ଶୀତ ସମୟ ଓ ଆପଣ ଅସୁସ୍ଥତା ସତ୍ତ୍ୱେ ସୁଦୂର କଟକରୁ ଶ୍ରଦ୍ଧାର ସହିତ ଆସିଥିଲେ । ସଭାରେ ଆପଣ ଅଳ୍ପ ଦୁଇ ପଦ କଥା କହି ବସି ପଡ଼ିଥିଲେ । ସେ କଥାର ସାରାଂଶ ହେଲା ମୋତେ କାହିଁକି ସମ୍ବର୍ଦ୍ଧିତ କରୁଛ, ମୋର ତ ସମୟ ସରି ଆଁସିଲାଣି । ଆଗାମୀ ପିଢ଼ିମାନଙ୍କୁ ସମ୍ବର୍ଦ୍ଧିତ କର, ଯାହାଫଳରେ ସେମାନେ ଉତ୍ସାହିତ ହୋଇ ସମାଜକୁ ନୂତନ ଆଲୋକର ସନ୍ଧାନ ଦେବେ । ଏହା ସତରେ କେତେ ତାତ୍ପର୍ଯ୍ୟପୂର୍ଣ୍ଣ କଥା । ଏହିଭଳି କେତେ ମୂଲ୍ୟବାନ କଥା ଆପଣଙ୍କ ସଂସ୍ପର୍ଶରେ ଆସି ଏ କାନକୁ ପବିତ୍ର କରିଛି । ଆପଣ ଭଦ୍ରକର ଶିକ୍ଷା ଓ

ସଂସ୍କୃତି ସହିତ ଓତଃପ୍ରୋତ ଭାବେ ଜଡ଼ିତ ଥିଲେ । ତେଣୁ ଭଦ୍ରକ ପ୍ରାୟ ଆସୁଥିଲେ । ମୁଁ ଯେତିକି ଜାଣିଛି ଜୀବନରେ ବାରମ୍ୱାର ଦାରୁଣ ଧକ୍କା ପାଇ ଆପଣ ଅସୁସ୍ଥ ହୋଇ ପଡ଼ିଲେ । ତା'ର କାରଣ ଆପଣଙ୍କ ଅତିପ୍ରିୟ, ଆପଣଙ୍କ ସ୍ତ୍ରୀ, ସାନପୁଅ, ସାନଭାଇ ଓ ଭଦ୍ରକର ହୃଦାନନ୍ଦ ବେହେରା । ଏଇମାନଙ୍କର ଅକାଳ ବିୟୋଗ ଆପଣଙ୍କ ପାଇଁ ଶକ୍ତ ଧକ୍କା ଥିଲା ।

ତଥାପି ଶେଷ ପର୍ଯ୍ୟନ୍ତ ଆପଣଙ୍କ ଲେଖନୀ ଚାଳନା ବନ୍ଦ ନଥିଲା । ଆପଣଙ୍କ ଚରିତ୍ରର ଆହୁରି ଏକ ମହନୀୟତା ହେଉଛି ଆପଣ କାହାକୁ ସମାଲୋଚନା କରୁନଥିଲେ କିମ୍ୱା କାହାରି ସମାଲୋଚନା ଶୁଣିବାକୁ ଭଲ ପାଉ ନଥିଲେ । ଯିଏ ଯେଉଁ ପରିସ୍ଥିତିରେ ଆସୁନା କାହିଁକି, ଆପଣ ତାଙ୍କୁ ସହଯୋଗ କରୁଥିଲେ । ଚାହୁଁ ଚାହୁଁ ତାଙ୍କ ଅବର୍ତ୍ତମାନ ପ୍ରାୟ ୧ବର୍ଷ ହୋଇଗଲା । ଏହା ନିଶ୍ଚିତ ସାର୍ କେଉଁ ନା କେଉଁ ରୂପରେ ତାଙ୍କ ପ୍ରିୟ ଭଦ୍ରକକୁ ନିଶ୍ଚୟ ଫେରି ଆସିଥିବେ । ❖

ପ୍ରକାଶିକା - 'ପ୍ରେମ ପୃଥିବୀ'
ମାର୍ଫତ- କୈଳାଶ ଚନ୍ଦ୍ର ପଣ୍ଡା, ସନ୍ଥିଆ, ଭଦ୍ରକ

# ସ୍ଥିତପ୍ରଜ୍ଞ ତପସ୍ୱୀ

ବନପ୍ରଭା ପରିଡ଼ା

ସୁନାମଧନ୍ୟ ସାରସ୍ୱତ ସାଧକ ଡକ୍ଟର କୃଷ୍ଣଚରଣ ବେହେରାଙ୍କର ମୁଁ କେବଳ ଛାତ୍ରୀ ନୁହେଁ, ପୁତ୍ରୀ ଠାରୁ ବି ଅଧିକ ଆପଣାର ଥିଲି । ରେଭେନ୍‌ସାରେ ପଢ଼ିଲାବେଳେ ମୋର ସାହିତ୍ୟ ପ୍ରତି ଦୁର୍ବାର ଆକର୍ଷଣ ଓ ସୁଲଳିତ କଣ୍ଠସ୍ୱରକୁ ଆଧାର କରି ସେ ପ୍ରଥମେ ମୋତେ ଆକଶବାଣୀରେ କଣ୍ଠ ପରୀକ୍ଷା ଦେବା ପାଇଁ ପ୍ରୋତ୍ସାହିତ କରିଥିଲେ । ତାଙ୍କର ଆଶୀର୍ବାଦ ଓ ପ୍ରେରଣାକୁ ପାଥେୟ କରି ମୁଁ ଆକାଶବାଣୀର ଯୁବବାଣୀ ବିଭାଗରେ ସାମୟିକ ଉପସ୍ଥାପିକା ଭାବରେ ୧୯୯୧ ମସିହାରେ ସଫଳ ସ୍ୱୀକୃତି ପାଇଲି । ସର୍ଜନା କ୍ଷେତ୍ରରେ ମୋ ପ୍ରତି ଥିବା ତାଙ୍କର ଗଭୀର ଆତ୍ମବିଶ୍ୱାସକୁ ପ୍ରମାଣିତ କରି ୧୯୯୩ ମସିହାରେ ଆକାଶବାଣୀ କଟକ ଯୁବବାଣୀ ବିଭାଗ ତରଫରୁ ସର୍ବଭାରତୀୟ ଯୁବ ପୁରସ୍କାର ପ୍ରାପ୍ତ ହେଲି । ଯାହକି କଟକ ଆକାଶବାଣୀ ଯୁବବାଣୀ ବିଭାଗ ପ୍ରଥମଥର ପାଇଁ ଏହି ଜାତୀୟ ସମ୍ମାନ ଲାଭ କରିବାର ଗୌରବ ଅର୍ଜନ କରିଥିଲା । ତାଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ କାବ୍ୟ ସାହିତ୍ୟରେ ଛନ୍ଦ' ସଂପର୍କରେ ଗବେଷଣା କରିବା ସମୟରେ ନାନାଦି ତଥ୍ୟ ବିଶ୍ଳେଷଣ ସତ୍ତ୍ୱେ ମୁଁ ଅସନ୍ତୁଷ୍ଟ ଥିବା ସମୟରେ ସେ ସାନ୍ତ୍ୱନା ଦେଇ କହନ୍ତି 'ଏକାବେଳକେ କୋଣାର୍କଟାଏ ଗଢ଼ି ନପାରିଲେ ଚିତ୍ରିତ ଶିଳା ଖଣ୍ଡେ ତ ଗଢ଼ ।' ବାସ୍ତବରେ ସେ ଶିଳ୍ପ ସୌନ୍ଦର୍ଯ୍ୟ ଦେଖାଇ ବିମୋହିତ କରିବା ବ୍ୟକ୍ତି କେବଳ ନୁହନ୍ତି ବରଂ ଗଢ଼ିପାରିବାର ଶକ୍ତି ସଂଚରଣ କରାଇ ସମର୍ଥ ମଣିଷଟିଏ ଗଢ଼ି ଦେବାର ବିନ୍ଧାଣୀ । ମୋର ଶିକ୍ଷା, ଗବେଷଣା, ଲେଖାଲେଖି ସବୁକିଛିର ପଛରେ ବୋଧହୁଏ ସେହି ପ୍ରଜ୍ଞାପୁରୁଷଙ୍କର ପ୍ରଚ୍ଛଦ ହାତର ଆଶିଷ ଥିଲା । ସେହି ଛାୟାସ୍ନିଗ୍ଧ ମହୀରୁହ ତଳେ ନିରୀହ ବନପକ୍ଷୀଟିଏ ପରି କୁହୁଗାନରେ ମୁଁ ବିଭୋର ଥିଲି । ଆଜି ଯେତେବେଳେ ସେ ଗଛର ଛାଇ ନାହିଁ ମୁଁ ନିଜକୁ ନିଃସ୍ୱ ମନେ କରୁଛି । ଖାଲି ମୋ ପାଇଁ ନୁହେଁ, ପ୍ରତ୍ୟେକଟି ଛାତ୍ରଙ୍କ ପାଇଁ ସେ ଥିଲେ ଜଣେ ଯଥାର୍ଥ ମାର୍ଗଦର୍ଶକ ଗୁରୁ । ତାଙ୍କ ବାସଗୃହ କେଉଁ ଗୁରୁକୁଳ ଆଶ୍ରମଠୁ କମ୍ ନୁହଁ । ସେହି ଥାକଥାକ ବହିର ସମ୍ଭାଷଣ, ସେହି ନିରଳସ ଜୀବନର କର୍ମ ପ୍ରେରଣା, ଆଲୋଚନାର

ଦିଗନ୍ତ ବିସ୍ତାରୀ ପଟଭୂମି ଜଣେ ଜିଜ୍ଞାସୁକୁ ଆଲୋକ ପଥର ସନ୍ଧାନ ଦିଏ । ଡ୍ରଇଁରୁମ୍ ଟପି ଦୁଆରବନ୍ଧ ପାଖରେ ଚାହିଁଲେ ଦିଶନ୍ତି ଜଣେ କଳ୍ପଲୋକର ସନ୍ଧାନୀ, ଯିଏକି ନିବିଷ୍ଟ ଥା'ନ୍ତି ଲେଖାପଢ଼ାରେ, ପାଖକୁ ଯାଇ ପ୍ରଣାମ କଲେ ବର୍ଷିଯାଏ ଆଶୀର୍ବାଦର ଅଭୟ ମୁଦ୍ରା । ପଚାରି ବୁଝନ୍ତି ଭଲମନ୍ଦ, ସାହିତ୍ୟ ସେବା ସଂପର୍କରେ । ତାଙ୍କର ପଦିଏ ହସ ହସ କଥା ମନରେ ଭରଦିଏ ଗିରିଲଂଘିବାର ଉତ୍‌କଣ୍ଠା । ଜୀବନର ସାୟାହ୍ନରେ ବି ସେ କଲମ ଧରି ସଂଶୋଧନ କରୁଥାନ୍ତି ଛାତ୍ରମାନଙ୍କର ଲେଖା । ମୃତ୍ୟୁ ସହିତ ସଂଘର୍ଷ କରୁଥିଲା ବେଳେ ବି ପଚାରୁଥାନ୍ତି ପ୍ରକାଶନ ପୁସ୍ତକ ସଂପର୍କରେ । ଅଦ୍ଭୁତ ସେ ଯୋଗଜନ୍ମା, ସଂସାରୀ ହୋଇ ମଧ୍ୟ ସେ ଜଣେ ଯୋଗୀ । ସମୟ ସତେ ଅବା ମଥାନତ କରିଛି ତାଙ୍କ କର୍ମ ତତ୍ପରତା ପାଖରେ । ତାଙ୍କରି ନିଷ୍ଠା ଆମ ସମସ୍ତଙ୍କର ଧ୍ୟେୟ ହେଉ । ତାଙ୍କ ଅବର୍ତ୍ତମାନରେ ଆମ ଆଖିର ଲୁହ ଦିବାଲୋକ ପାଇଁ ତାଙ୍କ ପଥ ପରିଷ୍କାର କରୁ । ❖

ଅଧ୍ୟାପିକା, ଓଡ଼ିଆ
ନାରାୟଣ ବୀରବର ସାମନ୍ତ ମହାବିଦ୍ୟାଳୟ
ଝିମାଣୀ, କୁଜଙ୍ଗ, ଜଗତ୍‌ସିଂହପୁର

# ପ୍ରିୟ କୃଷ୍ଣଚରଣ

ପରୀକ୍ଷିତ ମିଶ୍ର

ଭଦ୍ରକ ଜିଲ୍ଲାର ତିହିଡ଼ିଥାନା ଅନ୍ତର୍ଗତ ଅର୍ଜୁନବିନ୍ଧା ଗାଁରେ ପିତା ପୀତାମ୍ବର ଏବଂ ମାତା ପବିତ୍ରାଙ୍କ ଔରସରୁ ୧୯୩୨ ମସିହା ଜୁନ ୨ ତାରିଖରେ ଜନ୍ମିତ କୃଷ୍ଣଚରଣ ବେହେରା । ବିଶ୍ୱଭାରତୀ ଶାନ୍ତିନିକେତନରୁ ଓଡ଼ିଆରେ ଏମ.ଏ. ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଉପାଧି ଲାଭ କରି ୧୯୫୫ ମସିହାରେ ଭଦ୍ରକ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟରେ ଯୋଗ ଦେଇଥିଲେ । ଏହିଠାରୁ ତାଙ୍କର ଦୀର୍ଘ ସାହିତ୍ୟିକ ଏବଂ ବୌଦ୍ଧିକ ଯାତ୍ରା ଆରମ୍ଭ । ପ୍ରତିଭାର ଅନ୍ତର୍ନିହିତ ବିକାଶ ଘଟିଲା । ସେ କେବଳ ନିଜ ପାଇଁ ନଥିଲେ । ସେ ଥିଲେ ଅସଂଖ୍ୟ ଛାତ୍ରଛାତ୍ରୀ, ନିଜ ପରିବାର, ସମାଜ, ନିଜ ଗାଁ ପ୍ରତି ଅନୁବନ୍ଧିତ । ସେ ଥିଲେ ଅତ୍ୟନ୍ତ ଉଦାର, ଦୟାଳୁ, ସମ୍ବେଦନଶୀଳ । ତାଙ୍କର ମୁଖ ସର୍ବଦା ହସ ହସ ।

ତାଙ୍କଦ୍ୱାରା ରଚିତ କବିତା, ଗଳ୍ପ, ସମାଲୋଚନା, ନିବନ୍ଧ ପୁସ୍ତକ ପାଠକଙ୍କ ଦ୍ୱାରା ଆଦୃତ ଏବଂ ପ୍ରଶଂସିତ ହେଉଥିଲା । ବିଦଗ୍ଧ ପାଠକମାନଙ୍କ ମଧ୍ୟରେ ଥିଲେ ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଜୀବନ ଯାତ୍ରା ମଧ୍ୟରେ କୃଷ୍ଣଚରଣ ରଚନା କରିଥିଲେ ୨୦ରୁ ଊର୍ଦ୍ଧ୍ୱ କବିତା, ଏକାଙ୍କିକା ଏବଂ ଗଳ୍ପ ସଂକଳନ, ଅସଂଖ୍ୟ ସମୀକ୍ଷା ଏବଂ ସଂପାଦନ ପୁସ୍ତକ । ଶେଷ ପର୍ଯ୍ୟନ୍ତ ସେ ଓଡ଼ିଆ ଭାଷା ଗବେଷଣା (ଏବଂ ଅନ୍ୟମାନେ ଗବେଷଣା ପରିଷଦ)ର ମୁଖ୍ୟ ରୂପେ କାର୍ଯ୍ୟ କରୁଥିଲେ । ତାଙ୍କ ଜୀବନ କେବେବି ସ୍ଥାଣୁ ନଥିଲା । କେବଳ ତାଙ୍କର ନୁହଁ ଉତ୍କଳ ମାଟିର ଜଣେ ସୁପୁତ୍ର ଶୁଭକାନ୍ତ ବେହେରାଙ୍କ ଅସମୟ ବିୟୋଗ ତାଙ୍କୁ ଗଭୀର ଆଘାତ ଦେଇଥିଲା ।

କୃଷ୍ଣଚରଣଙ୍କ ଅନ୍ତଃ ଏବଂ ବହିଃର୍ଦୃଷ୍ଟି ଶାଣିତ, ନିରପେକ୍ଷ, ଦରଦୀ, ଅଭିବ୍ୟକ୍ତି ସ୍ପଷ୍ଟ । ଏହା ତାଙ୍କ ଲେଖାରେ ପ୍ରତିଫଳିତ ହେଉଥିଲା 'ଫକୃତ୍' ଗଳ୍ପର ଅନ୍ତିମ ଦୁଇଧାଡ଼ି ଏହିପରି : କିନ୍ତୁ ଅତି ଆଶ୍ଚର୍ଯ୍ୟର କଥା ତା' ପରଦିନ ସନ୍ଧ୍ୟାରେ ଯାଇ ଦେଖିଲି- ସେ ପଲା ମୁହଁରେ ସେହି ପୁରୁଣା ଦୃଶ୍ୟ ଅଭିନୀତ ହେଉଛି । ମୋ ଜାତି, ମୋ ଶାସକ,

ସରକାର ଖାଲି ଢଳଢଳ କରି ଚାହିଁ ଦେଖୁଛି- ଏହାର କୌଣସି ପ୍ରତିକାର କରିପାରୁ ନାହିଁ ।"

ଆମ ସମୟର ମାନ୍ୟଗଣ୍ୟ ପୁରୁଷ, ସ୍ୱାଭିମାନୀ, ପ୍ରତିଥଯଶା, ଶିକ୍ଷାବିତ୍, ପ୍ରତିଭାଦୀପ୍ତ ସାହିତ୍ୟିକ ଆମ ଜନ୍ମଭୂମିର ସୁଯୋଗ୍ୟ ସନ୍ତାନ, ପୂଜ୍ୟ କୃଷ୍ଣଚରଣଙ୍କର ଇହଜଗତର ବିଦାୟ ନେବା ପୀଡ଼ାଦାୟକ । ସେ ଈଶ୍ୱରଙ୍କର ପ୍ରିୟ ହୋଇଗଲେ :

ଅନପେକ୍ଷଃ ଶୁଚିଦକ୍ଷି ଉଦାସୀନୋ ଗତବ୍ୟଥଃ
ସର୍ବାରମ୍ଭପରିତ୍ୟାଗୀ ଯୋମଭକ୍ତସମେ ପ୍ରିୟଃ ।

ମୁଁ ପୂଜ୍ୟ କୃଷ୍ଣଚରଣଙ୍କ ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ଅମର ଆତ୍ମାର ସଦ୍‌ଗତି କାମନା କରୁଛି ଏବଂ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ❖

ରାଜେନ୍ଦ୍ରନଗର, କଟକ

# ସାର୍ ଚାଲିଗଲେ

ଲୋପାମୁଦ୍ରା ଦାସନାୟକ

ସାର୍, ଆପଣ ଚାଲିଗଲେ,
କିଛିକ୍ଷଣ ପାଇଁ ଘେରିଗଲା ନିସ୍ତବ୍ଧତା
କେତେ ସ୍ମୃତି, ଅନୁଭୂତି ଏବେବି ଜୀବନ୍ତ
ପିଲାଦିନ, ପ୍ରଫେସରପଡ଼ା ଘର
ପରିଷଦ ଗଢ଼ାହେବା ଦିନ ।
ଚୁନି ଅପା, ବାପୁ ଭାଇ, ଟୁଟୁଭାଇ ବାହାଘର
ରେଭେନ୍‌ସାରେ ଆପଣଙ୍କ ଶିକ୍ଷାଦାନ,
ସ୍ନେହମିଶାଗାଳି, ମୂଲ୍ୟବାନ ପରାମର୍ଶମାନ ।
ହେ ପିତାପ୍ରତିମ,
ଏବେ ବି ସାଇତା ଅଛି
ରେଭେନ୍‌ସାରେ ଆପଣ ପଢ଼ାଇଥିବା
ରନିଙ୍ଗ୍‌ନୋଟ୍ ନାଟ୍ୟସାହିତ୍ୟର ।
ଯଦିଓ ସେ ପୋକ କାଟି ନିହାତି ନିର୍ଜୀବ-ନିସ୍ତେଜ
ତଥାପି ତ ତାହା କେବେ ନୁହେଁ ଫିଙ୍ଗିବାର ।
ବହୁକୃତି ଆଉ କୃତିତ୍ୱରେ
ଆପଣଙ୍କ ଉପସ୍ଥିତି ଚିର ବିଦ୍ୟମାନ
ମନେପଡ଼େ କହିଥିଲେ ଦୁର୍ଦ୍ଦିନରେ ମୋର
ଏକାନ୍ତରେ ଗବେଷଣା, ଲେଖାଲେଖି
କାଳେ ହୋଇପାରେ ଭଲ ।
ଗବେଷଣା କାର୍ଯ୍ୟ ଏବେ ତ୍ୱରାନ୍ୱିତ କର ।
ଏକାନ୍ତଟା ହୋଇପାରେ ଭଲ ।

ହେଲେ ନିଃସଙ୍ଗତା ?
ଲେଖାଲେଖି ଦୁନିଆରେ ମୁଁ ଅନାଥ,
ଏକାନ୍ତ ନିଃସଙ୍ଗ ।
ଗବେଷଣା ନିବନ୍ଧର ମୌଖିକ ପରୀକ୍ଷାଦିନ
ଦେଇଥିଲେ ଶେଷ ଉପଦେଶ...
ଆଜିଠାରୁ ଗବେଷଣା ଶେଷ ନୁହେଁ
ଭାବିପାର ଖଡ଼ିଛୁଆଁ ତା'ର ।
ଆପଣଙ୍କ ପାଦତଳେ ଖଡ଼ିଛୁଇଁ
ଅକ୍ଷର ମଡ଼େଇ
ଗାଳିଶୁଣି, ତାଳିଶୁଣି
ସାହିତ୍ୟର ସରଣୀରେ ଠୁକୁଠୁକୁ
ଚାଲିଲା ବେଳକୁ
ସେଇ ବରାଭୟ ହାତ ପାଖେ ନାହିଁ
ଯେଉଁଭଳି ବତିଶି ବରଷ ତଳେ
ଅପସରି ଯାଇଥିଲା
ଆଉ ହଳେ ହାତ । ❖

# କୁଶଳୀ କାରିଗର

ରମାକାନ୍ତ ପାଳ

ସାହିତ୍ୟ ସୃଷ୍ଟିରେ କୃଷ୍ଣଚରଣ, ଶୁଦ୍ଧ କୁଶଳୀ କାରିଗର,
ଶ୍ରେଷ୍ଠ ଶିକ୍ଷାବିତ୍ ସୁବକ୍ତା ପଣ୍ଡିତ, କବି ପ୍ରାବନ୍ଧିକ କଥାକାର ।
ଗଠନ ସୁଢ଼ଳ, ଶାନ୍ତ ସରଳ, ସ୍ମିତ ହାସ୍ୟ ମୁଖ ମଣ୍ଡଳର,
ଅହମିକା ଶୂନ୍ୟ ମନ ଧୀରଚାଲି, ସୁଧାବୋଳା ନମ୍ର ବ୍ୟବହାର ।
କିଛି ମଣିଷଙ୍କ ହୃଦୟ କନ୍ଦରେ, ଆସନ ପାତିତା ବସିଥିଲେ
ଆଡି ଆପଣାର ନିଃସ୍ୱାର୍ଥ ଭାବରେ, ସ୍ନେହ ଆଉ ଶ୍ରଦ୍ଧା ବାଣ୍ଟୁଥିଲେ ।
ଉତ୍ସର୍ଗୀକୃତ ସାହିତ୍ୟ ସାଧକ ନିଷ୍ଠା ସାଧନାର ଅନ୍ତନାହିଁ
ଓଡ଼ିଆ ଭାଷାର ଗବେଷଣାତ୍ମକ ଏଷଣା, ପତ୍ରିକା ଜନ୍ମଦେଇ ।
ହୃଷ୍ଟ, ପୁଷ୍ଟ ଦୀର୍ଘ ହେବ ଅନୁଷ୍ଠାନ ଉଦ୍ୟମର ଜାରି ରଖିଥିଲେ
ଲେଖକ, ଲେଖିକା ଗଢ଼ିଣ ସାହିତ୍ୟ ସଂସ୍କୃତିର ମାନ ବୃଦ୍ଧି କଲେ ।
ଆଶ୍ଚର୍ଯ୍ୟ ଜନକ ସ୍ମରଣ ଶକତି ପୁଲକିତ ପ୍ରାଣ ଉଚ୍ଛୋଳ
ବିପୁଳ ତାଙ୍କର ସାରସ୍ୱତ କୀର୍ତ୍ତି ଶଇଳି ଅତ୍ୟନ୍ତ ସାବଲୀଳ ।
ଦୃଢ଼ମନ ବଳ ଅସୀମ ଶକତି ଅସୀମ ଭାବନା ହୃଦୟର
ସ୍ୱାଧୀନ ଭାବନା ସ୍ୱାଧୀନ ଚେତନା ନିର୍ଭୟ ସତ୍ୟ ଲେଖିବାର ।
ସ୍ରଷ୍ଟା, ପ୍ରତିଷ୍ଠାତା, ସୁସଂଗଠକ ସାରସ୍ୱତ ଅନୁଷ୍ଠାନଙ୍କର
କର୍ମ ଚଞ୍ଚଳ ଛାତ୍ର ବତ୍ସଳ ନୀତିନିଷ୍ଠ ଅତି ଉଦାର ।
ଗଳ୍ପ, କବିତା, ନାଟକ, ଜୀବନୀ ରମ୍ୟ ରଚନାର ଗନ୍ତାଘର
ମୋଗଲ ତାମସା, ଚଢେଇ ତାମସା ପ୍ରଚାର ପ୍ରସାର ସମ୍ଭବପର ।

ସ୍ନେହ, ଶ୍ରଦ୍ଧା, ପ୍ରେମ ମାନବିକତାର ପୂର୍ଣ୍ଣ ମଣିଷ ଅଟନ୍ତି ସିଏ
ନିଦା ନିରଳସ ଚେହେରା ଭିତରେ ଧୈର୍ଯ୍ୟ ସନ୍ତୋଷ ଭରିକି ଥାଏ ।
ନିଷ୍ଠା ଓ ସାଧନା ଉଚ୍ଚ ଚିନ୍ତାଧାରା ଏକାଗ୍ରତା ହୃଦୟର ଧୈର୍ଯ୍ୟ
ପ୍ରେମିକ ପୁରୁଷ, କୃଷ୍ଣଚରଣ, ସାରସ୍ୱତ ଆକାଶର ସୂର୍ଯ୍ୟ ।
ତାଙ୍କରି ଦର୍ଶନେ ନଇଁଯାଏ ମଥା ଅନ୍ତରରୁ ଭକ୍ତି ଆସଇ ଝରି
ନାହାନ୍ତି ସେ ଆଜି ଇହ ଜଗତରେ ଆମଠୁ ଗଲେଣି ଅପସରି ।
ମରଣଜୟୀଙ୍କ ଅବର୍ତ୍ତମାନରେ ଆତ୍ମାର ହେଉ ସଦ୍‌ଗତି
ଅମର ରହିବେ ଅମର ରହିବ ତାଙ୍କ କୋଣାରକ ସମକୀର୍ତ୍ତି
ତାଙ୍କର କଠିନ ପରିଶ୍ରମ ଫଳ ଅମୂଲ୍ୟ ସଂପଦ ଆମ ପାଇଁ
ସାଇତି ରଖିବା ମନେପକାଇବା ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ତାଙ୍କ ପାଇଁ । ❖

ପଦ୍ମନାଭ ସ୍ମୃତି ସମିତି,
ଅପର୍ଣ୍ଣବିନ୍ଧା, ଭଦ୍ରକ
ମୋ-୯୪୩୯୧୮୮୫୧୧



# ସାକ୍ଷାତ୍‌କାର

**ଶିଶିର କୁମାର ମହାପାତ୍ର**

ଓଡ଼ିଆ ସାହିତ୍ୟ ଓ ଗବେଷଣା କ୍ଷେତ୍ରରେ ଅଧ୍ୟାପକ ଡ. କୃଷ୍ଣଚରଣ ବେହେରା ସୁପରିଚିତ । ଅବିଭକ୍ତ ବାଲେଶ୍ୱର ଜିଲ୍ଲା(ବର୍ତ୍ତମାନ ଭଦ୍ରକ) ତିହିଡ଼ିର ଅନ୍ତର୍ଗତ ପାଉହାଟ ବଜାର ଅର୍ଜୁନବିନ୍ଧାରେ ୧୯୩୨ ଜୁନ୍ ୨ ତାରିଖରେ ଜନ୍ମ । ବିଶ୍ୱଭାରତୀରୁ ଓଡ଼ିଆ ଭାଷା ସାହିତ୍ୟରେ ଏମ୍.ଏ. ଡିଗ୍ରୀ ହାସଲ ପରେ ଅଧ୍ୟାପନା ଜୀବନ ଆରମ୍ଭ । ରାଜ୍ୟର ବିଭିନ୍ନ ମହାବିଦ୍ୟାଳୟରେ ଦୀର୍ଘ ୩୫ବର୍ଷ ଅଧ୍ୟାପନା । ୧୯୯୦ ମସିହା ଜୁଲାଇ ୧ ତାରିଖରେ ରେଭେନ୍ସା କଲେଜରୁ ଅବସର ଗ୍ରହଣ । ଛାତ୍ର ଜୀବନରୁ ଏକନିଷ୍ଠ ସାହିତ୍ୟ ସାଧନା ତାଙ୍କୁ ଶୀର୍ଷରେ ପହଞ୍ଚାଇଛି । ଅତୀତରେ ଓଡ଼ିଆ ଯୁବକ ଲେଖକ ସମ୍ମେଳନର ସଭାପତି (୧୯୭୨) ପଦମଣ୍ଡନ କରି ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ଦିଗରେ

କାର୍ଯ୍ୟକରିଛନ୍ତି । ପ୍ରକାଶିତ ଗ୍ରନ୍ଥ ମଧ୍ୟରେ ୫ଗୋଟି କବିତା, ୧୨ଟି ଗଳ୍ପ, ୨ଟି ଏକାଙ୍କିକା, ୨ଗୋଟି ଶିଶୁ ଲେଖା ବ୍ୟତୀତ ଅନେକ ସାହିତ୍ୟାଲୋଚନା ଓ ଗବେଷଣାଧର୍ମୀ ପୁସ୍ତକ ରହିଛି । ସେଥିମଧ୍ୟରେ ରହିଛି ପ୍ରଗତି ସାହିତ୍ୟ (୧୯୫୮, ୧୯୭୦), କଥା ସାହିତ୍ୟ(୧୯୬୦, ତୃତୀୟ ସଂସ୍କରଣ ୧୯୭୮), ଅଶ୍ଳୀଳତା ବିପକ୍ଷରେ(୧୯୬୬), ଓଡ଼ିଆ ଉପନ୍ୟାସ(୧୯୬୮, ୧୯୮୧, ତୃତୀୟ ସଂସ୍କରଣ), କେତୋଟି ସାହିତ୍ୟିକ ଅଭିଭାଷଣ (୧୯୭୦, ୧୯୭୭), ଅଧ୍ୟାପକର ବେଦନା(୧୯୭୨), ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ (୧୯୭୪, ୧୯୮୨), ନାଟ୍ୟ ସାହିତ୍ୟ ପରିଚୟ(୧୯୭୮, ୧୯୮୭); ଚରୁ ଓ ଚରିତ(୧୯୭୯); ମଧ୍ୟସ୍ଥ ବାଣୀ(୧୯୮୦) ସଂପାନ ସନ୍ଦର୍ଭ(୧୯୮୧); ପ୍ରସଙ୍ଗ : ଗଳ୍ପ, ଉପନ୍ୟାସ (୧୯୮୯) ଓ ବୀକ୍ଷା ବିଚିତ୍ରା(୧୯୯୦) ।

ଏହା ବ୍ୟତୀତ ସଂପାଦନା କରିଥିବା ପୁସ୍ତକଗୁଡ଼ିକ ହେଉଛି କବି ଶେଖର ଚିନ୍ତାମଣି (୧୯୬୩), ମୋଗଲ ତାମସା (୧୯୬୬), କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ(୧୯୭୭, ୩ୟ ୧୯୮୭), କଳାବତୀ (୧୯୮୧), ଫୁଲମଣି ଓ କରୁଣାର ବିବରଣ (୧୯୮୨) ଓ ଗୋପାଳକୃଷ୍ଣ ପଦାବଳୀ (୧୯୮୫) । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ପାଇବାରେ ସେ ହେଉଛନ୍ତି ୫ମ ବ୍ୟକ୍ତି(୧୯୬୭) ।

ପ୍ର. ଆପଣ ଓଡ଼ିଆ ଭାଷା- ସାହିତ୍ୟର ଅଧ୍ୟୟନ-ଅଧ୍ୟାପନା ପ୍ରତି କାହିଁକି ଆଗ୍ରହୀ ହେଲେ ?

ଉ. ପିଲାଦିନରୁ ଗ୍ରାମର ଯାତ୍ରା ଦଳରେ ଅଭିନୟ କରୁଥିଲି । ନାଟ ତାମସା ପ୍ରତି ମୂଳରୁ ଅନୁରାଗ ଥିଲା । କାବ୍ୟ କବିତା, ଗଳ୍ପ ଉପନ୍ୟାସ ମଧ୍ୟ ପ୍ରଚୁର ପଢୁଥିଲି । ହାଇସ୍କୁଲ ଓ କଲେଜର ଆଇ.ଏ. ଶ୍ରେଣୀରେ ପଢ଼ିଲା ବେଳେ ଅଧ୍ୟାପକ ୰ଗଗନ ବିହାରୀ ମହାନ୍ତିଙ୍କର ପ୍ରେରଣା ଓ ପରାମର୍ଶ କ୍ରମେ ଭାଷା ସାହିତ୍ୟର ଅଧ୍ୟୟନ-ଅଧ୍ୟାପନା ଆଡ଼କୁ ମୁହାଁଇଲି ।

ପ୍ର. ଆପଣଙ୍କ ଶିକ୍ଷା ଦୀକ୍ଷା ଓ ଛାତ୍ର ଜୀବନରେ ସାହିତ୍ୟ ପ୍ରତି ଆଗ୍ରହୀ ହେବା ସମ୍ପର୍କରେ କିଛି କହିବେ କି ?

ଉ. ବର୍ତ୍ତମାନର ଭଦ୍ରକ ଜିଲ୍ଲା ଦୋଳସାହି ହାଇସ୍କୁଲ, ଭଦ୍ରକ କଲେଜ, ରେଭେନ୍ସା କଲେଜ ଓ ଶାନ୍ତି ନିକେତନସ୍ଥ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ଛାତ୍ର ଜୀବନ । ଭଦ୍ରକ କଲେଜରେ ଅଧ୍ୟୟନ କାଳରେ ୰ମହାନ୍ତିଙ୍କର ପ୍ରେରଣା ଓ ତତ୍ତ୍ୱାବଧାନରେ ଲେଖାଲେଖି କଲି । ଶାନ୍ତି ନିକେତନରେ ମୋର ପ୍ରାୟ ଅଢ଼େଇ ବର୍ଷର ରହଣି କାଳରେ ଲେଖା ବହୁଗୁଣିତ ହେଲା । ସେତେବେଳେ କଲିକତାରୁ ପ୍ରକାଶ ପାଉଥିବା 'ଆସନ୍ତାକାଲି' ଏବଂ ସ୍ୱର୍ଗୀୟ ହୃଦାନନ୍ଦ ମଲ୍ଲିକଙ୍କ ସଂପାଦନାରେ

ପ୍ରକାଶ ପାଉଥିବା' ଅଗ୍ରଣୀ'(ଗଳ୍ପ ପତ୍ରିକା) ସହିତ ସଂପୃକ୍ତ ହୋଇଥିଲି । 'ଅଗ୍ରଣୀ ପ୍ରକାଶନୀ' ପକ୍ଷରୁ ଶ୍ରୀ ଦୁର୍ଗା ଚରଣ ପରିଡ଼ା ଓ ମୋ ସଂପାଦନାରେ 'କବିତା' ପତ୍ରିକା ପ୍ରକାଶ ପାଇଥିଲା । ଏହା ବୋଧହୁଏ ଓଡ଼ିଆ ଭାଷାରେ ପ୍ରକାଶିତ ପ୍ରଥମ କବିତା ପତ୍ରିକା । ଏହାର ମାତ୍ର ତିନିଟି ସଂଖ୍ୟା ପ୍ରକାଶ ପାଇଥିଲା ଏବଂ କାବ୍ୟାମୋଦୀ ପାଠକ ପାଠିକାଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ଶାନ୍ତି ନିକେତନରେ ଥିଲା ବେଳେ ମୋର ପ୍ରଥମ କାବ୍ୟ-ସଞ୍ଚୟନ 'ଚା' କପ୍‌ରେ ଝଡ଼' ପ୍ରକାଶ ପାଇଥିଲା ।

ପ୍ର. ଆପଣଙ୍କ ଗବେଷଣାର ବିଷୟବସ୍ତୁ କ'ଣ ଥିଲା ? ଏଥିରେ ଆପଣ କେଉଁ ତଥ୍ୟ ଉପରେ ଆଲୋକପାତ କରିଛନ୍ତି ?

ଉ. ମୋ ଗବେଷଣାର ବିଷୟ ଥିଲା- 'ଓଡ଼ିଆ ଉପନ୍ୟାସ' । ଶାନ୍ତି ନିକେତନରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ଉପନ୍ୟାସ ଉପରେ ବିଶେଷ ଅଧ୍ୟୟନ ଓ ଚର୍ଚ୍ଚା ଆରମ୍ଭ କରିଥିଲି । ସେହି ଚର୍ଚ୍ଚା ଓ ଅଧ୍ୟୟନ କାଳରେ ମୋର ହୃଦବୋଧ ହେଲା ଯେ- ଓଡ଼ିଆ ଉପନ୍ୟାସର ଉନ୍ମେଷ ପର୍ବରେ ପାଶ୍ଚାତ୍ୟ ପ୍ରଭାବ ନଗଣ୍ୟ ଓ ଅକିଞ୍ଚିତ୍ କର । ଆମ ଉପନ୍ୟାସ ଏକ ପ୍ରକାର ସ୍ୱଦେଶୀୟ ବା ସ୍ୱଦେଶ ଜାତ । ଆମର ପ୍ରାଚୀନ କଥା ସାହିତ୍ୟର ଉଜ୍ଜ୍ୱଳ ପରମ୍ପରା ଭିତ୍ତିରେ ମୁଁ ନିଜର ଗବେଷଣା-ପ୍ରବନ୍ଧରେ ସେହି ତଥ୍ୟ ପ୍ରତିପାଦନ କରିବାକୁ ଯାଇଛି । ମୋର ସେହି ଗବେଷଣା ପ୍ରବନ୍ଧଟି ବର୍ତ୍ତମାନ ପୁସ୍ତକ- ବିପଣୀରେ ମିଳୁ ନାହିଁ । ତାହାର ୩ୟ ସଂସ୍କରଣ ପ୍ରକାଶ ପାଇଁ ବ୍ୟବସ୍ଥା କରାଯାଉଛି ।

ପ୍ର. 'ଓଡ଼ିଆ ଗବେଷଣା ପରିଷଦ' ଗଠିତ ହେବାଠାରୁ ଆପଣ ଏହାର ସଭାପତି ଅଛନ୍ତି । ଏପରି ଏକ ଅନୁଷ୍ଠାନ କାହିଁକି ଓ କିପରି ଗଠନ କଲେ ?

ଉ. ଅଧ୍ୟାପକ ସ୍ୱର୍ଗୀୟ ଡ. କ୍ଷେତ୍ରବାସୀ ନାୟକ ଓଡ଼ିଆ ଗବେଷଣା ପରିଷଦର ପ୍ରାଣ ପ୍ରତିଷ୍ଠାତା । ସେ ମଧ୍ୟ ଏହାର ପ୍ରତିଷ୍ଠାତା ସେକ୍ରେଟେରୀ । ତାହା ୧୯୭୫ କିମ୍ବା ୧୯୭୬ ମସିହାର କଥା । କ୍ଷେତ୍ରବାସୀଙ୍କ ପି.ଏଚ୍.ଡ଼ି. ପରୀକ୍ଷାର ଭାଇଭାଭୋସ କାର୍ଯ୍ୟ ଶେଷକରି ଆମେ କଲିକତାରୁ କଟକ ବାହୁଡ଼ି ଆସୁଥାଉଁ; ବାଟରେ କ୍ଷେତ୍ରବାସୀ ମୋ ସହିତ ଏପରି ଏକ ଗବେଷଣା ସଂସ୍ଥା ପ୍ରତିଷ୍ଠା ବିଷୟରେ କଥାବାର୍ତ୍ତା କରିଥିଲେ । ତାଙ୍କ ଆଲୋଚନାରୁ ଗବେଷଣା ପ୍ରତିଷ୍ଠାନଟିଏ ଆରମ୍ଭ କରିବାର ଆବଶ୍ୟକତା ମୁଁ ହୃଦୟଙ୍ଗମ କରିଥିଲି । ସେତେବେଳେକୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ପ୍ରତିଷ୍ଠିତ 'ପ୍ରାଚୀ ସମିତି' ଅଚଳ ଓ ଲୁପ୍ତ । କିନ୍ତୁ ପ୍ରାଚୀ ସମିତି କେବଳ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅନୁସନ୍ଧାନ, ଆବିଷ୍କାର, ପ୍ରକାଶ

ଓ ଆଲୋଚନା- ଚର୍ଚ୍ଚା କରୁଥିଲା । ପ୍ରାଚୀନ ସାହିତ୍ୟ ସଙ୍ଗେ ସଙ୍ଗେ ଆଧୁନିକ ସାହିତ୍ୟର ବିଚାର ବିମର୍ଶ ଲୋଡ଼ା । ତାହା ଏକ ବିଧିବଦ୍ଧ ସଂଗଠିତ ଉପାୟରେ କରିବା ପାଇଁ ସ୍ଥିର କଲୁ । ମୁଁ କ୍ଷେତ୍ରବାସୀଙ୍କୁ କହିଲି- ସାହିତ୍ୟ ସୃଷ୍ଟି ସକାଶେ ଅତ୍ୟାବଶ୍ୟକ ନ ହେଲେହେଁ ସାହିତ୍ୟ- ସମାଲୋଚନା ପାଇଁ ସଂଗଠିତ ଉଦ୍ୟମ ଅତ୍ୟାବଶ୍ୟକ । 'ପ୍ରାଚୀ ସମିତି' ପରେ ଓଡ଼ିଶାରେ ଆଉ କାହିଁ କେଉଁଠି ସେପରି ଉଦ୍ୟମ ହେଉ ନ ଥିଲା ବେଳେ, ଆମେ ଯଥା ଶୀଘ୍ର ଏ ଦିଗରେ ପଦକ୍ଷେପ ନେବା ଉଚିତ୍ ହେବ । ଆମ ବିଶ୍ୱବିଦ୍ୟାଳୟଗୁଡ଼ିକର ଓଡ଼ିଆ ଭାଷା ସାହିତ୍ୟ ବିଭାଗ ମଧ୍ୟ ଏ ଦିଗରେ ସକ୍ରିୟ ହେଉ ନାହାନ୍ତି । ତେଣୁ ଆମେ ଅନୁଷ୍ଠାନଟିଏ ଆରମ୍ଭ କରିବା ! ତମେ ଏହି ପ୍ରସ୍ତାବିତ ଅନୁଷ୍ଠାନର ରୂପ-ରେଖ, ଉଦ୍ଦେଶ୍ୟ, କାର୍ଯ୍ୟସୂଚୀ ଇତ୍ୟାଦି ବିଷୟରେ ବିସ୍ତୃତ ଭାବରେ ଲେଖି ମୋ ପାଖକୁ ପଠାଇ ଦିଅ ।

କ୍ଷେତ୍ରବାସୀ ସେତେବେଳକୁ ବ୍ରହ୍ମପୁରସ୍ଥ ଖଲିକୋଟ କଲେଜରେ କାର୍ଯ୍ୟ କରୁଥାନ୍ତି । ଅଳ୍ପଦିନ ପରେ ସେ ଅନୁଷ୍ଠାନର ରୂପରେ ଖାଦି ସହ ଏକ ଚିଠା ସମ୍ବିଧାନ ଲେଖି ମୋ ପାଖକୁ ପଠାଇ ଦେଲେ । ତା' ପରେ ମୁଁ ଏହି ଅନୁଷ୍ଠାନ ଗଠନ ବିଷୟରେ ବିଭିନ୍ନ ସାହିତ୍ୟିକ, କଲେଜ ଓ ବିଶ୍ୱବିଦ୍ୟାଳୟର ଅଧ୍ୟାପକ-ଅଧ୍ୟାପିକା ତଥା ଛାତ୍ରଛାତ୍ରୀଙ୍କ ସହ ବିଚାର ଆଲୋଚନା କରିଥିଲି । ଅଧିକାଂଶ ବନ୍ଧୁ ଏ ଭଳି ଅନୁଷ୍ଠାନଟିଏ ଗଢ଼ିବା ବିଷୟରେ ଅନୁକୂଳ ମତ ପ୍ରଦାନ କରିଥିଲେ । ଶେଷରେ ୧୯୮୦ ମସିହା ଅକ୍ଟୋବର ମାସ ପୂଜା ଛୁଟିରେ ଓଡ଼ିଆ ଗବେଷଣା ପରିଷଦ ବିଧିବଦ୍ଧ ଭାବରେ ପ୍ରତିଷ୍ଠାଲାଭ କଲା ।

ପ୍ର. 'ଓଡ଼ିଆ ଗବେଷଣା ପରିଷଦର ବର୍ତ୍ତମାନ ସ୍ଥିତି ବିଷୟରେ କିଛି ସୂଚନା ଦେବେ କି ?

ଉ. ଏହା ବର୍ତ୍ତମାନ ଏକ ରେଜିଷ୍ଟାର୍ଡ଼ ସ୍ୱେଚ୍ଛାସେବୀ ସାଂସ୍କୃତିକ ଅନୁଷ୍ଠାନ । ରାଜ୍ୟ ଭିତରୁ ଏବଂ ରାଜ୍ୟ ବାହାରୁ ପାଖାପାଖି ଦେଢ଼ଶହ ଲେଖକ, ସାହିତ୍ୟିକ, ଗବେଷକ ଏହାର ସଦସ୍ୟ ସଦସ୍ୟା ଅଛନ୍ତି । ଏହାର ଷାଣ୍ମାସିକ ମୁଖପତ୍ର 'ଏଷଣା' ନିୟମିତ ପ୍ରକାଶ ପାଇଛି । ଏ ଯାବତ୍ ଏକ ପଞ୍ଚାଶତ ଖଣ୍ଡ ପ୍ରକାଶ ପାଇଲାଣି । କିଛି ନୂଆଧରଣର ସମାଲୋଚନା ଓ ଗବେଷଣାତ୍ମକ ଗ୍ରନ୍ଥ ମଧ୍ୟ ଅନୁଷ୍ଠାନ ପକ୍ଷରୁ ପ୍ରକାଶିତ ହୋଇଛି । ଯଥା : ତୁଳନାତ୍ମକ ସାହିତ୍ୟ, ଓଡ଼ିଆ ଭାଷା ଚର୍ଚ୍ଚାର ପରମ୍ପରା, ସର୍ଜ୍ଜନାତ୍ମକ ସାହିତ୍ୟ ସମୀକ୍ଷା, ଶୈଳୀ ବିଜ୍ଞାନ, ନନ୍ଦନତତ୍ତ୍ୱ ଇତ୍ୟାଦି । ପ୍ରତିବର୍ଷ ଜଣେ ସକ୍ରିୟ ଗବେଷକ ଓ ସମାଲୋଚକଙ୍କୁ 'କ୍ଷେତ୍ରବାସୀ ସାହିତ୍ୟ

ବିଦ୍ୟା ପୁରସ୍କାର' ପରିଷଦ ପକ୍ଷରୁ ଦିଆଯାଇଥାଏ । ଭାଷା-ସାହିତ୍ୟ ଗବେଷଣା ଓ ସମାଲୋଚନାକୁ ଉତ୍ସାହିତ କରିବା ଏହାର ଉଦ୍ଦେଶ୍ୟ । ଏହା ବ୍ୟତୀତ ରାଜ୍ୟର ବିଭିନ୍ନ ସ୍ଥାନରେ ପରିଷଦ ପକ୍ଷରୁ ସଂପାନ ଓ ପ୍ରବନ୍ଧ ପାଠଚକ୍ର ପ୍ରଭୃତି ଅନୁଷ୍ଠିତ ହୋଇଥାଏ ।

ପ୍ର. ବର୍ତ୍ତମାନ ଓଡ଼ିଆ ଭାଷା-ସାହିତ୍ୟ ଗବେଷଣାର ମାନ ଊଣା ହୋଇଛି ବୋଲି ଅନେକେ କହନ୍ତି । ଏ ସମ୍ପର୍କରେ ଆପଣଙ୍କର ମତ କ'ଣ ?

ଉ. ହିନ୍ଦୀ, ଇଂରାଜୀ ଆଦି ଭାଷା ସାହିତ୍ୟ ସହ ତୁଳନା କରି ଦେଖିଲେ, ଆମ ଗବେଷଣାର ମାନ ଅବଶ୍ୟ ଊଣା ହୋଇଥିବାର ମନେ ହେବ । ତଥାପି ସ୍ୱାଧୀନତା ପରେ ଆମେ ଏ ଦିଗରେ ବେଶ୍ ଅଗ୍ରଗତି କରିଛୁ । ଗୁଣାତ୍ମକ ଦିଗରୁ ନହେଲେ ହେଁ, ପରିମାଣାତ୍ମକ ଦିଗରୁ ଅଗ୍ରଗତି କରିଚୁଁ । ପରିମାଣରୁ କ୍ରମେ ଗୁଣ ପ୍ରକଟିତ ହୋଇପାରିବ ବୋଲି ମୋର ବିଶ୍ୱାସ । ଆମର କେତେକ ଯୁବ ସମୀକ୍ଷକ ଓ ଗବେଷକଙ୍କ କୃତିରୁ ମୋର ଏହି ବିଶ୍ୱାସ ଜନ୍ମିଛି । 'ଓଡ଼ିଆ ଗବେଷଣା ପରିଷଦ ସାଧ୍ୟ ମତେ ସେହିଭଳି ସମୀକ୍ଷକ ଓ ଗବେଷକମାନଙ୍କୁ ପ୍ରୋତ୍ସାହନ ଯୋଗାଇବାର ପ୍ରଯତ୍ନ କରୁଛି ।

ପ୍ର. ତରୁଣ ସମାଲୋଚକ ଓ ଯୁବ ଗବେଷକଙ୍କ ପାଇଁ ଆପଣଙ୍କର କିଛି ବାଣୀ ବା ପରାମର୍ଶ ଅଛି କି ?

ଉ. ସାହିତ୍ୟାଲୋଚନା ବା ଭାଷା ସାହିତ୍ୟର ଗବେଷଣା ଆଦୌ ସହଜ କାର୍ଯ୍ୟ ନୁହେଁ । ସେଥିପାଇଁ ନିଷ୍ଠା ଓ ଅଧ୍ୟବସାୟ ଲୋଡ଼ା । ବହୁ ଶାସ୍ତ୍ରଦର୍ଶିତା ମଧ୍ୟ ଆବଶ୍ୟକ । ❖

ମହାନଦୀ ବିହାର, କଟକ-୭୫୩୦୦୪

(ବି.ଦ୍ର- ଉକ୍ତ ସାକ୍ଷାତକାରଟି ଗତ ନବେ ଦଶକର ପ୍ରାରମ୍ଭ ସମୟରେ (୧୯୯୨) ଏକ ପତ୍ରିକାରେ ପ୍ରକାଶ ନିମନ୍ତେ ପ୍ରସ୍ତୁତି ହୋଇଥିଲା । ମାତ୍ର ତାହା ପ୍ରକାଶ ପାଇ ପାରି ନଥିଲା । ଏହା ମଧ୍ୟରେ ଡ. ବେହେରାଙ୍କ ନିଜ ଆତ୍ମଜୀବନୀ (ଆଖିର ଦେଖା ପ୍ରାଣର କଥା) ପ୍ରକାଶ ସହି ଅନ୍ୟ କେତୋଟି ଗ୍ରନ୍ଥ ପ୍ରକାଶ ପାଇଛି । ତାହା ଏଠାରେ ସ୍ଥାନିତ ହୋଇପାରିନାହିଁ ଏଣୁ ଦୁଃଖିତ ତାଙ୍କ ଜୀବଦ୍ଦଶାରେ ଏହା ପ୍ରକାଶ ତାଙ୍କୁ ନ ପାଇ ୧ମ ଶ୍ରାଦ୍ଧବାର୍ଷିକୀରେ ପ୍ରକାଶିତ ହେଉଛି ।)

